# ଅନୁଭୂତିର ୟୁରୋପ୍



ଗଣେଶ୍ୱର ମିଶ୍ର

# ଅନୁଭୂତିର ୟୁରୋପ୍

ଗଣେଶ୍ୱର ମିଶ୍ର

ପ୍ରକାଶକ



କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର

# ଅନୁଭୂତିର ୟୁରୋପ୍

(ଭ୍ରମଣ ଅନୁଭୂତି)

ମୁଖ୍ୟ ଉପଦେଷ୍ଟା :
ଶ୍ରୀ ରଘୁନାଥ ପ୍ରସାଦ ମିଶ୍ର

ପ୍ରକାଶକ :
ଶ୍ରୀ ନୃସିଂହ ପ୍ରସାଦ ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ - ୭୫୩୦୦୨

ପ୍ରଥମ ସଂସ୍କରଣ : ବିଜୟା ଦଶମୀ, ୨୦୦୬

ପ୍ରଚ୍ଛଦ : ଲେଖକଙ୍କ ପରିବାର : ୧୯୭୬

ମୁଦ୍ରାକର :
ଶତରୂପା ଡି.ଟି.ପି. ଓ ସଙ୍ଗୀତା ପ୍ରିଣ୍ଟର୍ସ, କଟକ

ମୂଲ୍ୟ : ବୋର୍ଡ଼ ବନ୍ଧାଇ – ଟ ୧୨୦.୦୦ ମାତ୍ର
ସାଦା ବନ୍ଧାଇ – ଟ ୧୦୫.୦୦ ମାତ୍ର

# ANUBHUTIRA EUROPE

By :
Ganeswar Mishra

Publisher :
Sri N. P. Misra
'Cuttack Students' Store
Balubazar, Cuttack – 753002

Principal Adviser :
Sri R. P. Misra

First Edition : October, 2006

Cover : Author's family : 1976

Printers :
Satarupa D.T.P. & Sangeeta Printers, Cuttack

Price : Deluxe – Rs. 120.00 only
Popular – Rs. 105.00 only

# ଉତ୍ସର୍ଗ

ସ୍ୱଦେଶରେ ବିଦେଶରେ
ସ୍ୱପ୍ନରେ ଜାଗରଣରେ
ଦୁଃଖରେ ଉଲ୍ଲାସରେ
ପ୍ରତି ମୁହୂର୍ତ୍ତରେ ଯାହାକୁ ସ୍ମରଣ କରେ
ଯାହାପାଇଁ ମୋର ସକଳ ଗର୍ବ ଅଭିମାନ ଲଜ୍ଜା
ସେଇ ସ୍ନେହମୟୀ ସୁନ୍ଦରୀ ଅବହେଳିତା
ଓଡ଼ିଶା ମାଆର ଚରଣରେ
ଦରୋଟି ଭାଷାର ଏଇ ବହି
କଣିକାଏ ଧୂଳିର ଯୋଗ୍ୟ ହେଉ !!

# ସୂଚନା

'ଅନୁଭୂତିର ୟୁରୋପ୍'ରେ ମୋର ପୂର୍ବରୁ ପ୍ରକାଶିତ ଦୁଇଟି ଗ୍ରନ୍ଥ 'କ୍ୟାଣ୍ଟର୍‌ବରୀ କାହାଣୀ' (୧୯୮୨) ଓ 'ସମୁଦ୍ର ସେପାରେ' (୧୯୯୦) ସନ୍ନିବେଶିତ । ତା' ସହିତ ୟୁରୋପ୍ ଭ୍ରମଣ ସମ୍ପର୍କୀୟ ଅନ୍ୟ କେତେକ ରଚନା 'ପୁନଶ୍ଚ ୟୁରୋପ୍' ଶିରୋନାମାରେ ଏଥିରେ ସ୍ଥାନିତ ।

୧୯୭୪ରୁ ୭୮ – ଏହି ସମୟରେ ସାଢ଼େ ତିନିବର୍ଷ ମୁଁ କଟାଇଥିଲି ଇଂଲଣ୍ଡର କ୍ୟାଣ୍ଟର୍‌ବରୀରେ – କେଣ୍ଟ୍ ବିଶ୍ୱବିଦ୍ୟାଳୟରେ ଇଂରାଜୀ ସାହିତ୍ୟରେ ଗବେଷଣା କରିବା ପାଇଁ । ଇଂଲାଣ୍ଡରେ ଅଧିକାଂଶ ସମୟ ସପରିବାର ରହିଥିଲି; କିଛି ମାସ ମଧ୍ୟ ଏକାକୀ କଟାଇଥିଲି – କଲେଜ ହଷ୍ଟେଲ୍‌ରେ ଓ ଡର୍ମିଟରିରେ । ସେହି ସମୟର ଅନୁଭୂତି ଲିପିବଦ୍ଧ କ୍ୟାଣ୍ଟର୍‌ବରୀ କାହାଣୀରେ । ୧୯୮୩ରୁ ୮୪ ମଧ୍ୟରେ ଦ୍ୱିତୀୟଥର ଇଂଲାଣ୍ଡରେ କଟାଇବାର ସୁଯୋଗ ମିଳିଥିଲା । ଲଣ୍ଡନ୍‌ରେ ରହି ସ୍କୁଲ୍ ଅଫ୍ ଓରିଏଣ୍ଟାଲ୍ ଆଣ୍ଡ୍ ଆଫ୍ରିକାନ୍ ଷ୍ଟଡିଜ୍‌ରେ କମନ୍‌ୱେଲ୍‌ଥ୍ ଏକାଡେମୀକ୍ ଫେଲୋ ଭାବରେ ଗବେଷଣା କରିବାପାଇଁ, ଏହି ସମୟରେ ସୁଇଡେନ୍ ଓ ସ୍ପେନ୍‌ରେ ସଂକ୍ଷିପ୍ତ ଭ୍ରମଣର ସୌଭାଗ୍ୟ ମଧ୍ୟ ଘଟିଥିଲା । 'ସମୁଦ୍ର ସେପାରେ' ଏଇ ପରିପ୍ରେକ୍ଷୀରେ ଲିଖିତ ।

ମୋର ତୃତୀୟ ଇଂଲାଣ୍ଡ ଯାତ୍ରା ୧୯୮୯ରେ ଏବଂ ଚତୁର୍ଥ ଯାତ୍ରା ୧୯୯୨ରେ – କେଣ୍ଟ୍ ବିଶ୍ୱବିଦ୍ୟାଳୟରେ ରାଇଟର୍ ଇନ୍ ରେସିଡେନ୍ସ୍ ଭାବରେ ଯୋଗଦାନ କରିବା ପାଇଁ । ୧୯୭୮ରେ ବେଲ୍‌ଜିୟମ୍, ଲକ୍ସେମ୍‌ବର୍ଗ, ନେଦର୍‌ଲ୍ୟାଣ୍ଡ୍, ଫ୍ରାନ୍ସ୍ ଏବଂ ପଶ୍ଚିମ ଜର୍ମାନୀ ପରିଦର୍ଶନର ସୁଯୋଗ ଘଟିଥିଲା ।

'ଅନୁଭୂତିର ୟୁରୋପ୍'ର ଅଧିକାଂଶ ଲେଖା ଇଂଲାଣ୍ଡ ଅନୁଭୂତି ଉପରେ ଆଧାରିତ – ଅଳ୍ପ କେତୋଟି ୟୁରୋପ୍‌ର ଅନ୍ୟାନ୍ୟ ଦେଶ ସମ୍ପର୍କରେ ।

– ଗଣେଶ୍ୱର ମିଶ୍ର

୧୫.୮.୦୬

# ସୂଚୀ

# ସୂଚୀ



ଗଟନ୍‌ବର୍ଗ୍‌ର ଗୋଟିଏ ସ୍ୱିଡ଼ିସ୍ ପରିବାରରେ (୧୯୮୪)



ସ୍ୱେଦ୍‌ରେ ଭାରତର ରାଷ୍ଟ୍ରଦୂତଙ୍କ ସହିତ (୧୯୮୪)



ବ୍ରିଟିଶ୍ ଗାଏନାର କବି ଡେଭିଡ୍ ଡାଭିଡ଼ିନ୍ଙ୍କ ସହିତ
(କ୍ୟାଣ୍ଟର୍‌ବରୀ – ୧୯୮୯)



ସୋଆସ୍‌ର ସିନିୟର୍ କମନ୍‌ରୁମ୍‌ରେ (୧୯୮୪)

# କଲିକତାରୁ କ୍ୟାଣ୍ଟର୍‌ବରୀ

ଇଂଲାଣ୍ଡର ଦକ୍ଷିଣପୂର୍ବ ଉପକୂଳରେ କ୍ୟାଣ୍ଟର୍‌ବରୀ ଏକ ପ୍ରାଚୀନ ସହର । ଖ୍ରୀଷ୍ଟିୟାନ୍ ଜଗତର ଏହା ଏକ ମୁଖ୍ୟ ତୀର୍ଥସ୍ଥାନ । ତେଣୁ କେଉଁ ସୁଦୂର ଅତୀତରୁ ଇଂଲାଣ୍ଡ ଓ ଇଂଲାଣ୍ଡ ବାହାରୁ ଅସଂଖ୍ୟ ଯାତ୍ରୀଙ୍କର ପଟୁଆର ଏଇ ସହର ଅଭିମୁଖେ ଛୁଟି ଆସିଛି । ଚତୁର୍ଦ୍ଦଶ ଶତାବ୍ଦୀର ଇଂରେଜ କବି ଚସର୍ ତାଙ୍କର ପ୍ରସିଦ୍ଧ କାବ୍ୟ 'କ୍ୟାଣ୍ଟର୍‌ବରୀ ଟେଲ୍‌ସ୍'ରେ ଲଣ୍ଡନ୍‌ରୁ କ୍ୟାଣ୍ଟର୍‌ବରୀ ଅଭିମୁଖେ ବାହାରିଥିବା କେତେଜଣ ତୀର୍ଥଯାତ୍ରୀଙ୍କ ସମ୍ପର୍କରେ ଏକ ଚମତ୍କାର ବିବରଣୀ ଦେଇଛନ୍ତି । ଏଇ ଯାତ୍ରୀମାନେ ଘୋଡ଼ା ପିଠିରେ ଚଢ଼ି ବାଟରେ ପାନ୍ଥଶାଳାମାନଙ୍କରେ ବିଶ୍ରାମ ନେଇ ଲଣ୍ଡନ୍‌ରୁ କ୍ୟାଣ୍ଟର୍‌ବରୀ ଆସିଥିଲେ ଏବଂ ପଥଶ୍ରମ ଭୁଲିବାପାଇଁ ପ୍ରତ୍ୟେକ ଅନ୍ୟମାନଙ୍କୁ ଗୋଟିଏ ଲେଖାଏଁ କାହାଣୀ ଶୁଣାଉଥିଲେ ।

ଯେଉଁ ସମୟରେ ଚସର୍‌ଙ୍କ ଯାତ୍ରୀମାନେ ଲଣ୍ଡନ୍‌ରୁ କ୍ୟାଣ୍ଟର୍‌ବରୀ ଯାତ୍ରା କରିଥିଲେ, ସେତେବେଳେ ସେମାନଙ୍କର ରାସ୍ତା ଥିଲା ଅରଣ୍ୟାବୃତ, ଦୁର୍ଗମ ଓ ବିପଦସଙ୍କୁଳ । କ୍ୟାଣ୍ଟର୍‌ବରୀ ଥିଲା ଏକ ମଫସଲି ଅନୁନ୍ନତ ସହର । ଆଜି କିନ୍ତୁ କ୍ୟାଣ୍ଟର୍‌ବରୀ ଏକ ଅତି ଉନ୍ନତ ସମୃଦ୍ଧିଶାଳୀ ନଗର । ଇଂଲାଣ୍ଡର ସବୁଠାରୁ ପ୍ରସିଦ୍ଧ କ୍ୟାଥେଡ୍ରାଲ୍‌ଟି ଏହିଠାରେ ଅବସ୍ଥିତ । ଇଂଲାଣ୍ଡର ପ୍ରଧାନ ଧର୍ମଗୁରୁ କ୍ୟାଣ୍ଟର୍‌ବରୀର ବିଶପ୍ ଏଇଠାରେ ରହନ୍ତି । ପୁଣି କ୍ୟାଣ୍ଟର୍‌ବରୀରେ ନିକଟ ଅତୀତରେ କେଣ୍ଟ୍ ବିଶ୍ୱବିଦ୍ୟାଳୟଟି ପ୍ରତିଷ୍ଠିତ ହେବା ପରଠାରୁ ତୀର୍ଥଯାତ୍ରୀ ଓ ଟୁରିଷ୍ଟମାନଙ୍କ ସାଙ୍ଗକୁ ଦେଶ ବିଦେଶରୁ ବହୁ ଅଧାପକ, ଗବେଷକ ଓ ଛାତ୍ରମାନଙ୍କ ପାଇଁ ଏହା ଏକ ମିଳନସ୍ଥଳରେ ପରିଣତ ହୋଇଛି ।

୧୯୭୪ ସେପ୍ଟେମ୍ବର ୧୯ ତାରିଖ ରାତି ଏଗାରଟାରେ ବ୍ରିଟିଶ୍ ଓଭରସିଜ୍ ଏୟାର୍ ସର୍ଭିସ୍‌ର ଗୋଟିଏ ବିମାନରେ ମୁଁ କଲିକତା ଛାଡ଼ିଲି କ୍ୟାଣ୍ଟର୍‌ବରୀ ଅଭିମୁଖେ । କେଣ୍ଟ୍ ବିଶ୍ୱବିଦ୍ୟାଳୟରେ ଇଂରାଜୀ ସାହିତ୍ୟରେ ଗବେଷଣା ପାଇଁ କମନ୍‌ୱେଲ୍‌ଥ୍ ଅନୁଷ୍ଠାନ ମୋ ପାଇଁ ଗୋଟିଏ ବୃତ୍ତିର ଆୟୋଜନ କରିଥିଲେ ।

କଲିକତାରୁ ନିୟମିତ ଲଣ୍ଡନ୍ ଯାଉଥିବା ଏକ ସାଧାରଣ ଯାତ୍ରୀବାହୀ ବିମାନର ଆଭ୍ୟନ୍ତରୀଣ ପରିବେଶ, ସେ ଦିନର ରାତ୍ରି ଓ ସେଦିନ ଘଟିଯାଉଥିବା ସମସ୍ତ ଘଟଣା ମୋର ମନେ ହେଉଥିଲେ ଅପୂର୍ବ ଓ ରୋମାଞ୍ଚକର । ସେଇଦିନ ମୁଁ ପ୍ରଥମ ଥର ପାଇଁ ଜନ୍ମଭୂମି ଭାରତବର୍ଷ ଛାଡ଼ି ଯାଉଥିଲି ଅନ୍ୟ ଏକ ଦେଶକୁ – ଭାରତଠାରୁ ଛଅହଜାର ମାଇଲ୍ ଦୂରରେ ଅବସ୍ଥିତ ଆମର ପୂର୍ବତନ ଶାସକମାନଙ୍କ ଦେଶ ଇଂଲାଣ୍ଡକୁ । ଇଂରେଜମାନଙ୍କଦ୍ୱାରା ଶାସିତ ହେବା ସମୟରୁ ଭାରତୀୟମାନେ ଇଂଲାଣ୍ଡ ଯାତ୍ରାରେ ଯେଉଁ

ଅହେତୁକ ଗର୍ବ ଓ ଗୌରବର କାରଣ ଦେଖନ୍ତି, ହୁଏତ ମୁଁ ସେଭଳି କିଛି ଦେଖୁଥିଲି । ତେଣୁ ଗର୍ବ, ଭୟ, ସଂକୋଚ, ବିଷାଦ ପ୍ରଭୃତି ବହୁ ଭାବର ସମନ୍ୱୟରେ ମୋର ମାନସିକ ଅବସ୍ଥା ଥିଲା ଜଟିଳ ଓ ଅସ୍ୱାଭାବିକ । ×××

ବିମାନ ଦମ୍‌ଦମ୍ ଛାଡ଼ି ଭୂମିଠାରୁ କେତେ ହଜାର ଫୁଟ ଉପରେ ଘଣ୍ଟାରେ କେତେ ହଜାର ମାଇଲ୍ ବେଗରେ କେଜାଣି ଉଡ଼ି ଚାଲିଥିଲା । କେହି ଜଣେ ଏୟାର୍ ହୋଷ୍ଟେସ୍ ବିମାନ ଆକ୍‌ସିଡେଣ୍ଟର ସମ୍ମୁଖୀନ ହେଲେ କ'ଣ କରିବାକୁ ହେବ, ସେ ସମ୍ପର୍କରେ ବିଶଦ ଭାବରେ ବୁଝାଇ ସାରିବା ପରେ ଆଉ ଜଣେ ବିମାନର ଗତି, ପବନର ବେଗ ଓ ଜଳବାୟୁର ତାପମାତ୍ରା ସମ୍ପର୍କରେ ବିବରଣୀମାନ ଦେଉଥିଲେ । ସେ ସବୁରେ ମୋର ଆଗ୍ରହ ନ ଥିଲା । ଭୁବନେଶ୍ୱରରେ ପରିବାର ଓ ବନ୍ଧୁମାନଙ୍କଠାରୁ ବିଦାୟ, ଦମ୍‌ଦମ୍‌ରେ ଅପେକ୍ଷା କରିଥିବା ବେଳେ ପଲ୍ ସହିତ ପରିଚୟ, ଏୟାର୍ ପୋର୍ଟ୍‌ରେ ମୋ ସୁଟ୍‌କେଶ୍ ବୋହିଥିବା କୁଲି ବାଳକର ଶଙ୍କିତ ମୁଖଭଙ୍ଗୀ – ସବୁ ମୋର ଗୋଟି ଗୋଟି ମନେ ପଡୁଥିଲା ।

ବିମାନରେ ମୋ ବାମ ପାଖରେ ବସିଥିବା ସୁଦୀର୍ଘ ଓ ବିଶାଳବପୁ ଇଂରେଜ ଭଦ୍ରବ୍ୟକ୍ତି ଜଣକ ସହଜ ଓ ସ୍ୱାଭାବିକ ଭାବରେ ଢୁଳାଉ ଥିଲେ । ଆପାତତଃ ସାତ ସମୁଦ୍ର ତେର ନଈ ଉପରେ ଉଡ଼ି ଚାଲିବାର ଅନୁଭୂତି ତାଙ୍କୁ ସାମାନ୍ୟ ବି ଉତ୍ତେଜିତ କରୁ ନ ଥିଲା । ଏଭଳି ଅନୁଭୂତି ହୁଏତ ତାଙ୍କ ପାଇଁ ଥିଲା ନିୟମିତ ଓ ସାଧାରଣ । ଢୁଳାଇବା ଆଗରୁ ମୋତେ ସେ କହି ସାରିଥିଲେ, ସେ ମାଲୟେସିଆରୁ ଫେରୁଛନ୍ତି । କଲିକତା ଦେଇ ସେ ଆସିଲେ କିନ୍ତୁ ଭାରତରେ ବ୍ରେକ୍ ଜର୍ଣ୍ଣି କରି ନାହାନ୍ତି ।

ମୁଁ ବିମାନର ଝରକା ଦେଇ ବାହାରକୁ ଚାହୁଁଥାଏ । କିନ୍ତୁ ଆମେ କେଉଁ ଦେଶ ଉପର ଦେଇ ଉଡ଼ି ଯାଉଥାଉ, ତାହା ଏୟାର୍ ହୋଷ୍ଟେସ୍‌ଙ୍କ ଘୋଷଣାରୁ ହିଁ ଜାଣି ହେଉଥାଏ, ବାହାରର ଘନୀଭୂତ ଅନ୍ଧକାରରେ ସବୁ ଦେଶର ଅସ୍ତିତ୍ୱ ହୋଇଥାଏ ଏକାକାର । କେବେ କେବେ ବୋଧହୁଏ କ୍ଷୀଣ ବିଦ୍ୟୁତ୍ ଆଲୋକର ସମାରୋହ କୌଣସି ସମୃଦ୍ଧ ନଗରୀର ସ୍ଥିତି ଘୋଷଣା କରୁଥା'ନ୍ତି ।

ଅଳ୍ପ କେତେ ଘଣ୍ଟା ତଳେ କଲିକତାରେ ସିକ୍ୟୁରିଟି କାଉଣ୍ଟର୍ ଭିତର ଦେଇ ଆସିବା ମୁହୂର୍ତ୍ତରୁ ହିଁ ମୁଁ ଅନୁଭବ କରୁଥାଏ – ମୁଁ ଭାରତ ଛାଡ଼ି ଆଉ ଗୋଟିଏ ପୃଥିବୀରେ ପ୍ରବେଶ କରିସାରିଛି । ଭୁବନେଶ୍ୱର ଓ କଲିକତାରେ ମୋର ପରିବାର ଓ ବନ୍ଧୁମାନେ ବିଦାୟ ନେଇଛନ୍ତି, ଆପାତତଃ ଓଡ଼ିଆଭାଷାରେ କଥା କହିବା ବା ଚିହ୍ନା ମୁହଁଟିଏ ଦେଖିବାର ସମ୍ଭାବନା ନିକଟ ଭବିଷ୍ୟତରେ ନାହିଁ । ସିକ୍ୟୁରିଟି କାଉଣ୍ଟର୍‌ରେ ମୋର ଜିନିଷପତ୍ର ଓ ପୋଷାକ ପରିଚ୍ଛଦ ଯାଞ୍ଚ ହେଲା ପରେ ବିମାନରେ ଆରୋହଣ କରିବାକୁ ଅପେକ୍ଷା କରିଛି, ଏଇ ସମୟରେ ପ୍ରଥମେ କେହିଜଣେ ଇଂରାଜୀରେ ଚିତ୍କାର କଲେ, 'ହ୍ୟାଲୋ – ଲଣ୍ଡନ୍ ଯିବେ ?' ମୁଁ ସମ୍ମତି ଜଣାଇଲି । ସେ ମୋ ବେଶ ଓ ମୁଖଭଙ୍ଗୀରୁ କିପରି

କେଜାଣି ଠିକ୍ ଅନୁମାନ କରିପାରିଲେ, ମୁଁ ଜଣେ ଅଧ୍ୟାପକ, ଗବେଷଣା ପାଇଁ ଲଣ୍ଡନ୍‌ର କୌଣସି ବିଶ୍ୱବିଦ୍ୟାଳୟକୁ ଯାଉଥିବି । ସେ ମୋତେ ବିଅର୍ ଯାଚିଲେ । ମୁଁ କହିଲି, 'ମୁଁ ପିଏ ନାହିଁ ।' ସେ ହସିଲେ, 'ଆପଣ କିନ୍ତୁ ଲଣ୍ଡନ୍ ଯାଉଛନ୍ତି ଯେ !'

ସେ କହିଲେ, ତାଙ୍କର ନାମ ପଲ୍ । ଅଳ୍ପ ସମୟ ଆଗରୁ ପବ୍‌ରେ ବିଅର୍ ଗ୍ଲାସ୍‌ଟି ଧରି ସେଥିରୁ ଅଳ୍ପ ଅଳ୍ପ ବିଅର୍ ପିଉଥିବା ସମୟରେ ସେ ପବ୍‌ର ମାଲିକଙ୍କୁ ବୁଝାଉଥିବାର ମୁଁ ଶୁଣିଲି, ଏଥର ମୋତେ 'ଏଣ୍ଟ୍ରି' ଦେବାରେ ବ୍ରିଟିଶ୍ ହାଇ-କମିସନ୍ ଅନେକ ହଇରାଣ କଲେ । ମୁଁ କିନ୍ତୁ ଛାଡ଼ିବା ଲୋକ ନୁହେଁ ! ମୁଁ କହିଲି, ମୋତେ ଯେମିତି ହେଲେ 'ହୋମ୍'କୁ ଯିବାକୁ ହେବ । ଶେଷରେ ସେମାନେ ବୁଝିଲେ ।

ସାବନା, ପତଳା ଓ ଡେଙ୍ଗା ଲୋକଟି ପଲ୍, ମୁଣ୍ଡବାଳ କଳା । ଭାରତୀୟ ନିଶ୍ଚୟ; କିନ୍ତୁ ଇଂଲାଣ୍ଡକୁ ହିଁ ସେ ତାଙ୍କର 'ହୋମ୍' ବୋଲି ପବ୍ ମାଲିକଙ୍କୁ ବୁଝାଉଥିଲେ । ସେତେବେଳେ ମୁଁ ପଲ୍‌ଙ୍କୁ ଠିକ୍ ବୁଝି ପାରି ନ ଥିଲି, କିନ୍ତୁ ପରେ ଇଂଲାଣ୍ଡରେ ବହୁ ପଲ୍‌ଙ୍କ ସଙ୍ଗେ ମୋର ପରିଚୟ ହେଲା । ଏଇ ପଲ୍‌ମାନେ ବାସ୍ତବିକ କୌଣସି ଦେଶର ନୁହନ୍ତି; ଜନ୍ମଭୂମିରୁ ସେମାନେ ବିଚ୍ଛିନ୍ନ ହୋଇଛନ୍ତି, ଅଥଚ ସେମାନଙ୍କ କର୍ମଭୂମି ସେମାନଙ୍କୁ ଗ୍ରହଣ କରି ନାହିଁ । ଇଂଲାଣ୍ଡରେ ସେମାନେ ନିଜକୁ ଭାରତୀୟ ବୋଲି ଭାବନ୍ତି ଓ ଭାରତରେ 'ଇଂରେଜ' ବୋଲି । ଉପନିବେଶବାଦ ଓ ଅନ୍ୟାନ୍ୟ ଐତିହାସିକ କାରଣରୁ ଯେଉଁ ମଣିଷଗୋଷ୍ଠୀ ଆଜି ତା'ର ଦେଶ ଓ ପରମ୍ପରାରୁ ବିଚ୍ଛିନ୍ନ ହୋଇ ନିଃସଙ୍ଗ ଓ ନିଃସହାୟ ଅନୁଭବ କରୁଛି, ତାହାର ଜଣେ ସାର୍ଥକ ପ୍ରତିନିଧି ପଲ୍ । ପଲ୍‌ଙ୍କ ସଙ୍ଗେ ପରିଚୟ ମୋର ଇଂଲାଣ୍ଡ ଯାତ୍ରାର ପ୍ରଥମ ଅବିସ୍ମରଣୀୟ ସ୍ମୃତି ।

ଦମ୍‌ଦମ୍ ଏୟାର୍‌ପୋର୍ଟ୍‌ରେ ମୋର ସୁଟ୍‌କେଶ୍ ବୋହିଥିବା କୁଲି ବାଳକଟି ପଲ୍ ପରି ନିଜ ଦେଶ ଓ ପରମ୍ପରାଠାରୁ ବିଚ୍ଛିନ୍ନ ନ ହେଲେ ସୁଦ୍ଧା ନିଜ ଦେଶରେ ସେ କମ୍ ନିଃସଙ୍ଗ ଓ ନିଃସହାୟ ନୁହେଁ । ମୋ ସୁଟ୍‌କେଶ୍‌ଟି ବୋହିବା ଆଗରୁ ମୁଁ କେତେ ପଇସା ଦେବି ବୋଲି ସେ ମୋତେ ପଚାରିବା ମାତ୍ରେ ବିଦାୟ ଦେବା ପାଇଁ ଆସିଥିବା ବଙ୍ଗୀୟ ବନ୍ଧୁ କହିଲେ, 'ଇନି ବିଲାତ୍ ଯାଚ୍ଛେନ୍ ।' କୁଲି ବାଳକଟି କ'ଣ ବୁଝିଲା କେଜାଣି ମୋ ସଙ୍ଗେ ଦରଦାମ୍ ନ ଛିଣ୍ଡାଇ ନୀରବରେ ମୋ ସୁଟ୍‌କେଶ୍‌ଟି ମୁଣ୍ଡାଇ ଇଣ୍ଟର୍‌ନ୍ୟାସ୍‌ନାଲ୍ କାଉଣ୍ଟର ଅଭିମୁଖେ ଚାଲିଲା । ବିଲାତ ନାମ ଶୁଣି ସେ ହଠାତ୍ ସଙ୍କୁଚିତ, କେତେକାଂଶରେ ଭୟଭୀତ ହୋଇ ପଡ଼ିଲା ଯେପରି ଓ କେଜାଣି କାହିଁକି ସେହି କୁଲି ବାଳକଟିର ମୁଖଭଙ୍ଗୀ ଭାରତୀୟ ଜାତିର ବିଲାତ ପ୍ରତି ଯୁଗ ଯୁଗ ଧରି ପୁଞ୍ଜୀଭୂତ ମନୋଭାବର ପ୍ରତୀକ ପରି ମୋର ମନେହେଲା । ବିଲାତ ଏକ ଅତି ଶକ୍ତିଶାଳୀ, ଅତି ସମୃଦ୍ଧ ଓ ରହସ୍ୟମୟ ଦେଶ; ଇଂରେଜମାନଙ୍କ ପୋଷାକ, ପରିଚ୍ଛଦ, ଖାଦ୍ୟ ଓ ଭାଷା ସବୁ କିଛି ପ୍ରଗତି ଓ ସଭ୍ୟତାର ମାନଦଣ୍ଡ – ଏଇ ଧାରଣାଟି ଭାରତରେ ଏତେ ସୁଦୃଢ଼ ଭାବରେ ପ୍ରତିଷ୍ଠିତ ଯେ ଜଣେ ଭାରତୀୟର ବିଲାତ ଯାତ୍ରା ବହୁ ବର୍ଷ ହେଲା ଏକ ଆଭିଜାତ୍ୟର ପ୍ରତୀକ ରୂପେ ବିବେଚିତ

ହୋଇ ଆସିଛି । ହୁଏତ ବିଲାତ ପ୍ରତି ଏଭଳି ମନୋଭାବ ଶିକ୍ଷିତ ମହଲରେ ଯଥେଷ୍ଟ ହ୍ରାସ ପାଇଲାଣି; ତଥାପି ସାଧାରଣ ଭାରତୀୟ ମନରେ ବିଲାତଫେରନ୍ତା ପ୍ରତି ଭୟ ଓ ସମ୍ଭ୍ରମ ଅନେକାଂଶରେ ଅକ୍ଷୁଣ୍ଣ ଅଛି । ବହୁ ଜାତି, ଉପଜାତି ଓ ଶ୍ରେଣୀରେ ବିଭକ୍ତ ଭାରତୀୟମାନଙ୍କ ମଧ୍ୟରେ 'ବିଲାତ' ବା 'ଆମେରିକା' ଫେରନ୍ତାମାନେ ଏକ ନୂତନ ଶ୍ରେଣୀ ସୃଷ୍ଟି କରି ବିଲାତ ବା ଆମେରିକା ସମ୍ପର୍କରେ ସାଧାରଣ ଭାରତୀୟ ମନରେ ବିଭ୍ରାନ୍ତିକର ଧାରଣାମାନ ସୃଷ୍ଟି କରିବାରେ କମ୍ ସାହାଯ୍ୟ କରି ନାହାନ୍ତି ।

ବିମାନଟି କଲିକତାରୁ ଲଣ୍ଡନ୍ ଉଡ଼ି ଚାଲିଥିବା ସମୟରେ ସେଇ ମଳିନ କୁଲି ବାଳକଟିର ମୁହଁ ମୋ ସମ୍ମୁଖରେ ବାରମ୍ବାର ଭାସି ଉଠୁଥିଲା । ଦୁଇ ଶହ ବର୍ଷ ଆମ ଦେଶକୁ ଶାସନ କରି ଆମ ଦେଶରେ ସେମାନଙ୍କ ଶିକ୍ଷା, ପ୍ରଶାସନ ଓ ରାଜନୀତିକ ବ୍ୟବସ୍ଥା ପ୍ରବର୍ତ୍ତନ କରିଥିବା ଇଂରେଜମାନଙ୍କ ଦେଶକୁ ଯାତ୍ରା କଲାବେଳେ ମୁଁ ନିଜକୁ କେତେକାଂଶରେ କ୍ଷୁଦ୍ର ଓ ସଙ୍କୁଚିତ ଅନୁଭବ କରୁଥିଲି । ଦମ୍‌ଦମ୍‌ର କୁଲି ବାଳକର ମୁଖଭଙ୍ଗୀରେ ମୁଁ ମୋ ନିଜ ମୁଖଭଙ୍ଗୀର ପ୍ରତିଫଳନ ହିଁ ଦେଖୁଥିଲି । × × ×

ଲଣ୍ଡନ୍‌ର ହେଥ୍ରୋ ଏୟାର୍‌ପୋର୍ଟ୍‌ରେ ଆମର ବିମାନ ପହଞ୍ଚିବାର ସମୟ ପରଦିନ ସକାଳ ୮ଟା ୩୦ । ସକାଳ ହେବାମାତ୍ରେ ଯାତ୍ରୀମାନଙ୍କ ମଧ୍ୟରେ ଚଞ୍ଚଳତା ପ୍ରକାଶ ପାଇଲା । ଅନେକେ ହୁଏତ ପ୍ରଥମଥର ପାଇଁ ଭାରତରୁ ଇଂଲାଣ୍ଡ ଆସୁଥିଲେ, କେହି କେହି ଫେରୁଥିଲେ ନିଜ ଦେଶକୁ, ବହୁ ଦିନର ବ୍ୟବଧାନ ପରେ । ମୋ ବାମ ପାଖରେ ବସିଥିବା ବିଶାଳବପୁ ଇଂରେଜ ଭଦ୍ରଲୋକ ମୋତେ ବ୍ୟବସାୟିକ ରୀତିରେ 'ଗୁଡ୍ ମର୍ଣ୍ଣିଂ' ଜଣାଇ ତର ତର ହୋଇ ନିତ୍ୟକର୍ମ ସାରିଦେଲେ । ଏୟାର୍ ହୋଷ୍ଟେସ୍‌ମାନେ ଯାତ୍ରୀମାନଙ୍କ ସାମ୍ନାରେ ବ୍ରେକ୍‌ଫାଷ୍ଟ ରଖିଦେଇ ଅଳ୍ପ ସମୟ ପରେ ଆମେ ଲଣ୍ଡନ୍‌ରେ ପହଞ୍ଚିବୁ ବୋଲି ଘୋଷଣା କରୁଥାନ୍ତି । କିଛି ସମୟ ପରେ ବିମାନ ତଳକୁ ଖସିବାକୁ ଲାଗିଲା । ସେ ଦିନର ଉଜ୍ଜ୍ୱଳ ସକାଳରେ ଲଣ୍ଡନ୍ ସହର ଆକାଶମାର୍ଗରୁ ଗୋଟିଏ ଚମତ୍କାର କଣ୍ଢେଇ ସହର ପରି ଦିଶୁଥିଲା । ବିମାନ ଯେତେ ଯେତେ ତଳକୁ ଆସିଲା, ଏଇ ସହରଟିର ଆକାର ସେହି ପରିମାଣରେ ବୃହଦ୍‌ରୁ ବୃହତ୍ତର ଦେଖାଗଲା । ଇଂରେଜ ଭଦ୍ରବ୍ୟକ୍ତି କହିଲେ, 'ହେଇ ଦେଖ, ତୁମେ ଆସିବ ବୋଲି ଆମେ ଲଣ୍ଡନ୍‌କୁ ଭାରତୀୟ ପାଗ ଡାକି ଆଣିଛୁ ।'

ଅଳ୍ପ ସମୟ ପରେ ବିମାନ ଘାଟୀରୁ ବସ୍ ଯୋଗେ ଲଣ୍ଡନ୍‌ର କେନ୍ଦ୍ର ବସ୍‌ଷ୍ଟାଣ୍ଡ 'ଭିକ୍ଟୋରିଆ' ଅଭିମୁଖେ ଯାତ୍ରା କଲି । ସେଠାରୁ ମୋର ର୍‌ୟାମ୍‌ଜି ହଲ୍‌କୁ ଯିବାର କାର୍ଯ୍ୟକ୍ରମ ଥିଲା । ର୍‌ୟାମ୍‌ଜି ହଲ୍ ଲଣ୍ଡନ୍‌ର ପ୍ରସିଦ୍ଧ ପାଞ୍ଚଶହ ଅଶୀ ଫୁଟ ଉଚ୍ଚ ପୋଷ୍ଟାଲ୍ ଟାୱାର୍ ନିକଟରେ ଅବସ୍ଥିତ ଏକ ଛାତ୍ରାବାସ । ବର୍ଷର ସବୁ ସମୟରେ ଦେଶବିଦେଶରୁ ଆଗତ ଛାତ୍ର, ଅଧ୍ୟାପକ ତଥା ବୁଦ୍ଧିଜୀବୀମାନଙ୍କଦ୍ୱାରା ଏହା ଅଧିକୃତ ହୋଇଥାଏ ।

ବିମାନଘାଟୀରୁ ଭିକ୍ଟୋରିଆ ବସ୍‌ଷ୍ଟାଣ୍ଡ ଅଭିମୁଖେ ଯାତ୍ରା କରୁଥିବା ସମୟରେ ଚଳମାନ ବସ୍ ଭିତରୁ ହିଁ ମୋର ଲଣ୍ଡନ୍ ସହର ସହିତ ପ୍ରଥମ ଚାକ୍ଷୁଷ ପରିଚୟ । ଇଂରାଜୀ ସାହିତ୍ୟର ଛାତ୍ର ହିସାବରେ ବହୁ ଗଳ୍ପ, ଉପନ୍ୟାସ, କବିତା, ନାଟକରେ ଏଇ ସହର ଓ ତା'ର ଜୀବନଯାତ୍ରାର ବୈଚିତ୍ର୍ୟ ସମ୍ପର୍କରେ ଅବଶ୍ୟ ମୁଁ ପଢ଼ିଥିଲି । ପୁଣି ଏକ ପୂର୍ବତନ ବ୍ରିଟିଶ୍ ଉପନିବେଶର ନାଗରିକ ହିସାବରେ ମୋ ଦେଶ ଓ ସଂସ୍କୃତିର ବିଗତ ଦୁଇ ଶତାବ୍ଦୀର ଇତିହାସ କିଭଳି ଲଣ୍ଡନ୍ ସହରରୁ ହିଁ ନିୟନ୍ତ୍ରିତ ହୋଇଛି, ସେ ସମ୍ପର୍କରେ ମୁଁ ଅବହିତ ଥିଲି; କିନ୍ତୁ ମୋ ସମ୍ମୁଖର ବାସ୍ତବ ଲଣ୍ଡନ୍ ମୋର କଳ୍ପନାର ଲଣ୍ଡନ୍‌ଠାରୁ ଯେପରି କେତେକାଂଶରେ ଭିନ୍ନ ଥିଲା ! ଉଜ୍ଜ୍ୱଳ ସୂର୍ଯ୍ୟକିରଣରେ ଲଣ୍ଡନ୍ ସହର ଦିଶୁଥିଲା ପରିଚ୍ଛନ୍ନ, ସୁଦୃଢ଼ ଓ ଜୀବନ୍ତ । ଫୁଟ୍‌ପାଥ୍‌ର ଶ୍ୱେତାଙ୍ଗ ମଣିଷମାନେ ଦିଶୁଥିଲେ ସ୍ୱାସ୍ଥ୍ୟବାନ୍, ଜୀବନ୍ତ–ଉଲ୍ଲାସରେ ଚଞ୍ଚଳ ! ଏଇ ନୂତନ ସହରରେ ପହଞ୍ଚି ହଠାତ୍ କିପରି ଉତ୍ସାହିତ ଓ ଉତ୍‌ଫୁଲ୍ଲ ଅନୁଭବ କରୁଥିଲି । ଭାରତୀୟ ସହରର ମଳିନତା ଓ ଆବର୍ଜନା, ଦୁର୍ବଳ, ରୁଗ୍ଣ ଯାତ୍ରୀ ଓ ଭିକ୍ଷୁକମାନଙ୍କ ପଟୁଆର ହଠାତ୍ ଅନ୍ୟ କେଉଁ ଗ୍ରହର ଦୃଶ୍ୟ ପରି ମନେ ହେଉଥିଲେ ସୁଦୂର ଓ ଅବାନ୍ତର ।

ବସ୍ତୁତଃ ଲଣ୍ଡନ୍ ସହର ହିଁ ଶତାବ୍ଦୀ ଶତାବ୍ଦୀ ଧରି ଇଂରେଜ ଜାତିର ଧର୍ମ, ସାହିତ୍ୟ, ରାଜନୀତି, ଇତିହାସ ଓ ଅର୍ଥନୀତିକୁ ନିୟନ୍ତ୍ରିତ କରି ଆସିଛି । କେବଳ ସେତିକି ନୁହେଁ, ସପ୍ତଦଶ ଶତାବ୍ଦୀରୁ ଇଂରେଜ ଜାତି ସାତସମୁଦ୍ର ଅତିକ୍ରମ କରି ଇଂଲାଣ୍ଡ ଦ୍ୱୀପର ସଂକୀର୍ଣ୍ଣ ପରିସୀମା ବାହାରେ ଯେଉଁ ଉପନିବେଶମାନ ସୃଷ୍ଟି କରିଆସିଛି, ବିଗତ ଦୁଇ ଶତାବ୍ଦୀରେ ସେ ସବୁର ରାଜନୀତିକ ଓ ସାଂସ୍କୃତିକ ଜୀବନର ପ୍ରାଣକେନ୍ଦ୍ର ହୋଇଛି ଲଣ୍ଡନ୍ । ଆଜି ଅବଶ୍ୟ ଯୁକ୍ତରାଷ୍ଟ୍ର ଆମେରିକା, କାନାଡ଼ା, ନିଉଜିଲାଣ୍ଡ, ଅଷ୍ଟ୍ରେଲିଆ ଭଳି ଦେଶସବୁ ସ୍ୱାଧୀନ ହୋଇଗଲେଣି । ତଥାପି ସେ ଦେଶର ଅଧିକାଂଶ ଅଧିବାସୀମାନଙ୍କ ମୂଳଭୂମି ଥିଲା ଇଂଲାଣ୍ଡ । ତେଣୁ ଲଣ୍ଡନ୍ ପ୍ରତି ସେମାନଙ୍କ ଆକର୍ଷଣ ସ୍ୱାଭାବିକ । ଏସିଆ ଓ ଆଫ୍ରିକାର ପୂର୍ବତନ ଇଂରେଜ ଉପନିବେଶମାନଙ୍କରେ ଊନବିଂଶ ଓ ବିଂଶ ଶତାବ୍ଦୀର ପ୍ରଥମ ଅର୍ଦ୍ଧାଂଶରେ ମୋଟାମୋଟି ଇଂରେଜମାନଙ୍କ ରାଜନୀତିକ ଓ ସାଂସ୍କୃତିକ ମୂଲ୍ୟବୋଧକୁ ହିଁ ଆଦର୍ଶ ଭାବରେ ଗ୍ରହଣ କରାଯାଇଛି । ପରିଣାମରେ, ଲଣ୍ଡନ୍ ପ୍ରତି ଅସଂଖ୍ୟ ଏସିଆ ଓ ଆଫ୍ରିକାବାସୀଙ୍କ ମୋହ ଅଦମ୍ୟ । ଆଜି ଅବଶ୍ୟ ଇଂରେଜ ସାମ୍ରାଜ୍ୟ ଭାଙ୍ଗିପଡ଼ିଛି । ଆମେରିକା, ଜର୍ମାନୀ ଓ ଜାପାନର ଶିଳ୍ପ–ସାମ୍ରାଜ୍ୟ ସହିତ ପ୍ରତିଯୋଗିତାରେ ଇଂଲାଣ୍ଡ ବିଶେଷ ସଫଳ ହୋଇ ପାରୁ ନାହିଁ । ତଥାପି କେବଳ ଇଂଲାଣ୍ଡ ନୁହେଁ, ମନୁଷ୍ୟ ସଭ୍ୟତାର ଇତିହାସରେ ଲଣ୍ଡନ୍ ଯୁଗେ ଯୁଗେ ଯେଉଁ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଆସିଛି, ତାହା ଅସ୍ୱୀକାର କରାଯାଇ ନ ପାରେ ।

ଲଣ୍ଡନ୍ ସହରର ଲିଖିତ ଇତିହାସ ଦୁଇହଜାର ବର୍ଷର ପୁରୁଣା । ଖ୍ରୀଷ୍ଟାବ୍ଦ ୪୩ରେ ରୋମାନ୍‌ମାନେ ହିଁ ସେମାନଙ୍କ ସାମ୍ରାଜ୍ୟ ବିସ୍ତାର କାଳରେ ଟେମ୍‌ସ୍ ନଦୀର ଅବବାହିକାରେ ସ୍ଥାପନ କରିଥିଲେ 'ଲଣ୍ଡିନିୟମ୍' ସହର । ଚତୁର୍ଦ୍ଦିଗରେ ସମୁଚ୍ଚ ପ୍ରାଚୀର – ଓ ପ୍ରାଚୀର ମଧ୍ୟରେ କେତୋଟି ରାଜପ୍ରାସାଦ ଓ ଦୁର୍ଗ – ଏହାହିଁ ଥିଲା ସେକାଳରେ ସହର ପରିକଳ୍ପନା । ପଞ୍ଚମ

ଶତାବ୍ଦୀର ପ୍ରାରମ୍ଭ ବେଳକୁ ଅର୍ଥାତ୍ ରୋମାନ୍‌ମାନେ ଇଂଲାଣ୍ଡ ପରିତ୍ୟାଗ କରିବା ସମୟକୁ ଲଣ୍ଡନ୍ ହୋଇ ସାରିଥିଲା ରୋମାନ୍ ସାମ୍ରାଜ୍ୟର ଷଷ୍ଠ ବୃହତ୍ତମ ସହର । ନବମ ଶତାବ୍ଦୀରେ ରାଜା ଆଲ୍‌ଫ୍ରେଡ୍‌ଙ୍କ ରାଜତ୍ୱ କାଳରେ ଲଣ୍ଡନ୍‌ର ରାଜନୀତିକ ଓ ସାମରିକ ଗୁରୁତ୍ୱ ଯଥେଷ୍ଟ ବୃଦ୍ଧି ପାଇଥିଲା । ଇଂଲାଣ୍ଡର ଉତ୍ତର ଦିଗରୁ କ୍ରମାଗତ ଲାଗି ରହିଥିବା ଭାଇକିଂ ବା ଜଳଦସ୍ୟୁମାନଙ୍କ ଆକ୍ରମଣର ମୁକାବିଲା କରିବା ପାଇଁ ଲଣ୍ଡନ୍‌କୁ ସାମରିକ ଦୃଷ୍ଟିରୁ ଅଧିକ ଶକ୍ତିଶାଳୀ କରିଥିଲେ ରାଜା ଆଲଫ୍ରେଡ୍ । ଏକାଦଶ ଶତାବ୍ଦୀରେ ନରମାନ୍ ଇଂଲାଣ୍ଡ ଅଧିକାର କରିବା ପରେ ଲଣ୍ଡନ୍ ହିଁ ହେଲା ସେମାନଙ୍କର ରାଜଧାନୀ । ପ୍ରାୟ ସେହି ସମୟରୁ ଲଣ୍ଡନ୍ ସହରଟି ଦୁଇ ଭାଗରେ ବିଭକ୍ତ ହୋଇ ଆସିଛି – ୱେଷ୍ଟ୍ ମିନଷ୍ଟର୍ ଓ ଲଣ୍ଡନ୍ ।

ରୋମାନ୍‌ମାନଙ୍କ ଲଣ୍ଡନ୍ ସହରଟି ଥିଲା ମୁଖ୍ୟତଃ କେତୋଟି ଦୁର୍ଗ, ରାଜପ୍ରାସାଦ ଓ ବନ୍ଦରର ସମଷ୍ଟି । ୧୬୬୬ ଖ୍ରୀଷ୍ଟାବ୍ଦରେ ଏକ ଅଗ୍ନ୍ୟୁତ୍ପାତରେ ମଧ୍ୟଯୁଗୀୟ ଲଣ୍ଡନ୍ ସହରଟି ପ୍ରାୟ ଭୟଙ୍କର ଏକ ଧ୍ୱଂସସ୍ତୂପରେ ପରିଣତ ହୋଇଗଲା । ଏଥିରେ ପ୍ରାୟ ତେରହଜାର ଘର ଭସ୍ମୀଭୂତ ହୋଇଛି ବୋଲି କୁହାଯାଏ । ଏହାପରେ କିନ୍ତୁ ଇଂରେଜ ଜାତି ପୁଣି ଥରେ ନୂତନ ରୂପରେ ନିର୍ମାଣ କଲେ ଲଣ୍ଡନ୍ ସହର । ଇଟା, ପଥର ଓ ସ୍ଲେଟ୍‌ରେ ଅଷ୍ଟାଦଶ ଶତାବ୍ଦୀରେ ଗଢ଼ାହେଲା ନୂତନ ଲଣ୍ଡନ୍ ସହର । ତେଣୁ ଯେଉଁ ଭୟଙ୍କର ଅଗ୍ନ୍ୟୁତ୍ପାତ ପରେ ନୂତନ ଲଣ୍ଡନ୍ ସହରଟି ଗଢ଼ାଗଲା, ଐତିହାସିକମାନେ ତାହାକୁ ମହାନ୍ ଅଗ୍ନ୍ୟୁତ୍ପାତ ବା Great Fire କହିବାରେ ଆଶ୍ଚର୍ଯ୍ୟଜନକ କିଛି ନାହିଁ ।

କିନ୍ତୁ ଆଧୁନିକ ଲଣ୍ଡନ୍ ସହର ଭାଗ୍ୟରେ ମଧ ଥିଲା ଆଉ ଏକ ଅଧିକ ଭୟଙ୍କର ଅଗ୍ନ୍ୟୁତ୍ପାତ – ଦ୍ୱିତୀୟ ମହାଯୁଦ୍ଧ କାଳରେ । ଏହି ସମୃଦ୍ଧିଶାଳୀ ସହରଟିକୁ ଧ୍ୱଂସ କରିବାକୁ ଦ୍ୱିତୀୟ ମହାଯୁଦ୍ଧ ସମୟରେ ଏହା ଉପରକୁ ନିକ୍ଷିପ୍ତ ହୋଇଥିଲା ପଚାଶହଜାରଟି ଅତି ଶକ୍ତିଶାଳୀ ବୋମା; ପ୍ରାୟ ଦେଢ଼ ନିୟୁତ ଘର ଅଙ୍ଗାର ଗଦାରେ ପରିଣତ କରାଯାଇଥିଲା । ସହରର ପ୍ରାୟ ଏକତୃତୀୟାଂଶ ସମ୍ପୂର୍ଣ୍ଣ ଧ୍ୱସ୍ତ ହୋଇ ଯାଇଥିଲା । ଏହା ଥିଲା ମାତ୍ର ତିରିଶ ବର୍ଷ ତଳର ଘଟଣା; କିନ୍ତୁ ହେଥ୍ରୋ ଏୟାର୍‌ପୋର୍ଟ୍‌ରୁ ଭିକ୍ଟୋରିଆ ଟରମିନ୍‌ସ୍‌କୁ ଯିବା ବାଟରେ କିମ୍ୱା ଲଣ୍ଡନ୍ ସହରରେ ଏକ ସପ୍ତାହ ରହଣି କାଳରେ ସହରର ବିଭିନ୍ନ ଅଞ୍ଚଳ ବୁଲି ଦେଖିବା ସମୟରେ ଯୁଦ୍ଧକାଳୀନ ଧ୍ୱଂସଲୀଳାର ସାମାନ୍ୟତମ ଅସ୍ତିତ୍ୱ ବି କେଉଁଠାରେ ଦେଖିଲି ନାହିଁ । ମାତ୍ର ଅଳ୍ପ କେତେ ବର୍ଷ ମଧରେ ଧ୍ୱସ୍ତ ଗୃହଗୁଡ଼ିକର ମୂଳଭିତ୍ତି ଉପରେ ପୁଣି ଥରେ ଗଢ଼ି ଉଠିଛି ଅଧିକ ସୁଦୃଢ଼ ଅଧିକ ଉଜ୍ଜ୍ୱଳ ଆଧୁନିକ ରୁଚିସମ୍ପନ୍ନ କଂକ୍ରିଟ୍ ଓ କାଚର ବିପୁଳ ପ୍ରାସାଦଶ୍ରେଣୀ ।

ଆଜି ଲଣ୍ଡନ୍ ସହରର ଯେଉଁ ଚେହେରା ଦେଖିବାକୁ ମିଳେ, ତାହା ମୋଟାମୋଟି ଭିକ୍ଟୋରିୟାନ୍ ଯୁଗର । ବିଂଶ ଶତାବ୍ଦୀର ତୃତୀୟ ଦଶକଯାଏଁ ଲଣ୍ଡନ୍‌ର ଗୃହସବୁ ଭିକ୍ଟୋରିୟାନ୍ ଅର୍ଥାତ୍ ଉନବିଂଶ ଶତାବ୍ଦୀ ରୀତିରେ ହିଁ ନିର୍ମିତ ହେଉଥିଲା । ଆଜି ସୁଦ୍ଧା ଲଣ୍ଡନ୍‌ର ସଂକୀର୍ଣ୍ଣ ଅନ୍ଧଗଳି – ସବୁ ଏହାର ମଧ୍ୟଯୁଗୀୟ ଅତୀତକୁ ସ୍ମରଣ କରାଇଦିଏ । ସପ୍ତଦଶ ଓ ଅଷ୍ଟାଦଶ

ଶତାବ୍ଦୀର କେତେକ ପ୍ରାଚୀନ ସୌଧ (country house) ଏବେବି ସୁରକ୍ଷିତ ଓ ଲଣ୍ଡନ୍‌ର ଅନ୍ୟତମ ଆକର୍ଷଣ । ସେଣ୍ଟ୍ ପଲସ୍ କ୍ୟାଥେଡ୍ରାଲ୍, ବକିଂହାମ୍ ପାଲେସ୍, ପିକାଡ଼ିଲି ସର୍କସ୍, ଓ୍ୱେଷ୍ଟମିନଷ୍ଟର୍ ଆବେ, ବ୍ରିଟିଶ୍ ମିଉଜିୟମ୍, ନ୍ୟାସନାଲ ଆର୍ଟ୍ ଗ୍ୟାଲେରୀ – ଲଣ୍ଡନ୍‌ର ଟୁରିଷ୍ଟମାନେ ଅଳ୍ପ କେତେ ଘଣ୍ଟା ଭିତରେ ସାଧାରଣତଃ ଏହାହିଁ ବୁଲି ଦେଖିଥାନ୍ତି । କ୍ୟାଥେଡ୍ରାଲ୍‌ଟି ଲଣ୍ଡନ୍‌ରେ ମଧ୍ୟ ସ୍ଥଳରେ; ସପ୍ତମ ଶତାବ୍ଦୀର ଏକ ଭଗ୍ନସ୍ତୂପ ଉପରେ ଏହା ନିର୍ମିତ । ବକିଂହାମ୍ ପାଲେସ୍ ରାଣୀଙ୍କ ନିବାସ ସ୍ଥାନ । ପିକାଡ଼ିଲି ସର୍କସ୍ ସହରର କେନ୍ଦ୍ରସ୍ଥଳ । ଓ୍ୱେଷ୍ଟମିନିଷ୍ଟର୍ ଆବେ ବହୁ ପ୍ରସିଦ୍ଧ ରାଷ୍ଟ୍ରନାୟକ, କବି, ଶିଳ୍ପୀ ଓ ବୈଜ୍ଞାନିକଙ୍କ ସମାଧିଭୂମି । ଏ ସବୁ ଅବଶ୍ୟ ଦର୍ଶନୀୟ; କିନ୍ତୁ ଏ ସବୁ ଦେଖିବା ପରେ ମଧ୍ୟ ଲଣ୍ଡନ୍‌ର ବୈଚିତ୍ର୍ୟ ଓ ରହସ୍ୟର କେତେକାଂଶ ବା ଟୁରିଷ୍ଟମାନେ ହୃଦୟଙ୍ଗମ କରନ୍ତି ! ମଜା ଓ ଆନନ୍ଦର କଥା ହେଉଛି, ଲଣ୍ଡନ୍ ଭଳି ଜନାକୀର୍ଣ୍ଣ ବାଣିଜ୍ୟ ନଗରରେ ସୁଦ୍ଧା ପ୍ରାୟ ସତଚାଳିଶଟି ଚମତ୍କାର ବିସ୍ତୃତ ଉଦ୍ୟାନ ଓ ମୁକ୍ତ ଅଞ୍ଚଳ ଏଯାଏ ତିଷ୍ଠି ରହି ପାରିଛନ୍ତି ।

କେତେ ଯେ ଶିଳ୍ପୀ, ଲେଖକ, ସାମ୍ରାଜ୍ୟନିର୍ମାତା ଓ ବୈଜ୍ଞାନିକଙ୍କ ସ୍ୱପ୍ନ ଓ ସାଧନା ଏଇ ଲଣ୍ଡନ୍‌ରେ ବାସ୍ତବାୟିତ ହୋଇଛି, ତାହା ସ୍ମରଣ କଲେ ମନେହୁଏ – ମଣିଷ ସଭ୍ୟତାର ପ୍ରତ୍ୟେକ ଛାତ୍ର ପାଇଁ ଏହା ଏକ ପରମ ତୀର୍ଥଭୂମି । ଔପନ୍ୟାସିକ ଡିକେନ୍ସ୍, ଓସ୍କାର୍ ଓ୍ୱାଇଲ୍ଡ଼୍ ଓ. ଡ଼ି. ଏଚ୍ ଲରେନ୍ସ୍; କବି କୀଟ୍‌ସ୍, ପ୍ରାବନ୍ଧିକ ଜନ୍‌ସନ, ବୈଜ୍ଞାନିକ ମାଇକେଲ୍ ଫାରାଡ଼େ ଓ ମାର୍କୋନୀ, ସାମ୍ରାଜ୍ୟନିର୍ମାତା ରବର୍ଟ୍ ବାଡ଼େନ୍, ପାଓ୍ୱେଲ୍ ଓ କ୍ଲାଇଭ୍, ଶିଳ୍ପୀ ଜନ୍ କନ୍‌ଷ୍ଟେବଲ୍ ଓ ଉଇଲିୟମ୍ ମରିସ୍, ଚିନ୍ତାନାୟକ ଓ ରାଷ୍ଟ୍ରନିର୍ମାତା କାର୍ଲ୍‌ମାର୍କ୍‌ସ୍, ଲେନିନ୍ ଓ ମହାତ୍ମା ଗାନ୍ଧି ସମସ୍ତଙ୍କ ବ୍ୟକ୍ତିତ୍ୱ ଓ ସାଫଲ୍ୟର ପୃଷ୍ଠଭୂମି ଲଣ୍ଡନ୍ । ବ୍ରିଟିଶ୍ ମିଉଜିୟମ୍‌ର ଗୋଟିଏ କୋଠରିରେ ଦରିଦ୍ର ଓ ଅନାମଧେୟ କାର୍ଲ୍‌ମାର୍କ୍‌ସ୍ ଲେଖିଥିଲେ 'ଡାସ୍ କ୍ୟାପିଟାଲ୍' – ସମାଜବାଦୀ ଓ ସାମ୍ୟବାଦୀ ରାଷ୍ଟ୍ର ସମୂହର 'ବାଇବେଲ୍' । ଆଉ ମହାତ୍ମାଗାନ୍ଧିଙ୍କ ଚିନ୍ତା ଓ ଦର୍ଶନର ଭିତ୍ତି ଯୋଗାଇଥିଲା ଲଣ୍ଡନ୍‌ରେ ଆଇନ ଅଧ୍ୟୟନ ସମୟରେ ତାଙ୍କର ତିକ୍ତ ମଧୁର ଅନୁଭୂତି । ଲେନିନ୍ କିଂସ୍ କ୍ରଶ୍‌ରେ ଦୁଇ କୋଠରି ବିଶିଷ୍ଟ ଏକ ଫ୍ଲାଟ୍‌ରେ ରହି କଳ୍ପନା କରିଥିଲେ ରୁଷ ଭୂମିରେ ଜାର୍ ସାମ୍ରାଜ୍ୟର ପତନ ଓ ନୂତନ ସମାଜବାଦୀ ସମାଜର ଅଭ୍ୟୁଦୟ । × × ×

ଇଂଲାଣ୍ଡରେ ମୋର ପ୍ରଥମ ରାତିଟି କଟିଥିଲା ମାଉଣ୍ଟ୍ ପ୍ଲେଜାଣ୍ଟ୍ ହୋଟେଲ୍‌ରେ । ହୋଟେଲ୍‌ର ଉଜ୍ଜ୍ୱଳ କୋଠରି ଭିତରୁ କାଚ ଝରକାର ସିଲ୍‌କପର୍ଦ୍ଦା ଆଡ଼େଇ ଲଣ୍ଡନ୍ ସହରର ଚମତ୍କାର ସୌଧଶ୍ରେଣୀକୁ ଲକ୍ଷ୍ୟ କରି ମୁଁ ପୁଲକିତ ହେଲି ଯେପରି, ମୋ ନିକଟରେ ଗୋଟିଏ ବି ପେନ୍‌ସ୍ ନ ଥିବାରୁ ବିଷର୍ଣ୍ଣ ଅନୁଭବ କରୁଥିଲି ସେହିପରି । ଭାରତ ସରକାରଙ୍କ ବିଚିତ୍ର ଆଇନ ମୋତେ ମାତ୍ର ତିନି ପାଉଣ୍ଡ ବୈଦେଶିକ ମୁଦ୍ରା ସାଙ୍ଗରେ ନେଇ ଯିବାପାଇଁ ଅନୁମତି ଦେଇଥିଲା । ମାଉଣ୍ଟ୍ ପ୍ଲେଜାଣ୍ଟ୍ ହୋଟେଲ୍‌ରେ ଗୋଟିଏ ରାତିର ରହଣି ପାଇଁ

ସେଇତକ ମୁଦ୍ରା ଥିଲା ଯଥେଷ୍ଟ । ପରଦିନ ସକାଳେ ହୋଟେଲ୍‌ରୁ ର୍ୟାମ୍‌ଜି ହଲ୍‌କୁ ଯିବା ପାଇଁ ମୋ ନିକଟରେ ଟ୍ୟାକ୍ସି ଖର୍ଚ୍ଚ ବି ନ ଥିଲା । ବିବ୍ରତ ହୋଇ ଜଣେ ଦି'ଜଣ ଓଡ଼ିଆ ବନ୍ଧୁଙ୍କୁ ଟେଲିଫୋନ କଲି, କିନ୍ତୁ ଉତ୍ତର ପାଇଲି ନାହିଁ । ଅନ୍ତତଃ ର୍ୟାମ୍‌ଜି ହଲରେ ପହଞ୍ଚିଗଲେ ବ୍ରିଟିଶ୍ କାଉନ୍‌ସିଲ୍‌ର କେହି ପ୍ରତିନିଧି ମୋତେ ସାହାଯ୍ୟ କରିବେ ବୋଲି ଆଶା ଥିଲା ।

ପରଦିନ ସକାଳେ ମାଉଣ୍ଟ ପ୍ଲେଜାଣ୍ଟ ହୋଟେଲ୍‌ରେ ବ୍ରେକ୍‌ଫାଷ୍ଟ ଖାଇବା ସମୟରେ ମୋତେ ଗୋଟିଏ ବୁଦ୍ଧି ଦିଶିଲା । ମୋ ଭଳି ଅନ୍ୟ କେହି କମନ୍‌ୱେଲ୍‌ଥ୍ ସ୍କଲାର୍ ତ ନିଶ୍ଚିତ ସେଇ ହୋଟେଲ୍‌ରେ ରହୁଥିବେ ! ମୋ ଟେବୁଲ୍‌ର ଅଳ୍ପ ଦୂରରେ ବସିଥିବା ଦୁଇଜଣ ଆଫ୍ରିକୀୟ ଯୁବକଙ୍କ ନିକଟକୁ ଯାଇ ପଚାରିଲି, 'ଆପଣମାନେ କମନ୍‌ୱେଲ୍‌ଥ୍ ସ୍କଲାର୍ କି ?' ଏବଂ ଈଶ୍ୱରଙ୍କ ଆଶୀର୍ବାଦ ଭଳି ତତ୍‌କ୍ଷଣାତ୍ ଉତ୍ତର ଆସିଲା 'ହଁ' । ମୁଁ ମୋ ଅସୁବିଧା ଜଣାଇଲି । ସେମାନେ ହସି ହସି କହିଲେ, ସେମାନେ ମୋତେ ଯେକୌଣସି ପ୍ରକାର ସାହାଯ୍ୟ କରିବାକୁ ପ୍ରସ୍ତୁତ ।

କେନିୟାର ସେଇ ଦୁଇଜଣ ଛାତ୍ର ମୁଥିରସ୍ ଓ ମୋୱାଙ୍ଗିଙ୍କ ସାଙ୍ଗରେ ଟ୍ୟାକ୍ସିରେ ର୍ୟାମ୍‌ଜି ହଲକୁ ଯିବା ବାଟରେ ସେମାନେ ସେମାନଙ୍କ ଦେଶ କଥା ଗପୁଥିଲେ । ଟ୍ୟାକ୍ସି ଡ୍ରାଇଭର ବି ସେମାନଙ୍କ କଥାବାର୍ତ୍ତାରେ ବେଶ୍ ଆଗ୍ରହୀ ହୋଇ ପଡ଼ିଥିଲା । ହସି ହସି କହିଲା, 'ଅତିଥିମାନଙ୍କୁ ମୁଁ ଭଲ ବୋହିପାରେ ।' ଇଂଲାଣ୍ଡର ପ୍ରଥମ ସପ୍ତାହଟି କଟିଲା ବିଭିନ୍ନ ଦେଶ, ବିଭିନ୍ନ ପୃଷ୍ଠଭୂମିରୁ ଆଗତ ଛାତ୍ରମାନଙ୍କ ଗହଣରେ । ଚମଡ଼ାର ରଙ୍ଗ, ଧର୍ମ ଓ ଇତିହାସର ବିଭିନ୍ନତା ସତ୍ତ୍ୱେ ମଣିଷ ଓ ମଣିଷ ଭିତରେ କେତେ ସହଜରେ ସ୍ନେହ–ବନ୍ଧନ ଯୋଡ଼ି ହୋଇଯାଏ, ନିବିଡ଼ ଭାବରେ ତାହାହିଁ ମୁଁ ଅନୁଭବ କଲି । କେନିଆରୁ ଆସିଥିଲା ଜାଭେରୀ – ଗୁଜୁରାଟୀଭାଷୀ ମୁସଲମାନ । ଶହେ ବର୍ଷ ତଳେ ତା'ର ପୂର୍ବପୁରୁଷ ଭାରତ ଛାଡ଼ି ଯାଇଥିଲେ ଆଫ୍ରିକା । ହିନ୍ଦୀ ଭାଷା ଉପରେ ତା'ର ଦକ୍ଷତା ଭଲ । ମୋତେ କହିଲା, 'ଆପଣ ଆରବ ବା ସିରିଆନ୍ ଭଳି ଦିଶୁଛନ୍ତି ।' ନାଇଜେରିଆରୁ ଆସିଥିବା ଲୋଞ୍ଜେ ବନ୍ଧୁମାନଙ୍କ ଗହଣରେ ଅନର୍ଗଳ ଗପି ଲାଗିଥିଲା ତା ଜାତିର ଅତୀତ ଇତିହାସ, ନିଗ୍ରୋମାନଙ୍କ ପ୍ରତି ଅବିଚାର କରିବାର ମର୍ମନ୍ତୁଦ କାହାଣୀ । ଚୁ ଆସିଥିଲା ସିଙ୍ଗାପୁରରୁ । ˩ ଚାଇନିଜ୍, ବି.ଏ. ପଢ଼ିବାକୁ ଇଂଲାଣ୍ଡ ଆସିଛି । ଆସିବା ଆଗରୁ ତା'ର କାର୍‌ଟି ବିକ୍ରି କରି ଦେଇଛି । ତା'ର ଗାର୍ଲଫ୍ରେଣ୍ଡ ବହୁତ ମନେ ପଡୁଛି । ମୋତେ ସେ ନିମନ୍ତ୍ରଣ ଜଣାଇଲା ସିଙ୍ଗାପୁରରେ ଛୁଟି କଟାଇବା ପାଇଁ । ବିଦେଶରେ ଛୁଟି କଟାଇବା ଜଣେ ଭାରତୀୟ ପକ୍ଷରେ ଯେ କଳ୍ପନାବିଳାସ, ସିଙ୍ଗାପୁର ଭଳି ସମୃଦ୍ଧ ରାଷ୍ଟ୍ରରୁ ଆସିଥିବା ଚୁ ତା' ବୁଝିବ କିପରି ? ମୁଁ କହିଲି, 'ହଁ, ସୁବିଧା ହେଲେ ସିଙ୍ଗାପୁର ଆସିବି ।'

ଲଣ୍ଡନ୍ ଛାଡ଼ି କ୍ୟାଣ୍ଟର୍‌ବରୀ ଯିବା ପୂର୍ବ ଦିନ ଭାରତୀୟ ଦୂତାବାସ ପକ୍ଷରୁ ଇଂଲାଣ୍ଡରେ ନୂଆ ପାଦ ଦେଇଥିବା ସ୍କଲାର୍‌ମାନଙ୍କ ପାଇଁ 'ଇଣ୍ଡିଆ ହାଉସ୍'ରେ ଆୟୋଜିତ ହୋଇଥିଲା

ଏକ ଚା' ଭୋଜି । ଦଳେ ଭାରତୀୟ ଏକାଠି ହେଲେ ଯାହାହୁଏ, ସେଠି ବି ଠିକ୍ ସେଇ ଅବସ୍ଥା । କୋଳାହଳ, ବିଶୃଙ୍ଖଳା, ଅଶାଳୀନ ବ୍ୟବହାର । ପୁରୁଷ ଓ ମହିଳାମାନେ ଦୁଇଟି ଦଳରେ ବିଭକ୍ତ ହୋଇ ଉଚ୍ଚ ସ୍ୱରରେ ଆଲୋଚନା କରିବାରେ ଲାଗି ପଡ଼ିବା ଦେଖି ଭାରତୀୟ ଦୂତାବାସର କେହି ଜଣେ ରୁକ୍ଷ ଚେହେରାଧାରିଣୀ ଅଫିସର ମିସେସ୍ ଡୋଗ୍ରା ମହିଳାମାନଙ୍କୁ ଲକ୍ଷ୍ୟ କରି ଗଳା ଫଟାଇ ଚିତ୍କାର କରୁଥାନ୍ତି – 'ହେ, ଏଇଟା ଇଣ୍ଡିଆ ନୁହେଁ । ପୁରୁଷମାନଙ୍କ ସଙ୍ଗେ ମିଳାମିଶା କର ।'

ଆଉ ଜଣେ କେହି ଅଫିସର ସ୍କଲାର୍‌ମାନଙ୍କୁ କ୍ଷୁଦ୍ର ଉପଦେଶପୂର୍ଣ୍ଣ ଭାଷଣଟିଏ ଶୁଣେଇଲେ । ଭାଷଣରେ ସେ କହିଲେ, ଇଂଲାଣ୍ଡରେ 'ଇଣ୍ଡିଆ ହାଉସ୍' ବା ଭାରତୀୟମାନଙ୍କର ଭଲ ସୁନାମ ନାହିଁ । ଏଥିରେ ଅବଶ୍ୟ ସ୍କଲାର୍‌ମାନଙ୍କ ମଧ୍ୟରୁ କେହି ଆଶ୍ଚର୍ଯ୍ୟ ହେବାର କାରଣ ନ ଥିଲା ।

ଚା' ଭୋଜି ପରେ ର୍‌ୟାମ୍‌ଜି ହଲ୍‌କୁ ଫେରିବା ବାଟରେ ଇଂଲାଣ୍ଡରେ ଭାରତୀୟମାନଙ୍କ ଅସୁବିଧା ଓ ଭାରତୀୟମାନଙ୍କ ଅସାଧୁତା ହିଁ ଥିଲା ଆମର ଆଲୋଚ୍ୟ ବିଷୟ । ଲଣ୍ଡନ୍‌ରେ ଗୋଟିଏ ଛୋଟ ଫ୍ଲାଟ୍‌ରେ ରହୁଥିବା ଶ୍ରୀମାଳୀ ଆମମାନଙ୍କ ମଧ୍ୟରୁ କେତେଜଣଙ୍କୁ ତା' ଘରକୁ ବୁଲେଇ ନେଲା । ତା'ର ଅଭିଯୋଗ ଇଂରେଜମାନେ ଭାରତୀୟମାନଙ୍କୁ ଘରଭଡ଼ା ଦେବାକୁ ଆଦୌ ପସନ୍ଦ କରନ୍ତି ନାହିଁ । ଅଷ୍ଟ୍ରେଲିଆ, ନିଉଜିଲ୍ୟାଣ୍ଡ୍ ଏପରିକି ଆଫ୍ରିକାର ଲୋକମାନଙ୍କୁ ବରଂ ସେମାନେ ଘରଭଡ଼ା ଦେବେ, କିନ୍ତୁ ଭାରତୀୟଙ୍କ କଥା ପଡ଼ିଲେ ନାକ ଟେକିବେ । ଶ୍ରୀମାଳୀ ତା' ନିଜ ଅନୁଭୂତିରୁ ଏକଥା କହୁଥିଲା ।

ଅକ୍‌ସଫୋର୍ଡ୍‌ରେ ଇଂରାଜୀ ସାହିତ୍ୟରେ ଗବେଷଣା କରିବାକୁ ଆସିଥିବା ତାରା ହାସ୍ ନାୟେକ କହିଲା, 'ଶ୍ରୀମାଳୀସାହେବ ଯାହା କହୁଛନ୍ତି ସତ ଯେ କିନ୍ତୁ ଭାରତୀୟମାନଙ୍କ ନିଜ ଦୋଷରୁ ଏପରି ହୋଇଛି । ଜାପାନର ଭାରତୀୟ ଦୂତାବାସରେ କାମ କରୁଥିବା ଜଣେ ଭଦ୍ରବ୍ୟକ୍ତି ଥରେ ଭାରତ ଫେରୁଥିଲେ । ସାଙ୍ଗରେ ସେ ଚୋରି କରି ଆଣିଥିଲେ ଦୂତାବାସର ଶଙ୍ଖବାସନ ସବୁ । କଷ୍ଟମ୍‌ସ୍‌ରେ ଅବଶ୍ୟ ଧରା ପଡ଼ିଲେ । ଆଉ ମଜା କଥା ହେଉଛି, ସେ ଭଦ୍ରବ୍ୟକ୍ତିଜଣକ ଅନ୍ୟ କେହି ନ ଥିଲେ, ସେ ଥିଲେ ଆମର ସ୍ୱୟଂ ରାଷ୍ଟ୍ରଦୂତ ।'

ଅନ୍ୟ ବନ୍ଧୁମାନେ ଭାରତୀୟ ଚରିତ୍ରର ଅଧୋଗତି ସୂଚାଇ ଦେବାପାଇଁ ପ୍ରମାଣ ଯୋଗାଇଦେବାରେ ଲାଗିପଡ଼ିଲେ । × × ×

କ୍ୟାଣ୍ଟରବରୀ ଯେ ଗୋଟିଏ ଅତି ସୁନ୍ଦର ସହର, ରେଲ୍ ବା ବସ୍‌ରେ ସହରରେ ପହଞ୍ଚିଲେ ହିଁ ତାହା ବୁଝିହୁଏ । ରେଲ୍‌ୱେ ଷ୍ଟେସନ୍‌ଟି ବେଶ୍ ପୁରୁଣା ଓ ଅନେକାଂଶରେ ଭାରତୀୟ ଷ୍ଟେସନ୍ ପରି ଦିଶେ; କିନ୍ତୁ ଷ୍ଟେସନ୍‌ଠାରୁ ସହରକୁ ଚାଲି ଚାଲି ଆସିବା ପାଇଁ ନିର୍ମିତ ହୋଇଛି ପୋଲଟିଏ ଓ ସେହି ପୋଲ ତଳେ ଏକ ଚମତ୍କାର ବଗିଚା । ବଗିଚାରେ ପ୍ରକାଣ୍ଡ ପ୍ରକାଣ୍ଡ ଓକ୍, ଉଇଫି ଉଇଲୋ ଓ ବିଭିନ୍ନ ପ୍ରକାର ପାଇନ୍ ଗଛ । ସବୁଜ ଲନ୍‌ଟି

ବିସ୍ତୃତ ଓ ସୁରକ୍ଷିତ । କ୍ୟାଣ୍ଟରବରୀରେ ପ୍ରବେଶକାରୀଙ୍କୁ ପ୍ରଥମ ସ୍ୱାଗତ କରେ ସେଇ ବଗିଚାଟି । ବଗିଚାଟି ଅତିକ୍ରମ କଲେ ସହରର କେନ୍ଦ୍ରସ୍ଥଳ ବା City centre ।

ଇଂଲାଣ୍ଡର ସବୁ ସହରର କେନ୍ଦ୍ରସ୍ଥଳର ଚେହେରା ଏକାଭଳି । ତେଣୁ କ୍ୟାଣ୍ଟରବରୀର ସିଟି ସେଣ୍ଟର୍ ଲଣ୍ଡନ୍‌ର କୌଣସି ଏକ ମୁଖ୍ୟ ରାସ୍ତା ଭଳି ହିଁ ଦିଶେ । ଯେକୌଣସି ସହର ଭଳି କ୍ୟାଣ୍ଟରବରୀର ସବୁଠାରୁ ଜନାକୀର୍ଣ୍ଣ ଅଞ୍ଚଳ ଏଇ ସିଟି ସେଣ୍ଟର୍ । ସିଟି ସେଣ୍ଟର୍‌ର ଅଳ୍ପ ଦୂରରେ କ୍ୟାଣ୍ଟରବରୀର ପ୍ରସିଦ୍ଧ କ୍ୟାଥେଡ୍ରାଲ୍ । ଧୂସର ରଙ୍ଗର ଏଇ ବିଶାଳ କ୍ୟାଥେଡ୍ରାଲ୍‌ଟି ଉଚ୍ଚତାରେ ଇଂଲାଣ୍ଡର ଦ୍ୱିତୀୟ ବୃହତ୍ତମ; କିନ୍ତୁ ପ୍ରାଚୀନତା ସୁଖ୍ୟାତିରେ ଇଂଲାଣ୍ଡର କୌଣସି କ୍ୟାଥେଡ୍ରାଲ୍ ଏହାର ସମକକ୍ଷ ନୁହେଁ । ବର୍ଷର ସବୁ ସମୟରେ କ୍ୟାଥେଡ୍ରାଲ୍‌ରେ ଦର୍ଶକମାନଙ୍କ ସମାଗମ ଲାଗି ରହିଥାଏ । କେହି ଟେଲିଭିଜନ୍ ବା ଚଳଚ୍ଚିତ୍ର ପାଇଁ ଫଟୋ ଉଠାଉଥାନ୍ତି, କେହି କ୍ୟାଥେଡ୍ରାଲ୍‌ର ପ୍ରସିଦ୍ଧ କାଚ ଚିତ୍ର ବା ସେଣ୍ଟ୍‌ମାନଙ୍କ ମୂର୍ତ୍ତି ସବୁ ଲକ୍ଷ୍ୟ କରୁଥା'ନ୍ତି; ଆଉ କେହି କ୍ୟାଥେଡ୍ରାଲ୍ ସାମନା ରେଷ୍ଟୋରାଁରେ ବସି ଚା' ବା ମଦ୍ୟପାନ କରୁଥାନ୍ତି; ତେବେ କ୍ୟାଥେଡ୍ରାଲ୍ ଓ ତାହାର ସମ୍ମୁଖରେ ସବୁବେଳେ ଆନନ୍ଦ ଓ ଉତ୍ସବର ବାତାବରଣ । ଭାରତରେ ଯାତ୍ରୀମାନେ ଯେପରି ଗଭୀର ଧର୍ମ ଭାବରେ ଉଦ୍‌ବୁଦ୍ଧ ହୋଇ ମନ୍ଦିରକୁ ଆସନ୍ତି, ୟୁରୋପରେ ଯାତ୍ରୀମାନେ ପ୍ରାୟ ସେପରି ଆସନ୍ତି ନାହିଁ । ସେମାନଙ୍କ ପାଇଁ କ୍ୟାଥେଡ୍ରାଲ୍‌ର ଆକର୍ଷଣ, ତାହାର ଐତିହାସିକ ଓ କଳାଗତ ଗୁରୁତ୍ୱ । ୟୁରୋପ୍‌ରେ ଯେପରି କଳା ଓ ସଂସ୍କୃତି ଧର୍ମର ସ୍ଥାନ ଅଧିକାର କରିଛି ।

କ୍ୟାଥେଡ୍ରାଲ୍‌କୁ କେନ୍ଦ୍ର କରି ହିଁ ଗଢ଼ି ଉଠିଛି କ୍ୟାଣ୍ଟରବରୀ ସହର । ମଧ୍ୟଯୁଗରୁ କ୍ୟାଣ୍ଟରବରୀର ସୁଖ୍ୟାତି ଏଇ କ୍ୟାଥେଡ୍ରାଲ୍ ପାଇଁ । ସପ୍ତମ ଶତାବ୍ଦୀରେ ସେଣ୍ଟ୍ ଅଗଷ୍ଟାଇନ୍‌ଙ୍କଦ୍ୱାରା କ୍ୟାଣ୍ଟରବରୀ ସହରରୁହିଁ ଇଂଲାଣ୍ଡରେ ଖ୍ରୀଷ୍ଟଧର୍ମ ପ୍ରଚାର କରାଯାଇ ଥିଲା । ପୁଣି ଦ୍ୱାଦଶ ଶତାବ୍ଦୀରେ ସେଣ୍ଟ୍ ବେକେଟ୍ ଏଇ ସହରରେ ତତ୍କାଳୀନ ଶାସକଙ୍କଦ୍ୱାରା ଖ୍ରୀଷ୍ଟଧର୍ମ ପାଇଁ ନିହତ ହୋଇ ସହିଦତ୍ୱ ବରଣ କରିଥିଲେ । ବର୍ତ୍ତମାନର କ୍ୟାଥେଡ୍ରାଲ୍‌ଟି ଦ୍ୱାଦଶ ଶତାବ୍ଦୀର କିନ୍ତୁ ଉନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଏଥିରେ ବିଭିନ୍ନ ପରିବର୍ତ୍ତନ ଓ ସଂଯୋଜନ ହୋଇ ଆସିଛି । ଏହାର ପରିସୀମା ମଧ୍ୟରେ ପ୍ରାୟ ପଚାଶଜଣ ମୁଖ୍ୟ ଧର୍ମଗୁରୁଙ୍କ (arch-bishop) ସମାଧି ରହିଛି । କ୍ୟାଥେଡ୍ରାଲ୍‌ର କେତୋଟି କାଚ-ଚିତ୍ର ଆଠ ଶହ ବର୍ଷର ପୁରୁଣା ।

ରୋମାନ୍‌ମାନଙ୍କ ଶାସନ କାଳରେ କ୍ୟାଣ୍ଟରବରୀ ବା କ୍ୟାଣ୍ଡିଆକୋରମ୍‌ରେ ଅବସ୍ଥିତ ଥିଲା ସେ ସମୟର ସର୍ବ ବୃହତ୍ ଥିଏଟର ବା ପ୍ରେକ୍ଷାଗୃହ । ଭାଇକିଂମାନଙ୍କ ଆକ୍ରମଣରୁ ସହରଟିକୁ ରକ୍ଷା କରିବା ପାଇଁ ଜର୍ମାନମାନେ ଏହାର ଚତୁର୍ଦ୍ଦିଗରେ ନିର୍ମାଣ କରିଥିଲେ ଏକ ବିଶାଳ ପ୍ରସ୍ତର ପ୍ରାଚୀର ଏବଂ ଚାରିଦିଗରେ ଚାରୋଟି ପ୍ରବେଶ ଦ୍ୱାର ବା ଗେଟ୍ । ମଧ୍ୟଯୁଗର ଅନ୍ୟାନ୍ୟ ଅବଶିଷ୍ଟାଂଶ ମଧ୍ୟରେ ୱେଷ୍ଟଗେଟ୍, ନର୍ଥ ଗେଟ୍ ଓ ବିରାଟ ପ୍ରସ୍ତର

ପ୍ରାଚୀରର କେତେକାଂଶ ଦର୍ଶକମାନଙ୍କ ଆଖିରେ ପଡ଼େ । ସ୍ଥାନୀୟ ଯାଦୁଘରରେ ମଧ୍ୟଯୁଗୀୟ କ୍ୟାଣ୍ଟରବରୀର ସ୍ମାରକୀସ୍ୱରୂପ କେତେକ ମୁଦ୍ରା, ଭଗ୍ନମୂର୍ତ୍ତି, ମାଟିପାତ୍ର, ବୋତଲ ଓ ରୁପାକାମ ଦେଖିବାକୁ ମିଳେ । ୱେଷ୍ଟଗେଟ୍ ଆଧୁନିକ କ୍ୟାଣ୍ଟରବରୀର ଏକ ମୁଖ୍ୟ ଆକର୍ଷଣ । ଷ୍ଟୋ ନଦୀ ଏହାକୁ ପ୍ରାୟ ସ୍ପର୍ଶ କରି ବହି ଚାଲିଛି । କ୍ୟାଣ୍ଟରବରୀର ସବୁଠାରୁ ବୃହତ୍ତମ ଫୁଲ ବଗିଚାଟି ମଧ ଏହାର ନିକଟରେ । ଷ୍ଟୋ ନଦୀ କୂଳରେ ଷୋଡ଼ଶ ଶତାବ୍ଦୀରେ ତନ୍ତୀମାନଙ୍କ ପାଇଁ ନିର୍ମିତ କେତେକ ପ୍ରାଚୀନ ଗୃହ ବର୍ତ୍ତମାନ ସୁଦ୍ଧା ସୁରକ୍ଷିତ ଅଛି ।

ୱେଷ୍ଟଗେଟ୍‌ଠାରୁ ରାସ୍ତା ସିଧା ଲମ୍ବିଯାଇଛି କେଣ୍ଟ୍ ବିଶ୍ୱବିଦ୍ୟାଳୟକୁ । ଅପେକ୍ଷାକୃତ ଏକ ଉଚ୍ଚ ଭୂମି ଉପରେ ଅବସ୍ଥିତ ଏଇ ବିଶ୍ୱବିଦ୍ୟାଳୟ କ୍ୟାମ୍ପସରୁ ଚାହିଁଲେ କ୍ୟାଣ୍ଟରବରୀ ଦିଶେ ସ୍ୱପ୍ନର ଏକ ମାନଚିତ୍ର ପରି । ମଝିରେ ଉନ୍ନତ କ୍ୟାଥେଡ୍ରାଲ, ତା' ଚାରିକଡ଼େ ବର୍ଗାକାର କ୍ଷୁଦ୍ର ଘର ସବୁ – ନାଲିରଙ୍ଗର ଛାତ ଓ ଚିମ୍‌ନୀ । ବିଶ୍ୱବିଦ୍ୟାଳୟରେ ଚାରୋଟି କଲେଜ – ରାଦାର୍‌ଫୋର୍ଡ଼, ଡାର୍‌ଉଇନ୍, ଏଲିୟଟ୍ ଓ କେନ୍ସ୍ । ତା' ବ୍ୟତୀତ ରେଜିଷ୍ଟ୍ରୀ ବା ଅଫିସ୍ ଗୃହ, ଅଡ଼ିଟୋରିୟମ୍, ପାଠାଗାର, ସିନେଟ୍ ହଲ୍ ଓ ବିଭିନ୍ନ ଗବେଷଣାଗାର । ପ୍ରତ୍ୟେକ କଲେଜର ଯୋଜନା ଅନ୍ୟଠାରୁ ଭିନ୍ନ । କ୍ୟାମ୍ପସ୍‌ରେ ଅନେକ ଫୁଲଗଛ ଓ କେନ୍ସ୍ କଲେଜ ସମ୍ମୁଖରେ ଗୋଟିଏ କ୍ଷୁଦ୍ର ହ୍ରଦ । ସହରରୁ ବିଶ୍ୱବିଦ୍ୟାଳୟକୁ ଆସିବା ପାଇଁ ପକ୍‌କା ପିଚୁରାସ୍ତା ତ ଅଛି; ତା' ସହିତ ଅଛି ସଂକୀର୍ଣ୍ଣ ଚଲାରାସ୍ତା ସବୁ । ଏଇ ଚଲାରାସ୍ତାସବୁ ବିଶ୍ୱବିଦ୍ୟାଳୟର ଚାରିକଡ଼େ ସୃଷ୍ଟି କରାଯାଇଥିବା ଜଙ୍ଗଲ ମଧ ଦେଇ ବିଶ୍ୱବିଦ୍ୟାଳୟକୁ ପଡ଼ିଛି । କଲେଜ ସମୟରେ ଅର୍ଥାତ୍ ବର୍ଷର ନଅମାସ ଏଇ ଚଲାରାସ୍ତାରେ ବହୁ ଅଧାପକ ଓ ଛାତ୍ରଛାତ୍ରୀ ହାତରେ ବହି ବ୍ୟାଗ୍ ଝୁଲାଇ ଯାତାୟାତ କରୁଥିବାର ଦୃଶ୍ୟ ଦେଖିବାକୁ ମିଳେ । × × ×

ଲଣ୍ଡନ୍‌ର ଭିକ୍ଟୋରିଆ ଷ୍ଟେସନ୍‌ରୁ ରେଳଯୋଗେ କ୍ୟାଣ୍ଟରବରୀରେ ପହଞ୍ଚିଲି ସେପ୍ଟେମ୍ବର ୨୬ ତାରିଖ ସକାଳେ । ପାଗ ମେଘୁଆ ଥିଲା, ମଝିରେ ମଝିରେ ଈଷତ୍ ବର୍ଷା । ଏହାହିଁ ସ୍ୱାଭାବିକ ଇଂରେଜ ପାଗ ।

କ୍ୟାଣ୍ଟରବରୀ ଷ୍ଟେସନ୍‌ରୁ ଟାଉନ୍ ବସ୍‌ରେ ବିଶ୍ୱବିଦ୍ୟାଳୟ କ୍ୟାମ୍ପସ୍ ପାଞ୍ଚ ମିନିଟ୍‌ର ରାସ୍ତା । ସାଙ୍ଗରେ ଆଣିଥିବା ପ୍ରକାଣ୍ଡ ସୁଟ୍‌କେଶ୍‌ଟି ନୂତନ ସହରରେ ପହଞ୍ଚିବାର ଆନନ୍ଦ ଓ ଉନ୍ମାଦନାକୁ କେତେକାଂଶରେ ହ୍ରାସ କରିଦେଇଥାଏ । ବହୁ କଷ୍ଟରେ ସୁଟ୍‌କେଶ୍‌ଟି ବୋହି ବୋହି ବିଶ୍ୱବିଦ୍ୟାଳୟ ବସ୍‌ଷ୍ଟାଣ୍ଡରୁ ରାଦାର୍‌ଫୋର୍ଡ୍ କଲେଜ ଅଭିମୁଖେ ଚାଲିଥାଏ । ସୁବିସ୍ତୃତ ସବୁଜ ପ୍ରାନ୍ତର ମଧରେ ପରିଚ୍ଛନ୍ନ ସୁପରିକଳ୍ପିତ ଧୂସର ରଙ୍ଗର କେତୋଟି ପ୍ରାସାଦ କେଣ୍ଟ୍ ବିଶ୍ୱବିଦ୍ୟାଳୟ ।

'ଆପଣଙ୍କୁ ସାହାଯ୍ୟ କରିପାରେ କି ?' ମୋ ପଛରେ ଜଣେ ଇଂରେଜ ଭଦ୍ରବ୍ୟକ୍ତି । ମୋଠାରୁ ଯଥେଷ୍ଟ ଡେଙ୍ଗା, ବଳିଷ୍ଠ । ମୋର ପ୍ରକାଣ୍ଡ ସୁଟ୍‌କେଶ୍‌ଟି ମୋ ହାତରୁ ଛଡ଼ାଇ

ନେଇ ସେ ଅବଲୀଳାକ୍ରମେ ମୋ ସାଙ୍ଗେ ଚାଲିବାକୁ ଲାଗିଲେ । ମୁଁ ଧନ୍ୟବାଦ ଜଣାଇଲି । କହିଲି, 'ମୁଁ ରାଦାାକ୍‌ଫୋର୍ଡ୍ କଲେଜ ଯିବି, ଇଂରାଜୀ ସାହିତ୍ୟରେ ଗବେଷଣା କରିବାକୁ ଭାରତରୁ ଆସିଛି ।'

ମୋ କଥାରେ ସେ ସାମାନ୍ୟ ସଙ୍କୁଚିତ ହେଲେ । କହିଲେ, 'ମୁଁ ଜଣେ ଅଣ୍ଡର୍ ଗ୍ରାଜୁଏଟ୍ ।'

'ସୁଟ୍‌କେଶ୍‌ଟା ଖୁବ୍ ଓଜନିଆ ?' ମୁଁ ପଚାରିଲି ।

ସେ ହସିଲେ । କହିଲେ, 'ଯାହା ହେଉ, ହାଲୁକା ନିଶ୍ଚୟ ନୁହେଁ ।' ଇଂଲାଣ୍ଡରେ ସାଢ଼େ ତିନି ବର୍ଷ ରହିବା ଭିତରେ ଇଂରେଜମାନଙ୍କ ଭଦ୍ରତା ଓ ଶାଳୀନତାର ଏପରି ବହୁ ପ୍ରମାଣ ପାଇଥିଲି ।



# ଦୋକାନ ଓ ଇଂରେଜ ଜାତି

କ୍ୟାଣ୍ଟର୍‌ବରୀରେ ପହଞ୍ଚିବା ପରେ ଏଇ ସହରର ଦୋକାନଗୁଡ଼ିକ ମୋ ପାଇଁ ଥିଲେ ଅନ୍ୟତମ ମୁଖ୍ୟ ଆକର୍ଷଣ । ଏଇ ଦୋକାନଗୁଡ଼ିକର ସାଜସଜ୍ଜା, କ୍ରୟବିକ୍ରୟ ପଦ୍ଧତି, ଗ୍ରାହକମାନଙ୍କ ପାଇଁ ରଖାଯାଇଥିବା ଜିନିଷସବୁ ଯେମିତି ସହଜରେ ଘୋଷଣା କରୁଥିଲେ ଯେ ଇଂରେଜ ଜାତିର ରୁଚି, ଚରିତ୍ର ଓ ଆବଶ୍ୟକତା ଆମଠାରୁ ଅନେକାଂଶରେ ଭିନ୍ନ । ପୁଣି ଇଂଲାଣ୍ଡର ଅନ୍ୟାନ୍ୟ ସହରର ଦୋକାନଗୁଡ଼ିକ ଓ ତହିଁରେ ପ୍ରଚଳିତ ବ୍ୟବସ୍ଥା ମଧ୍ୟ କ୍ୟାଣ୍ଟର୍‌ବରୀ ଅନୁରୂପ । ତେଣୁ କ୍ୟାଣ୍ଟର୍‌ବରୀର ଦୋକାନ ସମ୍ପର୍କରେ ଏଠାରେ ଯାହା ଲେଖୁଛି, ମୋଟାମୋଟି ତାହା ସମଗ୍ର ଇଂଲାଣ୍ଡ ପ୍ରତି ପ୍ରଯୁଜ୍ୟ । କ୍ୟାଣ୍ଟର୍‌ବରୀର କେନ୍ଦ୍ରସ୍ଥଳ ଅର୍ଥାତ୍ city centreରେ ପ୍ରଧାନ ସୁପର ମାର୍କେଟ୍‌ସବୁ ସେମାନଙ୍କ ଆଭିଜାତ୍ୟ ଓ ଔଦ୍ଧତ୍ୟ ଦେଖାଇ ଠିଆ ହୋଇଥା'ନ୍ତି – Riceman, Marks and Spencer, Debnam, Woolworth.

ଦୋକାନମାନଙ୍କରେ ନଅଟାଠାରୁ ପାଞ୍ଚଟା ଯାଏଁ ନିୟମିତ ଜନ ସମାଗମ ଲାଗିଥାଏ । ଦୋକାନର କାଚ ଦ୍ୱାର ଖୋଲି ଲୋକେ ଭିତରକୁ ପଶୁଥା'ନ୍ତି, ପୁଣି ବାହାରି ଆସୁଥା'ନ୍ତି । ଆପଣ ହୁଏତ ଦୁଆର ଖୋଲି ଭିତରକୁ ପଶିଲାବେଳେ ଆପଣଙ୍କ ପଛେ ପଛେ ଆସୁଥିବା ଭଦ୍ରବ୍ୟକ୍ତି ବା ଭଦ୍ରମହିଳାଙ୍କ ପାଇଁ ଆପଣଙ୍କୁ ଦୁଆର କିଛି ସମୟ ଖୋଲା ରଖିବାକୁ ପଡ଼େ । ଦୋକାନମାନଙ୍କରେ ଦୁଆର ବନ୍ଦ କଲାବେଳେ ପଛରେ କିଏ ଅଛି କି ନାହିଁ ଦୃଷ୍ଟି ନ ଦେଲେ ପଛରେ ଆସୁଥିବା ଲୋକଟି ଦୁଆରରେ ଆଘାତ ପାଇବାର ସମ୍ଭାବନା ।

ସୁପର୍ ମାର୍କେଟ୍‌ଗୁଡ଼ିକ ବର୍ଷର ସବୁ ସମୟରେ ସେମାନଙ୍କ ବିପରୀତ ସମ୍ଭାରରେ ଉଜ୍ଜ୍ୱଳ ଓ ଆକର୍ଷଣୀୟ । ପୋଷାକ ପରିଚ୍ଛଦ, ସ୍ତ୍ରୀମାନଙ୍କ ପ୍ରସାଧାନ ସାମଗ୍ରୀ, ରନ୍ଧନ ଉପକରଣ, ବିଦ୍ୟୁତ୍ ସରଞ୍ଜାମ ଓ ଟେଲିଭିଜନ୍‌ଠାରୁ ଆରମ୍ଭ କରି ପିଲାଙ୍କ ଖେଳନା, ମିଠେଇ, ଫଳ ଓ ଫୁଲର ମଞ୍ଜି, ନୂତନ ବର୍ଷ, ଖ୍ରୀଷ୍ଟମାଷ୍ ଓ ଜନ୍ମଦିନ ପାଇଁ ଗ୍ରିଟିଂ କାର୍ଡ୍‌ଯାଏ ସବୁ ଏଇ ସୁପର୍ ମାର୍କେଟ୍‌ମାନଙ୍କରେ ମିଳେ । ଅବଶ୍ୟ ଅପେକ୍ଷାକୃତ କ୍ଷୁଦ୍ର ଦୋକାନମାନେ ମଧ ସୁପର୍ ମାର୍କେଟ୍‌ମାନଙ୍କ ପାଖେ ପାଖେ ଠିଆ ହୋଇ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଜାତିର ଜିନିଷ ବିକ୍ରୟ କରୁଥା'ନ୍ତି – ପରିବା ଓ ଫଳ, ମାଛ, ମାଂସ, ଔଷଧ ଇତ୍ୟାଦି । ବିକ୍ରେତାମାନେ ଦୋକାନ ଦୋକାନ ବୁଲି ଜିନିଷପତ୍ରର ଦାମ୍ ଦେଖନ୍ତି । ସାପ୍ତାହିକ ହାଟକୁ ବାଦ୍ ଦେଲେ ଦୋକାନମାନଙ୍କରେ ମୂଲଚାଲ ପ୍ରାୟ ନ ଥାଏ । ଜିନିଷ ଉପରେ ଲେଖା ହୋଇଥାଏ ଦାମ୍ । କେହି କେହି କାଗଜରେ ବିଭିନ୍ନ ଦୋକାନରେ ଜିନିଷର ଦାମ୍ ଟିପି ନେଉଥିବା ମଧ କେବେ କେବେ ଆଖିରେ ପଡ଼େ ।

ଭାରତରେ ଆମେ କୌଣସି ଦୋକାନକୁ ଗଲେ ଦୋକାନୀକୁ ଆମର ଆବଶ୍ୟକତା ସମ୍ପର୍କରେ କହୁ । ସେ ଆମକୁ ଜିନିଷଟି ଦିଏ କିମ୍ବା ଆମେ ବାଛିବା ପାଇଁ ଆମ ଆଗରେ କେତେଗୁଡ଼ିଏ ଜିନିଷ ରଖିଦିଏ । ଇଂଲାଣ୍ଡ କିମ୍ବା ୟୁରୋପ୍‌ରେ କିନ୍ତୁ ସାଧାରଣତଃ ଗ୍ରାହକ ନିଜେ ଦୋକାନ ଭିତରକୁ ଯାଇ ନିଜ ଆବଶ୍ୟକତା ଅନୁଯାୟୀ ସଉଦା 'ଟ୍ରଲି' ବା 'ଟ୍ରେ'ରେ ରଖି ସେଲ୍‌ସ୍ ଗାର୍ଲ୍ ନିକଟକୁ ଆସେ । ସେଲ୍‌ସ୍ ଗାର୍ଲ୍ କ୍ୟାଲ୍‌କୁଲେଟିଂ ମେସିନ୍‌ରେ ଜିନିଷଗୁଡ଼ିକର ଦାମ୍ ମିଶାଏ ଓ ଗ୍ରାହକଙ୍କୁ ରସିଦ ଓ ଜିନିଷଗୁଡ଼ିକ ଦିଏ । ସାଧାରଣତଃ ଟ୍ରଲି ଓ ଟ୍ରେଗୁଡ଼ିକ ଦୋକାନର ପ୍ରବେଶ ପଥରେ ରଖାଯାଇଥାଏ ଓ ଗ୍ରାହକମାନେ ସେଲ୍‌ସ୍ ଗାର୍ଲ୍‌କୁ ଜିନିଷର ଦାମ୍ ଦେବା ପରେ ନିଜ ବ୍ୟାଗ୍‌ରେ ଜିନିଷ ରଖି ବାହାରକୁ ଆସନ୍ତି । ଅବଶ୍ୟ ଛୋଟ ଛୋଟ ଦୋକାନ ବିଶେଷତଃ ପରିବା, ମାଛ ଓ ମାଂସ ଦୋକାନମାନଙ୍କରେ ଏବଂ ସାପ୍ତାହିକ ହାଟସବୁରେ ଏପରି ରୀତିରେ କିଣାବିକା ହୁଏ ନାହିଁ । ଦୋକାନୀ ଗ୍ରାହକର ଆବଶ୍ୟକତା ଅନୁସାରେ ଜିନିଷ ଓଜନ କରି ବିକ୍ରୟ କରେ । ବଡ଼ ବଡ଼ ଦୋକାନରୁ ପରିବା ବା ତେଇରାତି ଜିନିଷ କିଣିଲେ ନିର୍ଦ୍ଦିଷ୍ଟ ଓଜନର ପ୍ୟାକେଟ୍‌ସବୁ କିଣିବାକୁ ହୁଏ ।

ଦୋକାନ ଭିତରେ ବୁଲି ବୁଲି ନିଜ ଆବଶ୍ୟକତା ଅନୁସାରେ ଜିନିଷ କିଣିବା ଏକ ଚମତ୍କାର ବ୍ୟବସ୍ଥା, କିନ୍ତୁ ଏଭଳି ବ୍ୟବସ୍ଥାର କାର୍ଯ୍ୟକାରିତା ପାଇଁ ଗ୍ରାହକମାନଙ୍କଠାରୁ ଯଥେଷ୍ଟ ସାଧୁତା ଆଶା କରାଯାଏ । ଭାରତର ଆର୍ଥନୀତିକ ଓ ନୈତିକମାନ ଯାହା, ସେଥିରେ ଏଭଳି କ୍ରୟବିକ୍ରୟ ବ୍ୟବସ୍ଥା ପ୍ରଚଳନ କରିବା ଅବଶ୍ୟ କଳ୍ପନାତୀତ; କିନ୍ତୁ ଇଂଲାଣ୍ଡରେ ସୁଦ୍ଧା ଏହି ବ୍ୟବସ୍ଥା ଫଳରେ ସୁପର୍ ମାର୍କେଟ୍‌ମାନଙ୍କରୁ ଲକ୍ଷ ଲକ୍ଷ ଟଙ୍କାର ଜିନିଷ ହରଣଚାଳ ହୋଇଯାଏ । ଗୋଟିଏ ବର୍ଷରେ ହାରାହାରି ସାଢ଼େ ଛ' ନିୟୁତ ପାଉଣ୍ଡ ବା ଶହେଚାରି ହଜାର ନିୟୁତ ଟଙ୍କାର ଜିନିଷ ଚୋରି ହୁଏ ବୋଲି ଥରେ ସମ୍ବାଦ ପ୍ରକାଶ ପାଇଥିଲା ।

ଖ୍ରୀଷ୍ଟମାଷ୍ ପରି ସମୟରେ ଦୋକାନମାନଙ୍କରେ ଯେମିତି ଭିଡ଼ ହୁଏ ସେଥିରେ ଚୋରିହେବା ପ୍ରାୟ ସ୍ୱାଭାବିକ ମନେହୁଏ । ସେଥିପାଇଁ ସାଧା ପୋଷାକରେ ବହୁ ପୁଲିସ୍ ଓ ଗୁପ୍ତଚର ମଧ୍ୟ ଦୋକାନମାନଙ୍କରେ ନିଯୁକ୍ତ ହୋଇଥା'ନ୍ତି । କେତେକ ଗୁପ୍ତରେ ଉପର ମହଲାରେ ଠିଆ ହୋଇ ବାଇନାକ୍ୟୁଲାର୍ ସାହାଯ୍ୟରେ ତଳମହଲାର ଯାତ୍ରୀମାନଙ୍କ ଗତିବିଧି ଲକ୍ଷ୍ୟ କରୁଥା'ନ୍ତି । ଚୋରି ପାଇଁ ଇଂଲାଣ୍ଡରେ ଶାସ୍ତି ଖୁବ୍ ବେଶି । ଥରେ ଜଣେ ଭାରତୀୟ କ୍ରିକେଟ୍ ଖେଳାଳି ଇଂଲାଣ୍ଡର କୌଣସି ଦୋକାନରୁ ହଳେ ହାତ ମୋଜା ଚୋରି କରିଥିବା ଘଟଣାକୁ ସମ୍ବାଦପତ୍ର ଓ ଟେଲିଭିଜନ୍‌ରେ ପ୍ରଚାର କରାଯାଇଥିଲା । ଏବେ ସମ୍ବାଦ ପ୍ରକାଶ ପାଇଛି ଯେ ଜଣେ ଭାରତୀୟ ଟେମ୍‌ସ୍ ନଦୀକୁ ଡେଇଁ ଆତ୍ମହତ୍ୟା କରିଛନ୍ତି ଓ ତାଙ୍କ ବିରୋଧରେ ପୋଲିସ୍‌ର ଚୋରି ଅଭିଯୋଗ ଆତ୍ମହତ୍ୟାର କାରଣ ।

ସହରର ଦୋକାନମାନଙ୍କରେ ବୁଲିଆସିଲେ ଇଂରେଜ ଲୋକଙ୍କ ରୁଚି, ଆବଶ୍ୟକତା ଓ ସଂସ୍କୃତି ସମ୍ପର୍କରେ ଅନେକ କିଛି ଜାଣି ହୁଏ । କ୍ୟାଣ୍ଟର୍‌ବରୀ ସହରଟି ବିଶେଷ ବଡ଼ ନୁହେଁ; କିନ୍ତୁ ସେଥିରେ 'ଆଣ୍ଟିକ୍' ବା ପୁରୁଣା ଜିନିଷ ସବୁ ବିକ୍ରୟ କରୁଥିବା ଦୋକାନର ସଂଖ୍ୟା ଛଅ କିମ୍ବା ସାତୋଟି । 'ଆଣ୍ଟିକ୍' ଦୋକାନ ଓଡ଼ିଶାରେ ତ ଆଦୌ ନାହିଁ; ସାରା ଭାରତରେ ମଧ୍ୟ ଏହାର ସଂଖ୍ୟା ନିହାତି ନଗଣ୍ୟ । ପୁରୁଣା ଚେୟାର୍, ଖଟଠାରୁ ଆରମ୍ଭ କରି ବହି, କପ୍, ପ୍ଲେଟ୍, ବିଭିନ୍ନ ଶଙ୍ଖବାସନ, ଫଟୋ ଓ ବିଭିନ୍ନ ଖେଳନା ସାଧାରଣତଃ ଏହି ଦୋକାନମାନଙ୍କରେ ମିଳେ । ଜିନିଷଟି ଯେତେ ପୁରୁଣା, ତାହାର ମୂଲ୍ୟ ସେତେ ଅଧିକ । ଏଭଳି ଦୋକାନମାନେ ଅନେକ ସମୟରେ ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଜିନିଷ ସଂଗ୍ରହ କରିବାରେ ବିଶେଷ ଯତ୍ନ ନିଅନ୍ତି, ଅର୍ଥାତ୍ ଏଥିରେ Specialise କରିଥାନ୍ତି । କ୍ୟାଣ୍ଟର୍‌ବରୀର ଗୋଟିଏ ଦୋକାନ ସାମ୍ନାରେ ଲେଖାଥିଲା – Victorian Dolls Collected Here (ଏଠାରେ ଭିକ୍ଟୋରିଆ ଅମଳର କଣ୍ଢେଇ ସବୁ ସଂଗୃହୀତ ହୁଏ) । ଆଉ ଗୋଟିଏ ଦୋକାନ ପିତଳର ମୁଦ୍ରା, ମୁଦି ଓ ମୂର୍ତ୍ତି ସବୁ ବହୁସଂଖ୍ୟାରେ ରଖିଥିଲେ । ପରମ୍ପରା ପ୍ରତି ଇଂରେଜ ଜାତିର ପ୍ରଚଣ୍ଡ ମୋହ ପୁରୁଣା ଜିନିଷ ପ୍ରତି ସେମାନଙ୍କର ଆକର୍ଷଣର କାରଣ । ଘରେ ପୁରୁଣା ଜିନିଷ ରଖିବା ପାରିବାରିକ ଆଭିଜାତ୍ୟର ପ୍ରତୀକ । ଅନେକ ସମୟରେ ପୁରୁଣା ଜିନିଷର ମୂଲ୍ୟ ଯେ କେତେ ବେଶି ହୋଇପାରେ, ତାହା ଭାରତୀୟମାନେ କଳ୍ପନା କରିବା ମଧ୍ୟ କଠିନ । ଐତିହାସିକ ଗୁରୁତ୍ୱ ଥିବା ଜିନିଷଗୁଡ଼ିକୁ ସାଧାରଣତଃ ସଂଗ୍ରହାଳୟମାନେ କିଣିନିଅନ୍ତି । ଇଂଲାଣ୍ଡର ଆର୍ଥିକ ଅସ୍ୱଚ୍ଛଳତା ହେତୁ ଆଜିକାଲି ବହୁ ପ୍ରାଚୀନ ପାଣ୍ଡୁଲିପି, ଚିତ୍ର ପ୍ରଭୃତି ଆମେରିକା ଓ ଅନ୍ୟାନ୍ୟ ଧନୀ ରାଷ୍ଟ୍ରର ସଂଗ୍ରହାଳୟ ବା ବ୍ୟବସାୟୀମାନେ (art dealer) କିଣି ନେଉଛନ୍ତି । ପାଣ୍ଡୁଲିପି ଓ ଚିତ୍ର ପ୍ରଭୃତିର କ୍ରୟ ବିକ୍ରୟ ଏକ ଖୁବ୍ ଲାଭଜନକ ବ୍ୟବସାୟ ଏବଂ ଏହି ବ୍ୟବସାୟୀମାନଙ୍କୁ antique dealer ବା art dealer କୁହାଯାଏ । ପୁରୁଣା ଜିନିଷର ଉଚ୍ଚ ମୂଲ୍ୟ ହେତୁ ସୁନା ରୁପା ଭଳି ଏହା ଚୋରି ହୋଇଯିବାର ସମ୍ଭାବନା ବେଶ୍ ଅଧିକ । ଏଭଳି ଜିନିଷର ମାଲିକମାନେ ଏଗୁଡ଼ିକୁ

ସାଧାରଣତଃ 'ଇନ୍‌ସିଉର୍‌ଡ୍' (Insured) କରିଥା'ନ୍ତି । ପୁରୁଣା ଜିନିଷ ବା antiqueର ଦାମ୍ କେତେ ହୋଇପାରେ, ସେ ସମ୍ପର୍କରେ କେତୋଟି ଉଦାହରଣ ଦେଉଛି ।

ଥରେ ଗୋଟିଏ ପିଲା ତା' ଘର ପାଖେ ନଈ ପାଣିରେ ଖେଳୁ ଖେଳୁ ପଙ୍କ ତଳୁ ପୁରୁଣା କଳଙ୍କିଲଗା ଖଣ୍ଡାଟିଏ ପାଇଲା । ପରୀକ୍ଷାରୁ ଜଣାଗଲା ଖଣ୍ଡାଟି ଦ୍ୱାଦଶ ଶତାବ୍ଦୀର । ସଙ୍ଗେ ସଙ୍ଗେ ଖଣ୍ଡାଟିକୁ ଗୋଟିଏ ସ୍ଥାନୀୟ ସଂଗ୍ରହାଳୟ ଦଶହଜାର ପାଉଣ୍ଡ (ଏକ ପାଉଣ୍ଡ ୧୬ ଟଙ୍କା ସଙ୍ଗେ ସମାନ) ମୂଲ୍ୟରେ କିଣିନେଲେ ।

ଫ୍ରାନ୍ସ୍‌ର ରାଜା ଚତୁର୍ଦ୍ଦଶ ଲୁଇ ବ୍ୟବହାର କରିଥିବା ଗୋଟିଏ ଟେବୁଲ୍‌କୁ ତା'ର ମାଲିକ ବିକ୍ରି କରି ଦେବେ ବୋଲି ସ୍ଥିର କରି ନିଲାମ ଡାକିଲେ । ସର୍ବୋଚ୍ଚ ଡାକରା ହେଲା ଦୁଇଶହ ପଚାଶ ହଜାର ପାଉଣ୍ଡ; କିନ୍ତୁ ଟେବୁଲ୍‌ର ମାଲିକ ଅଧିକ ମୂଲ୍ୟ ଆଶା କରୁଥିବାରୁ ଟେବୁଲ୍‌ଟିକୁ ବିକ୍ରି କଲେ ନାହିଁ । ଇଂଲାଣ୍ଡର ପୂର୍ବତନ ପ୍ରଧାନମନ୍ତ୍ରୀ ଲର୍ଡ୍ ଚର୍ଚ୍ଚିଲ୍‌ଙ୍କ ସ୍ତ୍ରୀ ନିଜର ଆର୍ଥିକ ଅସ୍ୱଚ୍ଛଳତା ହେତୁ ସ୍ୱାମୀଙ୍କ ଦ୍ୱାରା ଅଙ୍କିତ କେତୋଟି ଚିତ୍ର ବିକ୍ରି କରିଦେଲେ । ସେଥିରୁ ଗୋଟିଏ ଚିତ୍ରର ଦାମ୍ ହେଲା ଛୟାଳିଶ ହଜାର ପାଉଣ୍ଡ । ଥରେ ନେପୋଲିଅନ୍‌ଙ୍କ ଗୋଟିଏ ଖଣ୍ଡା ପାଇଁ ଚାଳିଶ ହଜାର ପାଉଣ୍ଡରେ ଓ ଜ୍ୟାକେଟ୍ ତେଇଶି ହଜାର ପାଉଣ୍ଡରେ ନିଲାମ ହୋଇଥିଲା ।

ପୁରୁଣା ଜିନିଷ ପ୍ରତି ଆଦର ଇଂରେଜ ଚରିତ୍ରର ଗୋଟିଏ ବିଶିଷ୍ଟ ଦିଗ । କେବଳ ଯେ ପୁରୁଣା ଜିନିଷଗୁଡ଼ିକୁ ଆଦର ଓ ଯତ୍ନରେ ସଂରକ୍ଷଣ କରାଯାଏ, ତାହା ନୁହେଁ, ଆଧୁନିକତା ସହିତ ପ୍ରାଚୀନତାର ସମନ୍ୱୟ କରିବାପାଇଁ ଇଂରେଜ ଜାତି ଅହରହ ସଚେତନ । ସୁପର୍ ମାର୍କେଟ୍‌ମାନଙ୍କରେ ବିକ୍ରି ହେଉଥିବା 'ହିଟର୍' ସବୁ ଦେଖିଲେ କଥାଟି ବୁଝିହୁଏ । ବାସଗୃହକୁ ଗରମ ରଖିବା ଇଂଲାଣ୍ଡରେ ଏକ ନ୍ୟୁନତମ ଆବଶ୍ୟକତା ଏବଂ 'ସେଣ୍ଟ୍ରାଲ୍ ହିଟିଂ' ବ୍ୟବସ୍ଥା ନ ଥିଲେ ଅର୍ଥାତ୍ ବାସଗୃହକୁ ସଂଲଗ୍ନ ପାଇପ୍‌ଦ୍ୱାରା ଗରମ ବାଷ୍ପ ବା ଗରମ ଜଳଦ୍ୱାରା ଉଷ୍ମ ରଖିବାର ବ୍ୟବସ୍ଥା ନ ଥିଲେ, ବିଦ୍ୟୁତ୍ ହିଟର୍ ବ୍ୟବହାର କରିବାକୁ ପଡ଼େ । ଅନେକ ହିଟର୍ ଏଭଳି ପ୍ରସ୍ତୁତ ହୋଇଛି ଯେ ଏହା ଚାଲୁ (on) ଥିଲାବେଳେ ମେଞ୍ଚାଏ ଜଳନ୍ତା କାଠ ବା କୋଇଲା ପରି ଦିଶେ । ବିଦ୍ୟୁତ୍‌ର ବ୍ୟବହାର ପୂର୍ବରୁ ଇଂଲାଣ୍ଡରେ କୋଇଲା ବା କାଠ ଜାଳି ବାସଗୃହକୁ ଗରମ ରଖା ଯାଉଥିଲା । ବିଦ୍ୟୁତ୍‌ର ପ୍ରଚଳନ ପରେ ସୁଦ୍ଧା ସେହି ପ୍ରାଚୀନ ବ୍ୟବସ୍ଥାର ସ୍ମୃତିକୁ 'ହିଟର୍'ମାନଙ୍କ ଗଠନ ପ୍ରଣାଳୀରେ ଜୀବନ୍ତ ରଖାଯାଇଛି ।

କେଉଁ ଦେଶ କେତେ ସଭ୍ୟ, ଏହାର ମାନ ନିର୍ଦ୍ଧାରଣ କରିବାକୁ ଚେଷ୍ଟାକରି ଭାରତର ବିଶିଷ୍ଟ ଲେଖକ ନୀରୋଦଚନ୍ଦ୍ର ଚୌଧୁରୀ ଗୋଟିଏ ବହିରେ ଲେଖିଛନ୍ତି – ଯେଉଁ ଦେଶରେ 'ଆଣ୍ଟିକ୍ ସପ୍'ର ସଂଖ୍ୟା ଯେତେ ବେଶି, ସେ ଦେଶ ସେତେ ସଭ୍ୟ ବୋଲି ବୁଝାଯାଏ । ଶ୍ରୀ ଚୌଧୁରୀଙ୍କ ଉକ୍ତିରେ ଅନେକ ସତ୍ୟତା ଅଛି ବୋଲି ମୋର ମନେହୁଏ; କିନ୍ତୁ ମଜାର କଥା ହେଉଛି, ପୁରୁଣା ଜିନିଷ ପ୍ରତି ଏତେ ଆକର୍ଷଣ ପ୍ରକାଶ କରୁଥିବା ଇଂରେଜ ଲୋକଟି ତା' ପରିବାରର ବୁଢ଼ା ବୁଢ଼ୀମାନଙ୍କ ସମ୍ପର୍କରେ ସମ୍ପୂର୍ଣ୍ଣ ଅନାସକ୍ତ ରହିବାର ଦୃଷ୍ଟାନ୍ତ ବିରଳ

ନୁହେଁ । ସେଥିପାଇଁ ମୋର ଜଣେ ଅଣଇଂରେଜ ବନ୍ଧୁ ଇଂରେଜମାନଙ୍କ 'ଆଣ୍ଟିକ୍ ପ୍ରୀତି'କୁ ଥଟ୍ଟା କରି ଅନେକ ସମୟରେ କହୁଥିଲେ, 'ଇଂରେଜମାନେ ବାପା ମାଆ ବୁଢ଼ା ହୋଇଗଲେ ସେମାନଙ୍କୁ ଘରୁ ବାହାର କରିଦେବେ; କିନ୍ତୁ ବହିଟିଏ ପୁରୁଣା ହେଲେ ତାକୁ ଅଧିକ ଯତ୍ନରେ ସାଇତି ରଖିବେ ।'

କଣ୍ଢେଇ ଓ ଘର ସଜାଇବା ଉପକରଣ ଇଂଲାଣ୍ଡର ଦୋକାନମାନଙ୍କର ଏକ ମୁଖ୍ୟ ଆକର୍ଷଣ । ସବୁ ସୁପର୍‌ମାର୍କେଟ୍‌ରେ ତ କଣ୍ଢେଇ ଓ ଘର ସଜାଇବା ଉପକରଣ ମିଳେ, ତା'ଛଡ଼ା ବହି ଦୋକାନ ଏପରିକି ପୋଷ୍ଟ ଅଫିସ୍‌ମାନଙ୍କରେ ସୁଦ୍ଧା କଣ୍ଢେଇ ବିକ୍ରି ହୁଏ । କେବଳ କଣ୍ଢେଇ ବିକ୍ରି କରିବା ପାଇଁ କ୍ୟାଣ୍ଟରବରୀରେ ପାଞ୍ଚ ଛଅଟି ଦୋକାନ ଅଛି ଓ ଉଇକ୍ ଏଣ୍ଡରେ ଏଭଳି ଦୋକାନମାନଙ୍କରେ ପିଲାମାନେ ବେଶ୍ ଗହଳି କରନ୍ତି । ଘର ସଜାଇବାରେ ଇଂରେଜମାନଙ୍କର ଝୁଙ୍କ୍ ଖୁବ୍ ଅଧିକ ଓ ସେଥିପାଇଁ ମଧ ଅନେକ କଣ୍ଢେଇର ଆବଶ୍ୟକ ପଡ଼େ । ସାଧାରଣତଃ ଇଂରେଜ ଘରର କାଚ ଝରକା ଭିତର ପଟେ କୌଣସି ନା କୌଣସି କଣ୍ଢେଇ ଆଖିରେ ପଡ଼େ – କାଚର ମାଛ, କୁକୁର, ବିଲେଇ ବା ପେଚା । ଛୋଟ ଛୋଟ ପିଲାମାନେ ତୂଳାରେ ତିଆରି ଭାଲୁ, କୁକୁର ପ୍ରଭୃତି କଣ୍ଢେଇ ବହୁ ସଂଖ୍ୟାରେ କିଣିବାର ଦେଖାଯାଏ । ଟେଲିଭିଜନ୍‌ର ବିଭିନ୍ନ ଚରିତ୍ରଗୁଡ଼ିକର କଣ୍ଢେଇ ମଧ ବହୁ ସଂଖ୍ୟାରେ ମିଳେ – ସିକ୍‌ସ୍ ମିଲିୟନ୍ ଡଲାର୍ ମ୍ୟାନ୍ (ବିଦ୍ୟୁତ୍ ଯନ୍ତ୍ରଖଚିତ ଅତି ଶକ୍ତିଶାଳୀ ମଣିଷ), ବ୍ୟାଟ୍‌ମ୍ୟାନ୍ (ବାଦୁଡ଼ି ପରି ଦିଶୁଥିବା ବଳୁଆ ମଣିଷ), କିଂ କଂଗ୍ (ଏକ ପ୍ରକାଣ୍ଡ ବଣ ମଣିଷ ବା ଗରିଲା), ଡ୍ରାକ୍ୟୁଲା (ଅସୁର), ମିକି ମାଉସ୍ (ୱାଲ୍‌ଟ୍ ଡିସ୍‌ନିଙ୍କ ପ୍ରସିଦ୍ଧ ମୂଷା ଚରିତ୍ର) ପ୍ରଭୃତି । ମୋଟାମୋଟି କଣ୍ଢେଇଗୁଡ଼ିକ ମଜବୁତ୍, ଦେଖିବାକୁ ଚମତ୍କାର ଓ ଉଚ୍ଚ ଦାମ୍‌ରେ ବିକ୍ରି ହୁଏ ।

ଘର ସଜାଇବା ଉପକରଣ ମଧରେ କଣ୍ଢେଇକୁ ବାଦ୍ ଦେଲେ ବିଭିନ୍ନ ପେଣ୍ଟିଂ, ଚରିତ୍ର ପ୍ଲେଟ୍, ଶୁଖିଲା ଫୁଲ ବା ରଙ୍ଗିନ୍ ଘାସ, ପ୍ଲାଷ୍ଟିକ୍‌ର ଫୁଲ ପ୍ରଭୃତି ପ୍ରଧାନ । ଦାମିକା ପ୍ଲାଷ୍ଟିକ୍‌ର ଫୁଲସବୁ ଅବିକଳ ସତ ଫୁଲପରି ଦିଶେ । ଏଗୁଡ଼ିକର ଦାମ୍ ମଧ ଖୁବ୍ ବେଶି । କୌଣସି ଜିନିଷ ନୂଆ ନୂଆ ବଜାରକୁ ଆସିଲେ ତାର ଦାମ୍ ଖୁବ୍ ବେଶି ଥାଏ; ପରେ ଅବଶ୍ୟ ଦାମ୍ ଖସି ଆସେ । ସେଥିପାଇଁ ଅନେକେ କୌଣସି ଜିନିଷ କିଣିବା ପାଇଁ ଦାମ୍ କମିବା ଯାଏଁ ଅପେକ୍ଷା କରନ୍ତି ।

କ୍ୟାଣ୍ଟର୍‌ବରୀରେ ଡାକଟିକଟ ବିକ୍ରି କରୁଥିବା ଦୋକାନର ସଂଖ୍ୟା ପାଞ୍ଚ ବା ଛଅ । ବିଭିନ୍ନ ଦେଶର ଡାକଟିକଟ ସଂଗ୍ରହ କରି ସେଗୁଡ଼ିକ ବିଭିନ୍ନ କାଗଜ ଖୋଳରେ ରଖି ବିକ୍ରି କରାଯାଏ । ବିଭିନ୍ନ ଦେଶର ପଶୁ, ବିଭିନ୍ନ ଦେଶର ପକ୍ଷୀ, ବିଭିନ୍ନ ଦେଶର ଫୁଲ ଡାକଟିକଟଗୁଡ଼ିକୁ ଏହିପରି ବିଭକ୍ତ କରି ଅଲଗା ଅଲଗା ରଖାଯାଏ । ଦୁଷ୍ପ୍ରାପ୍ୟ ଡାକଟିକଟ କଥା ଅଲଗା; କିନ୍ତୁ ସାଧାରଣତଃ ଡାକଟିକଟଗୁଡ଼ିକର ମୂଲ୍ୟ ବେଶି ନୁହେଁ । × × ×

କେବଳ ଉଇକ୍ ଏଣ୍ଡ୍‌ମାନଙ୍କରେ ସଉଦା କିଣିବା ପାଇଁ ନୁହେଁ, ଅନ୍ୟ ସମୟରେ କାମରେ ମନ ନ ଲାଗିଲେ ମୁଁ ଅନେକ ସମୟରେ ସିଟି ସେଣ୍ଟର୍ ଓ ତତ୍‌ସଂଲଗ୍ନ ଅଞ୍ଚଳମାନଙ୍କରେ ବୁଲିବାକୁ ଯାଏ । ଅନ୍ୟ କାହାକୁ ଆଗରୁ ନ ଜଣାଇ ଦେଖା କରିବା ତ ଠିକ୍ ନୁହେଁ । ତେଣୁ ରୁମ୍‌ରେ ବସି ବିରକ୍ତି ଅନୁଭବ କରିବାଠାରୁ ସହରର ରାସ୍ତାରେ ବୁଲିବୁଲି ଦୋକାନମାନଙ୍କର ସୌନ୍ଦର୍ଯ୍ୟ ଓ ସମୃଦ୍ଧି ତଥା ଲୋକମାନଙ୍କ ଚଳପ୍ରଚଳ ଲକ୍ଷ୍ୟ କରିବା ଭଲ ।

ଦିନର ସବୁ ସମୟରେ ଦୋକାନମାନଙ୍କରେ ବିଶେଷତଃ ସୁପର୍ ମାର୍କେଟ୍‌ମାନଙ୍କରେ ଲୋକଗହଳି ଦେଖିଲେ ମନରେ ସ୍ୱାଭାବିକ ପ୍ରଶ୍ନ ଉଠେ – ଇଂରେଜ ଲୋକଙ୍କର କ'ଣ ବଜାରରେ ବୁଲିବା ଏକ ଅଭ୍ୟାସ ? କୌଣସି ଜିନିଷର ଆବଶ୍ୟକତା ଥିଲେ ଯେ ଇଂରେଜ ଲୋକେ ବଜାରକୁ ଆସନ୍ତି, ତା' ନୁହେଁ, କିଛି ଗୋଟାଏ ନୂଆ ଜିନିଷ କିମ୍ବା କିଛି ଗୋଟାଏ ଶସ୍ତାରେ ପାଇଯିବା ଆଶାରେ ମଧ୍ୟ ସେମାନେ ଦୋକାନ ଦୋକାନ ବୁଲୁଥାନ୍ତି କିମ୍ବା 'ଉଇଣ୍ଡୋ ସପିଂ' କରୁଥାନ୍ତି ଅର୍ଥାତ୍ କାଚ ଝରକା ନିକଟରେ ପ୍ରଦର୍ଶିତ ବସ୍ତୁଗୁଡ଼ିକର ଦାମ୍ ଦେଖୁଥାନ୍ତି । ତେବେ ଦୋକାନ ଦୋକାନ ବୁଲିବା ଅବସର ସମୟ କଟାଇବାର ଏକ ନିରୀହ ସୁଲଭ ଉପାୟ !

ଇଂଲାଣ୍ଡ ଏକ ସମୃଦ୍ଧିଶାଳୀ ଶିଳ୍ପପ୍ରଧାନ ଦେଶ । ଏଭଳି ଦେଶର ବ୍ୟବସାୟ ବାଣିଜ୍ୟ ତଥା ଲୋକମାନଙ୍କର କ୍ରୟବିକ୍ରୟ ପ୍ରଣାଳୀ ଭାରତ ଭଳି ଦରିଦ୍ର ଓ କୃଷିପ୍ରଧାନ ଦେଶର ଅନୁରୂପ ବ୍ୟବସ୍ଥାଠାରୁ ଅନେକ ପରିମାଣରେ ଭିନ୍ନ । ଭାରତରେ ଅପେକ୍ଷାକୃତ ଶସ୍ତା ଓ ସହଜଲଭ୍ୟ ବସ୍ତୁଗୁଡ଼ିକ ଇଂଲାଣ୍ଡରେ ମହାର୍ଘ ଓ ଦୁଷ୍ପ୍ରାପ୍ୟ ହୋଇପାରେ । ସେହିପରି ଇଂଲାଣ୍ଡରେ ଶସ୍ତା ଦରରେ ମିଳୁଥିବା ଅନେକ ବସ୍ତୁ ଭାରତରେ ଉଚ୍ଚ ଦରରେ ମିଳେ । ମୋଟାମୋଟି ଇଂଲାଣ୍ଡରେ ବସ୍ତ୍ର, ପୋଷାକ ପରିଚ୍ଛଦ ଓ କାରିଗରୀ ବା ମେକାନିକାଲ ଜିନିଷଗୁଡ଼ିକର ଦାମ୍ କମ୍, କିନ୍ତୁ ଘରଭଡ଼ା, ଘର ସଜାଇବା ଓ ଅନ୍ୟାନ୍ୟ ସୌଖୀନ ଉପକରଣଗୁଡ଼ିକର ଦାମ୍ ଖୁବ୍ ବେଶି । ଜଣେ ସାଧାରଣ ଲୋକ ତା'ର ମାସକର ଦରମାର ଦଶମାଂଶ ତା'ର ଖାଦ୍ୟପେୟ, ପଞ୍ଚମାଂଶ ବାସଗୃହରେ ଖର୍ଚ୍ଚ କରି ଅବଶିଷ୍ଟାଂଶରେ ଗୋଟିଏ ରେଡ଼ିଓ ଓ ହଳେ ସୁଟ୍ କିଣିପାରେ । 'ସେକେଣ୍ଡ ହାଣ୍ଡ' ଜିନିଷଗୁଡ଼ିକ ଖୁବ୍ ଶସ୍ତା । ସାପ୍ତାହିକ ହାଟମାନଙ୍କରେ ପାଞ୍ଚ ପେନ୍‌ସ୍ (ଅଶୀପଇସା)ରେ ଖଣ୍ଡେ ସ୍ୱେଟର ବା ପଚାଶ ପେନ୍‌ସ୍ (ଆଠଟଙ୍କା)ରେ ଖଣ୍ଡେ ଜ୍ୟାକେଟ୍ କିଣିବା ସମ୍ଭବ । ଅନେକ ସମୟରେ କୌଣସି ଅନୁଷ୍ଠାନକୁ ସାହାଯ୍ୟ କରିବାକୁ 'ସେକେଣ୍ଡ ହାଣ୍ଡ' ଜିନିଷ ସବୁ ଜମ୍ବଲ୍ ସେଲ୍‌ରେ ବିକ୍ରୟ କରାଯାଏ । ଜମ୍ବଲ୍ ସେଲ୍‌ରେ ଗୋଟିଏ ଦୁଇଟି ପେନ୍‌ସ୍‌ରେ ହଳେ କପ୍‌ପ୍ଲେଟ୍‌ରୁ ଆରମ୍ଭ କରି ଖଣ୍ଡେ ଟ୍ରାଉଜର ବା ଗୋଟିଏ ରେକର୍ଡ଼ କିଣାଯାଇପାରେ । ଅବଶ୍ୟ ଜମ୍ବଲ୍ ସେଲ୍‌ମାନଙ୍କରେ ଭିଡ଼ ହୁଏ ଖୁବ୍ ଓ ସ୍ତ୍ରୀଲୋକମାନେ 'ସେଲ୍' ହେବାର ଘଣ୍ଟା ଘଣ୍ଟା ଆଗରୁ ଧାଡ଼ି ବାନ୍ଧି ଠିଆ ହୋଇଥାନ୍ତି ।

ନିଜର ନ୍ୟୂନତମ ଆବଶ୍ୟକତା ଅର୍ଥାତ୍ ଖାଦ୍ୟ ଓ ବାସଗୃହର ଖର୍ଚ୍ଚ ପରେ ସାଧାରଣ ଇଂରେଜ ଲୋକଟି ହାତରେ ବହୁ ଟଙ୍କା ବଳକା ରହେ । ଚିକିତ୍ସା ପାଇଁ ଜାତୀୟ ସ୍ୱାସ୍ଥ୍ୟ ସଂସ୍ଥା (National Health Service)ରେ ବ୍ୟବସ୍ଥା ଥିବାରୁ ସରକାରୀ ଡାକ୍ତର ମାଗଣାରେ ଚିକିତ୍ସା କରନ୍ତି, ଔଷଧଗୁଡ଼ିକ ମଧ୍ୟ କମ୍ ଦାମ୍‌ରେ ଯୋଗାଇ ଦିଆଯାଏ । ପ୍ରାଥମିକ ସ୍ତରରେ ଶିକ୍ଷା ପାଇଁ ସାମାନ୍ୟ ଖର୍ଚ୍ଚ କରିବାକୁ ପଡ଼େ । ତେଣୁ ବଳକା ଟଙ୍କାରେ ଇଂରେଜ ଲୋକଟି ବିଭିନ୍ନ କାରିଗରୀ ଜିନିଷ ଯଥା – ରେଡ଼ିଓ, ଟେଲିଭିଜନ, କ୍ୟାମେରା, ରେକର୍ଡ଼ ପ୍ଲେୟାର୍, ରେଫ୍ରିଜରେଟର୍, କୁକର୍ ପ୍ରଭୃତି କିଣେ; ଘର ସଜାଇବା ପାଇଁ ସୁନ୍ଦର ୱାଲ୍ ପେପର୍, କାଠ ପେଣ୍ଟିଂ ଓ ଅନ୍ୟାନ୍ୟ ଉପକରଣ ଖୋଜେ ଏବଂ ମଦ୍ୟପାନ କରେ କିମ୍ବା ଛୁଟିରେ ବିଭିନ୍ନ ଦେଶକୁ ବୁଲିବାକୁ ଯାଏ । ଭାରତରେ ଯେପରି ଲୋକେ ସ୍ୱଳ୍ପ ଆୟ ମଧ୍ୟରେ ଚଳିବାକୁ ଯୋଜନାମାନ କରୁଥା'ନ୍ତି, ଇଂଲାଣ୍ଡ ଭଳି ଧନୀ ଦେଶମାନଙ୍କରେ ସେହିଭଳି ବଳକା ଅର୍ଥ ଖର୍ଚ୍ଚ କରିବାକୁ ବହୁ ଲୋକଙ୍କୁ ଉପାୟ ଚିନ୍ତା କରିବାକୁ ପଡ଼େ ।

ଥରେ ଗୋଟିଏ ଟ୍ରାଭଲ୍‌ସ୍ ଉଇଙ୍ଗ୍‌ସ୍‌ରେ ଜଣେ ଭଦ୍ରଲୋକ କନ୍‌କର୍ଡ୍‌ରେ ଆମେରିକାକୁ ଯିବା ପାଇଁ ଟିକେଟ୍‌ଟିଏ ମାଗିଲେ । ସେତେବେଳେ କନ୍‌କର୍ଡ୍ ନୂଆ ନୂଆ ବାହାରିଥାଏ ଏବଂ କନ୍‌କର୍ଡ୍‌ରେ ଟିକେଟ୍‌ର ଦାମ୍ ଥାଏ ଖୁବ୍ ବେଶି । ସେଲସ୍‌ମ୍ୟାନ୍ ତାଙ୍କୁ କେବେ ଯିବାକୁ ଚାହୁଁଛନ୍ତି ପଚାରିଲେ । ଭଦ୍ରଲୋକ ଉତ୍ତର ଦେଲେ, 'ମୋର ଆମେରିକାରେ କୌଣସି କାମ ନାହିଁ । ଖାଲି କନ୍‌କର୍ଡ୍‌ରେ ବସିଲେ କେମିତି ଲାଗେ ଜାଣିବାକୁ ଚାହୁଁଛି' । ମୁଁ ସେଇ ଟ୍ରାଭଲ୍‌ସ୍ ଉଇଙ୍ଗ୍‌ସ୍‌ରେ ଠିଆ ହୋଇଥିଲି । କୌତୂହଳରେ ଭଦ୍ରଲୋକଙ୍କୁ ଅନାଇଲି । ସେ ଜଣେ ଧନୀଲୋକ, ଆପାତତଃ ତାଙ୍କର ପୋଷାକପତ୍ରରୁ ଜଣାଯାଉ ନ ଥିଲା ।

ଥରେ ଖ୍ରୀଷ୍ଟମାସ୍ ସମୟରେ ଜଣେ ବନ୍ଧୁଙ୍କ ଘରକୁ ଯାଇ ଦେଖିଲି, ଏକ ନୂଆ ଦାମିକା କାର୍‌ପେଟ୍ ସେ ତାଙ୍କ ଡ୍ରଇଂରୁମ୍‌ରେ ପକାଇଛନ୍ତି । ତାଙ୍କ ପୁରୁଣା କାର୍‌ପେଟ୍‌ଟି କୁଆଡ଼େ ଗଲା ବୋଲି ପଚାରିଲି । ସେ ସେଇଟିକୁ 'ଅଳିଆ' ଭାବରେ ଫିଙ୍ଗିଦେଲେ ବୋଲି କହିଲେ । ତାଙ୍କର କାର୍‌ପେଟ୍‌ଟି ଯେ ଭଲ ଅବସ୍ଥାରେ ଥିଲା, ଏଥିରେ ସନ୍ଦେହ ନାହିଁ; କିନ୍ତୁ ଖ୍ରୀଷ୍ଟମାସ୍‌ରେ ନୂଆ କାର୍‌ପେଟ୍‌ଟିଏ ବଦଳାଇବାକୁ ହେଲେ ପୁରୁଣାଟି ଯିବ କୁଆଡ଼େ ?

କ୍ୟାଣ୍ଟର୍‌ବରୀର ଦୋକାନମାନଙ୍କରେ ବୁଲୁଥିବା ଲୋକମାନଙ୍କୁ ଦେଖିଲେ ବୁଝିହୁଏ, ଅଧିକାଂଶ ଯେମିତି କିଛି ଗୋଟାଏ ନୂଆ, କିଛି ଗୋଟାଏ ଶସ୍ତାରେ ପାଇବାକୁ ବ୍ୟାକୁଳ । ନୂଆ ସୁଟ୍‌ଟିଏ କିଣିଲେ ପୁରୁଣାଟି ହୁଏତ ଜମ୍ବଲ୍ ସେଲ୍‌କୁ ଯିବ; ନୂଆ ଶଙ୍ଖ ବାସନଗୁଡ଼ିଏ କିଣିଲେ ପୁରୁଣା ସେଟ୍‌ଟି ସାପ୍ତାହିକ ହାଟରେ ଅଳ୍ପ କେତେ ପେନ୍‌ସ୍‌ରେ ବିକ୍ରି କରାହେବ । ଆମେ ଭାରତୀୟମାନେ ହଜାର ହଜାର ବର୍ଷ ହେଲା ଯେପରି 'ଭୋଗ'କୁ ନୁହେଁ, 'ତ୍ୟାଗ'କୁ ଆଦର୍ଶ ବୋଲି ଘୋଷଣା କରିଆସିଛୁ, ଇଂରେଜ ଜାତି ସେପରି କରିଛି ବୋଲି କୁହାଯାଇ ପାରିବ ନାହିଁ । ସୁଖ, ସମୃଦ୍ଧିର ଅନୁସନ୍ଧାନରେ ଇଂଲାଣ୍ଡ ଛାଡ଼ି ଇଂରେଜ ଜାତି ସାରା ପୃଥିବୀରେ ବ୍ୟାପ୍ତ ହୋଇଯାଇଛି । ଇଂଲାଣ୍ଡର ସମଗ୍ର ସମୃଦ୍ଧିର ମୂଳ ଉତ୍ସ ବାଣିଜ୍ୟ ।

ଉପନିବେଶବାଦ ସେଇ ବାଣିଜ୍ୟିକ ଆବଶ୍ୟକତାର ଅନ୍ୟ ରୂପ ମାତ୍ର । ଆଜି ପୃଥିବୀର ବାଣିଜ୍ୟ ବ୍ୟବସାୟରେ ଇଂରେଜ ଜାତିର ଏକାଧିପତ୍ୟ ଲୋପ ପାଇଛି ସତ; କିନ୍ତୁ ବାଣିଜ୍ୟ ବ୍ୟବସାୟ ପ୍ରତି ଇଂରେଜ ଜାତିର ଆକର୍ଷଣ ସାମାନ୍ୟ ବି ହ୍ରାସ ପାଇ ନାହିଁ । 'ଇଂରେଜମାନେ ଦୋକାନୀ ଜାତି' ବୋଲି ନେପୋଲିଅନ୍ ଯାହା କହିଥିଲେ, ସେଥିରେ ବିଶେଷ ଅତିରଞ୍ଜନ ଅଛି ବୋଲି ମନେହୁଏ ନାହିଁ ।



# ପ୍ରଥମ କୋଇଲିର ଡାକ

ସେଦିନର ପ୍ରଥମ ସମ୍ବାଦଟି ଥିଲା ଗୋଟିଏ କୋଇଲି ସମ୍ପର୍କରେ । ସନ୍ଧ୍ୟା ପାଞ୍ଚଟାରେ ବି.ବି.ସି. ଟେଲିଭିଜନରେ ଜନ୍ କ୍ରେଭେନ୍ ବୋଲି ଯେଉଁ ସୁଶ୍ରୀ ଯୁବକ ସମ୍ବାଦ ପରିବେଷଣ କରନ୍ତି, ସେ ହସି ହସି ସମ୍ବାଦ ଦେଲେ, ଏ ବର୍ଷ ବସନ୍ତରେ ପ୍ରଥମଥରପାଇଁ ଗୋଟିଏ କୋଇଲିକୁ ଆଜି ଜଣେ ବାଳକ ଦେଖିପାରିଛି । ତା'ପରେ ଟେଲିଭିଜନରେ କୋଇଲିଟିର ଛବି ।

୧୯୭୬ରେ ଇଂଲାଣ୍ଡର ବିଭିନ୍ନ ନାଗରିକଙ୍କ ଉଦ୍ଦେଶ୍ୟରେ ରାଣୀ ଏଲିଜାବେଥିଙ୍କ ସମ୍ମାନ ତାଲିକା ବା award list ଘୋଷଣା କରାଗଲା । ଦେଶର ନାଗରିକମାନଙ୍କର ସମାଜ ପାଇଁ ଉଲ୍ଲେଖଯୋଗ୍ୟ ଅବଦାନର ସ୍ୱୀକୃତି ଏଭଳି ସମ୍ମାନ ତାଲିକାର ଉଦ୍ଦେଶ୍ୟ । ଏହି ତାଲିକାର ପ୍ରଥମ ନାମଟି ଥିଲା ଜଣେ ଜୀବବିତ୍ ବା zoologistଙ୍କର । ଭଦ୍ରଲୋକ ବହୁ ଉଦ୍ୟମରେ ପ୍ରାୟ ଲୁପ୍ତ ହୋଇ ଆସୁଥିବା ଗୋଟିଏ ଶ୍ରେଣୀର ନୀଳ ପ୍ରଜାପତିକୁ ରକ୍ଷା କରିପାରିଥିଲେ ।

ଥରେ ଇଂଲାଣ୍ଡର ଡୋଭର୍ ଉପକୂଳରେ ଗୋଟିଏ ତୈଳବାହୀ ଜାହାଜରେ ଛିଦ୍ର ହୋଇ ସମୁଦ୍ର ଜଳ ଉପରେ ତୈଳର ଗୋଟିଏ ଆବରଣ ବା coating ସୃଷ୍ଟି ହେଲା । ଫଳରେ ଅସଂଖ୍ୟ ସାମୁଦ୍ରିକ ପକ୍ଷୀ ବିଶେଷତଃ ସି-ଗଲ୍‌ମାନଙ୍କ ଡେଣାରେ ତେଲ ଲାଗି ସେମାନେ ଉଡ଼ିପାରିଲେ ନାହିଁ । କେତେକ ପକ୍ଷୀଙ୍କର ମୃତ୍ୟୁ ଘଟିଲା । ଅନେକଙ୍କ ପାଇଁ ସମ୍ବାଦଟି ଥିଲା ଗୁରୁତର । ସଙ୍ଗେ ସଙ୍ଗେ R.S.P.C.A. (Royal Society for Prevention of Cruelty to Animals)ର ବହୁ ସ୍ୱେଚ୍ଛାସେବକ ତୈଳାକ୍ରାନ୍ତ ପକ୍ଷୀମାନଙ୍କ ସେବାରେ ଲାଗିପଡ଼ିଲେ । ପକ୍ଷୀମାନଙ୍କୁ ନିକଟବର୍ତ୍ତୀ ଗୋଟିଏ ଲାବୋରେଟରୀକୁ ଅଣାଗଲା । ସେମାନଙ୍କ ଡେଣାରୁ ତେଲ ଛଡ଼ାଇ ଦିଆଗଲା, ସେମାନଙ୍କୁ କୌଣସି ଇଞ୍ଜେକ୍‌ସନ୍ ଦିଆଗଲା । ତା'ପରେ ସେମାନେ ପୁଣି ସମୁଦ୍ରର ମୁକ୍ତ ପବନରେ ଉଡ଼ିପାରିଲେ, ସମୁଦ୍ରର ଢେଉରେ ପହଁରି ପାରିଲେ ।

ଆଉ ଦିନେ । ଆମ ଘର ସାମ୍ନାରେ ନୂଆ ଢଳା ହୋଇଥିବା ପିଚ୍‌ରେ ଆଲ୍‌ଫ୍ରେଡ୍‌ର ଗୋଡ଼ ଲାଗିଥିଲା । ଆଲ୍‌ଫ୍ରେଡ୍ ଆମ ଘରଠାରୁ ଅଳ୍ପ ଦୂରରେ ରହୁଥିବା ମିସେସ୍ ହକିନ୍‌ସ୍‌ଙ୍କ ଭୂଆଁ ବିଲେଇଟି । ଥରେ ଦି'ଥର ଜୋରରେ ମିଆଉଁ ମିଆଉଁ କରିଛି, ବିଭିନ୍ନ ଘରଭିତରୁ ସ୍ତ୍ରୀଲୋକମାନେ ବାହାରି ଆସିଲେ – ମିସେସ୍ ୟାର୍‌ଉଡ୍, ମିସେସ୍ ଗୋଲ୍‌ଡ୍‌ସ୍ୟାକ୍ ଓ ନିଜେ ମିସେ୍ ହକିନ୍‌ସ୍ । ବିଲେଇଟିକୁ ଅତି ଯତ୍ନରେ ପିଚ୍‌ରୁ ବାହାର କଲେ । ଯେପରି କିଛି ଗୋଟାଏ ଦାରୁଣ ଘଟଣା ଘଟିଯାଇଛି ! ସମସ୍ତେ ବିଚଳିତ ଦିଶୁଥା'ନ୍ତି, ମିସେସ୍ ହକିନ୍‌ସ୍‌ଙ୍କୁ ସମବେଦନା ଜଣାଉଥା'ନ୍ତି । ଅଳ୍ପ ସମୟ ପରେ ଆଲଫ୍ରେଡ୍ ମିସେସ୍ ହକିନ୍‌ସ୍‌ଙ୍କ କାନ୍ଧରେ ବସି ଯୁଦ୍ଧଫେରନ୍ତା ବୀର ପରି ନିଜ ଘରକୁ ବୁହା ହୋଇଗଲା ।

ଏହିପରି ଘଟନା ସବୁ ପ୍ରାୟ ପ୍ରତିଦିନ ଲାଗି ରହିଥାଏ । ପଶୁ, ପକ୍ଷୀ, କୀଟ, ପତଙ୍ଗ, ବୃକ୍ଷ, ଲତାଙ୍କ ବିଷୟରେ ବିଲାତର ଲୋକେ କେତେ ସଚେତନ, ସେସବୁ ସମ୍ପର୍କରେ ସେମାନେ କେତେ ଖବର ରଖନ୍ତି ଓ ସେସବୁର କେତେ ଯତ୍ନ ନିଅନ୍ତି, ତାହା ନିଜେ ନ ଦେଖିଲେ ବିଶ୍ୱାସ କରିହେବ ନାହିଁ । ପ୍ରଥମେ ଲଣ୍ଡନ୍‌ରେ ପହଞ୍ଚିବା ପରେ ହିଁ ଇଂରେଜ ଲୋକଙ୍କ ପଶୁପକ୍ଷୀ ଓ ବୃକ୍ଷଲତାଙ୍କ ପ୍ରତି ସ୍ନେହ ସମ୍ପର୍କରେ ମୋର କିଞ୍ଚିତ୍ ଧାରଣା ହୋଇଥିଲା । ବ୍ୟବସାୟ ଓ ବାଣିଜ୍ୟର କେନ୍ଦ୍ରନଗରୀ ଲଣ୍ଡନ୍‌ରେ ମୁଁ ଲକ୍ଷ୍ୟ କଲି, ନଗରରେ ବହୁ ଚମତ୍କାର ବିସ୍ତୀର୍ଣ୍ଣ ଉଦ୍ୟାନ ଓ ଘାସପଡ଼ିଆ । ହାଇଡ୍ ପାର୍କ୍, ରିଜେଣ୍ଟ ପାର୍କ୍ ପ୍ରଭୃତି ଉଦ୍ୟାନର ନାମ ସହିତ ଅନେକେ ପରିଚିତ । ତେବେ ସମଗ୍ର ନଗରଟି ବହୁ ଲନ୍ ଓ ଉଦ୍ୟାନମାନଙ୍କଦ୍ୱାରା ସଜ୍ଜିତ । କୌଣସି ଲନ୍‌ରେ ହୃଷ୍ଟପୁଷ୍ଟ ଧଳାଘୋଡ଼ାମାନେ ଘାସ ଚରୁଥିବା ଦୃଶ୍ୟ ପ୍ରସିଦ୍ଧ ଇଂରେଜ ଶିଳ୍ପୀମାନଙ୍କ ପେଣ୍ଟିଂକୁ ସ୍ମରଣ କରାଇଦିଏ । ଉଦ୍ୟାନମାନଙ୍କରେ ଓ ନଗରର ଛକମାନଙ୍କରେ ସ୍ଥାପିତ ପ୍ରକାଣ୍ଡ ମୂର୍ତ୍ତି ଓ ଜଳ ଫୁଆରାମାନଙ୍କ ନିକଟରେ ଅସଂଖ୍ୟ ପାରା । ତା'ଛଡ଼ା ନଗରର ସର୍ବତ୍ର ବହୁ ବ୍ଲାକ୍ ବାର୍ଡ୍, (ସାରୀ ପରି ଗୋଟିଏ ପକ୍ଷୀ; ଦେହଟି କଳା, ଚଞ୍ଚୁଟି ହଳଦିଆ) ଆଖିରେ ପଡ଼ନ୍ତି । ଲଣ୍ଡନ୍ ନଗରର କେନ୍ଦ୍ର ଛକରେ କୌଣସି ହୋଟେଲ୍‌ରେ ରହିଲେ ମଧ୍ୟ ସକାଳୁ ଉଠିଲେ ସବୁଜ ଲନ୍‌ରେ ଘୋଡ଼ାମାନେ ଚରୁଥିବାର ଦୃଶ୍ୟ ଦେଖିବା କିମ୍ବା ଅସଂଖ୍ୟ ବ୍ଲାକ୍‌ବାର୍ଡ୍‌ଙ୍କ କାକଳି ଶୁଣିବା ଆଶ୍ଚର୍ଯ୍ୟଜନକ ନୁହେଁ । ଯେଉଁ ଦେଶରେ ଶତକଡ଼ା ମାତ୍ର ଦୁଇଜଣ କୃଷି ଉପରେ ନିର୍ଭର କରନ୍ତି ଏବଂ ଯେଉଁ ଦେଶ ପୃଥିବୀରେ ଶିଳ୍ପ–ବିପ୍ଳବର ସ୍ରଷ୍ଟା, ସେପରି ଦେଶର ରାଜଧାନୀରେ ବନ୍ୟ–ଜୀବନ ଓ ପ୍ରାକୃତିକ ସୌନ୍ଦର୍ଯ୍ୟ ଯେପରି ଦୃଷ୍ଟିରେ ପଡ଼େ, ଭାରତ ପରି କୃଷିପ୍ରଧାନ ଦେଶରେ ସହର ବା ନଗରମାନଙ୍କରେ ତାହା କଳ୍ପନା କରାଯାଇ ନ ପାରେ । × × ×

ବିଲାତରେ ମଣିଷ ସହିତ ପଶୁପକ୍ଷୀମାନଙ୍କର ସମ୍ପର୍କ, ଭାରତରେ ଅନୁରୂପ ସମ୍ପର୍କଠାରୁ ଭିନ୍ନ । ଭାରତରେ ମୋଟାମୋଟି ଭାବରେ ଆମେ ଗୃହପାଳିତ ପଶୁପକ୍ଷୀମାନଙ୍କର ଯତ୍ନ ନେଉନା, ସେମାନଙ୍କ ପ୍ରତି ନିଷ୍ଠୁର ଆଚରଣ କରୁ । ଗୃହପାଳିତ କୁକୁର ଓ ବିଲେଇମାନଙ୍କୁ ଗଣ୍ଡାଏ ଅଇଁଠା ଭାତ ଦେଇଦେଲେ ସେମାନଙ୍କ ପ୍ରତି ଆମ କର୍ତ୍ତବ୍ୟ ଶେଷ ହେଲା ବୋଲି

ଆମେ ଭାବୁ । ବୁଲା କୁକୁର ଓ ବିଲେଇ ସବୁ ରୋଗିଣା ହୋଇ ରାସ୍ତାରେ ଏଣେତେଣେ ବୁଲୁଥା'ନ୍ତି । ଗୋରୁମାନଙ୍କ କଙ୍କାଳମୟ ଚେହେରା ଦେଖିଲେ ହିନ୍ଦୁ-ସମାଜ ଗୋରୁମାନଙ୍କୁ ଜନନୀ ବୋଲି ମନେକରନ୍ତି ବୋଲି କଳ୍ପନା କରିବା ମଧ୍ୟ କଠିନ ।

ବିଲାତରେ ବୁଲାକୁକୁର ବା ବିଲେଇ ନାମଧେୟ ଶ୍ରେଣୀଟି ଅନୁପସ୍ଥିତ । ଯେଉଁ କୁକୁର ବା ବିଲେଇର କେହି ମାଲିକ ନ ଥା'ନ୍ତି ତାହାର ଦାୟିତ୍ୱ R. S. P. C. A. ଗ୍ରହଣ କରେ । ମନେକରନ୍ତୁ ଆପଣଙ୍କର କେତୋଟି କୁକୁର ଅଛନ୍ତି । କୌଣସି କାରଣରୁ ଆପଣ ସେମାନଙ୍କ ଜଞ୍ଜାଳରୁ ମୁକ୍ତ ହେବାକୁ ଚାହିଁଲେ । R. S. P. C. A.କୁ ଟେଲିଫୋନ୍‌ରେ ଜଣାଇଦେଲେ ସେମାନେ ସେଇ ଅବାଞ୍ଛିତ ପ୍ରାଣୀମାନଙ୍କ ଦାୟିତ୍ୱ ଗ୍ରହଣ କରିବେ । ତେବେ ଅନେକ ସମୟରେ ଖବରକାଗଜରେ ବିଜ୍ଞାପନ ଦେଲେ ଆପଣଙ୍କ ସହରର ଅନ୍ୟ କେହି ସେପରି ପ୍ରାଣୀମାନଙ୍କୁ ନେଇଯିବାର ସମ୍ଭାବନା ଯଥେଷ୍ଟ । ମୁଁ ରହୁଥିବା କେଣ୍ଟ ଜିଲ୍ଲାରେ Adscene ନାମରେ ଏକ ସାପ୍ତାହିକ ପତ୍ରରେ କିଏ କେଉଁ ଜିନିଷ ବିକ୍ରି କରିବାକୁ ଚାହୁଁଛି, କେଉଁଠି ଭଡ଼ାଘର ମିଳିବ ପ୍ରଭୃତି ସାଙ୍ଗକୁ କେଉଁ ପଶୁପକ୍ଷୀ କେଉଁଠି କିଣିବାକୁ ବା ମାଗଣାରେ ମିଳିବ, ତାହା ନିୟମିତ ପ୍ରକାଶ କରାଯାଉଥିଲା । କୁକୁରଛୁଆ, ବିଲେଇଛୁଆ, ଠେକୁଆ, ପାହାଡ଼ି ମୂଷା, ଟଟୁଘୋଡ଼ା, ଗଧ, ଶୁଆ, ବତକ ପ୍ରଭୃତି ସହଜରେ ଯେ କେହି ଏପରି ପତ୍ରିକା ସାହାଯ୍ୟରେ ଯୋଗାଡ଼ କରିପାରିବ । ସାଧାରଣତଃ ବିଲେଇଛୁଆ ଓ ଠେକୁଆଛୁଆ ପ୍ରଭୃତିଙ୍କ ପାଇଁ କେହି ପଇସା ନିଅନ୍ତି ନାହିଁ; କିନ୍ତୁ କୁକୁରଛୁଆର ଦାମ୍ ଟିକିଏ ବେଶି । ଗୃହପାଳିତ ପଶୁ ଭାବରେ କୁକୁରର ଚାହିଦା ଅବଶ୍ୟ ଅନ୍ୟ ଯେକୌଣସି ପଶୁ ଅପେକ୍ଷା ଅଧିକ ।

ପଶୁପକ୍ଷୀଙ୍କ ପ୍ରତି ଇଂରେଜ ଜାତିର ସ୍ନେହ ଓ ଆଦରର ଆଉ ଗୋଟିଏ ଦୁଇଟି ଦୃଷ୍ଟାନ୍ତ ଦେଉଛି । ୧୯୭୬ରେ ୱେଲ୍‌ସ୍‌ର ଗୋଟିଏ ଫାର୍ମ୍ କୌଣସି କାରଣରୁ ବନ୍ଦ ହୋଇଯିବା ସ୍ଥିର ହେଲା । ସମସ୍ୟା ହେଲା, ସେ ଫାର୍ମ୍‌ରେ ଥିବା ସାତଶହ ବିଗ୍‌ଲ୍‌ସ୍ କୁକୁର ଯିବେ କୁଆଡ଼େ ? ଆପାତତଃ ସାତଶହ କୁକୁରଙ୍କୁ ହତ୍ୟା କରିବା ପାଇଁ ସ୍ଥିର କରାଗଲା । R. S. P. C. A. ଏ ଖବର ପାଇ ହସ୍ତକ୍ଷେପ କଲେ । କୁକୁରଗୁଡ଼ିକୁ କେଉଁମାନେ ପେଟ୍ ବା ପୋଷା ଭାବରେ ଗ୍ରହଣ କରିବେ, ତାହା ସେମାନେ ଜାଣିବାକୁ ଚାହିଁଲେ । ସମ୍ବାଦଟି ବିଲାତ ଓ ୟୁରୋପ୍‌ରେ ପ୍ରଚାର କରାଗଲା । କୁକୁରଗୁଡ଼ିକୁ ନେବାପାଇଁ ମାତ୍ର ଚାରି ଦିନରେ ଦୁଇ ହଜାର ଦରଖାସ୍ତ ଆସି ପହଞ୍ଚିଲା ।

ସତଷଠି ବର୍ଷ ବୟସର ଜଣେ ମେଷପାଳକ କୌଣସି କାରଣରୁ ପୋଲିସ୍‌ଦ୍ୱାରା ଆରେଷ୍ଟ ହୋଇ ଜେଲ୍‌କୁ ଗଲା । ତା' ଫାର୍ମ୍‌ରେ ଅନେକ ମେଣ୍ଢା, ଗାଈ ଓ କୁକୁର ଥିଲେ । ସେମାନଙ୍କର ଯତ୍ନ ନେବ କିଏ ? ତା' ଭାଇ ପଶୁଗୁଡ଼ିକଙ୍କର ଯତ୍ନ ନେବାକୁ ରାଜି ହେଲା ନାହିଁ । ଫଳରେ ରାଜକୋଷର ଅର୍ଥ ବିନିମୟରେ ପୁଲିସ୍‌କୁ ସେଇ ପଶୁମାନଙ୍କ ଯତ୍ନ ନେବାକୁ ପଡ଼ିଲା । × × ×

ନିଜର ଘର ଛଡ଼ା ଚାରିପାଖର ପଶୁପକ୍ଷୀ, ବୃକ୍ଷଲତା ସମ୍ପର୍କରେ ଆଗ୍ରହୀ ହେବାକୁ ବିଲାତରେ ପିଲାମାନଙ୍କୁ ଶିକ୍ଷା ଦିଆଯାଏ । ପ୍ରାଥମିକ ସ୍କୁଲ୍‌ମାନଙ୍କରେ କେତେଗୁଡ଼ିଏ ପଶୁ ଓ ପକ୍ଷୀ ପୋଷା ହୋଇଥା'ନ୍ତି ଓ ପିଲାମାନେ ସେମାନଙ୍କୁ ମଝିରେ ମଝିରେ ଖାଇବାକୁ ଦିଅନ୍ତି । ମୋର ଦୁଇଟି ପୁଅ ଯେଉଁ ପ୍ରାଥମିକ ସ୍କୁଲ୍‌ରେ ପଢୁଥିଲେ, ସେ ସ୍କୁଲ୍‌ର ଜଣେ ଶିକ୍ଷୟିତ୍ରୀଙ୍କଠାରୁ ଦିନେ ଗୋଟିଏ ଚିଠି ପାଇଲି, 'ଏଇ ଉଇକ୍ ଏଣ୍ଡ୍‌ରେ ସ୍କୁଲ୍‌ର ଗ୍ରିନିପିଗ୍‌ଟି (ଏକ ଜାତୀୟ ମୂଷା) ଆପଣଙ୍କ ପୁଅ ପାଖରେ ରହିବ । ଆପଣଙ୍କର କିଛି ଆପତ୍ତି ନ ଥିଲେ ମୁଁ ତାହାକୁ ଶୁକ୍ରବାର ଦିନ ଆପଣଙ୍କ ଘରେ ଛାଡ଼ିଦେଇ ଆସିବି ଏବଂ ସୋମବାର ସକାଳେ ନେଇ ଆସିବି ।' ମୋର କୌଣସି ଆପତ୍ତି ନ ଥିଲା । ବିଲାତରେ ରହିବାର ଅଳ୍ପ ଦିନ ଭିତରେ ମୋର ପୁଅ ଦୁଇଜଣ wild life ବା ପଶୁପକ୍ଷୀଙ୍କ ସମ୍ପର୍କରେ ବେଶ୍ ଆଗ୍ରହୀ ହୋଇ ଉଠିଥିଲେ । ମୋ ବଡ଼ପୁଅ ସବୁବେଳେ କହୁଥିଲା, ତା'ର ଶ୍ରେଣୀ ଶିକ୍ଷକ ମିଷ୍ଟର୍ ପେରୀ ଜଣେ ପକ୍ଷୀ ପର୍ଯ୍ୟବେକ୍ଷକ ବା birdwatcher । ସେ ପକ୍ଷୀମାନଙ୍କ ସମ୍ପର୍କରେ ଅନେକ ବହିପତ୍ର ରଖିଛନ୍ତି । ସେ (ମୋ ପୁଅ) ବଡ଼ ହେଲେ ଗୋଟିଏ ଫାର୍ମ୍ କରି ଅନେକ ପଶୁପକ୍ଷୀ ରଖିବ, ବିଶେଷତଃ ସେ ବି ଜଣେ ପକ୍ଷୀ ପର୍ଯ୍ୟବେକ୍ଷକ ହେବ । ଭାରତରେ ଏହି ଏକ ଉଚ୍ଚ ଆକାଂକ୍ଷା ପୋଷଣ କଲେ ହାସ୍ୟାସ୍ପଦ ହେବାର କିଛି ନାହିଁ । ବିଲାତର ପୂର୍ବତନ ପ୍ରଧାନମନ୍ତ୍ରୀ କାଲାହାନ୍ ତାଙ୍କ ଫାର୍ମ୍‌ରେ ଅନେକ ଘୁଷୁରି ରଖିଛନ୍ତି । ଅର୍ଥାତ୍ ସେ ଜଣେ ଘୁଷୁରିଆ । ଯୁକ୍ତରାଷ୍ଟ୍ର ଆମେରିକାର ସଭାପତି ଜିମିକାର୍ଟର୍ ଥିଲେ ଜଣେ ଚୀନାବାଦାମ ଚାଷୀ । କୃଷି ବା ପଶୁପାଳନ ସରକାରୀ ଚାକିରି ଅପେକ୍ଷା ନ୍ୟୂନ – ଏ ଧାରଣାଟି ଆମ ସମାଜ ଛଡ଼ା ଅନ୍ୟ କୌଣସି ସମାଜରେ ଅଛି ବୋଲି ମନେହୁଏ ନାହିଁ । ଶହ ଶହ ବର୍ଷ ଧରି ବିଦେଶୀମାନଙ୍କଦ୍ୱାରା ଶାସିତ ହେବା ଫଳରେ ଆମମାନଙ୍କ ମନରେ ହୁଏତ ଏପରି ଏକ ବୀଭତ୍ସ ଧାରଣା ସୃଷ୍ଟି ହୋଇଛି ।

ଆଉ ଥରେ ସେଇ ସ୍କୁଲ୍‌ରୁ ଗୋଟିଏ ଚିଠି ପାଇଲି । ଚିଠିରେ ସ୍କୁଲ୍‌ରେ ନୂଆ ଯୋଗ ଦେଇଥିବା ଜଣେ ଶିକ୍ଷୟିତ୍ରୀଙ୍କର ଏହିପରି ପରିଚୟ ଦିଆଯାଇଥିଲା ।

'ଶ୍ରୀମତୀ...ଙ୍କର ଗୋଟିଏ ମାଈଘୋଡ଼ା ଓ ଗୋଟିଏ କୁକୁର ଅଛି । ସେ ଗାଆଁରେ ରହନ୍ତି ଓ ବେଳେ ବେଳେ ପିଲାମାନଙ୍କୁ ଖୁସୀ କରିବାପାଇଁ ତାଙ୍କ ଘୋଡ଼ା ଓ କୁକୁରଙ୍କୁ ସ୍କୁଲ୍‌କୁ ଆଣନ୍ତି ।'

ପଶୁପକ୍ଷୀମାନଙ୍କ ସମ୍ପର୍କରେ ପିଲା ଓ ବଡ଼ ସମସ୍ତଙ୍କ ମନରେ ଆଗ୍ରହ ସୃଷ୍ଟି କରିବାରେ ସବୁଠାରୁ ବେଶି ଦାୟୀ ଟେଲିଭିଜନ୍ । ଟେଲିଭିଜନ୍‌ରେ ପ୍ରାୟ ପ୍ରତିଦିନ ବନ୍ୟଜୀବନ ସମ୍ପର୍କରେ କୌଣସି ନା କୌଣସି ପ୍ରୋଗ୍ରାମ୍ ଥାଏ । ବିଶେଷତଃ ବି.ବି.ସି.ରେ The World Around Usରେ ପ୍ରତି ରବିବାର ସନ୍ଧ୍ୟାରେ ପୃଥିବୀର ବିଭିନ୍ନ ଦେଶର ପଶୁ, ପକ୍ଷୀ ଓ ବୃକ୍ଷଲତାଙ୍କ ସମ୍ପର୍କରେ ଚମତ୍କାର ଚିତ୍ରସବୁ ପ୍ରଦର୍ଶିତ ହୁଏ । ଏହି ପ୍ରୋଗ୍ରାମ୍‌ରେ

ଅନ୍ୟମାନଙ୍କ ମଧ୍ୟରେ ଭାରତର ସାପ, ଅଷ୍ଟ୍ରେଲିଆର କଙ୍ଗାରୁ, ଆଫ୍ରିକାର ଜିରାଫ ଓ ହାତୀମାନଙ୍କର ଜୀବନ ସମ୍ପର୍କରେ ଚିତ୍ରମାନ ମୁଁ ଦେଖିଥିଲି । ବିଭିନ୍ନ ପକ୍ଷୀ, ମାଛ ଓ ଜଙ୍ଗଲରେ ରହୁଥିବା ଲୋକମାନଙ୍କ ସମ୍ପର୍କରେ ମଧ୍ୟ ବହୁ ଚିତ୍ର ପ୍ରଦର୍ଶିତ ହୁଏ । ଜ୍ୟାଁକୋଷ୍ଟୋ ନାମରେ ଜଣେ ଫରାସୀଭାଷୀ ଆମେରିକାନ୍ ସମୁଦ୍ର ତଳର ଜୀବଜନ୍ତୁମାନଙ୍କ ସମ୍ପର୍କରେ ବହୁ ଚିତ୍ର ପ୍ରସ୍ତୁତ କରିଛନ୍ତି ଓ ସେଗୁଡ଼ିକ ବିଲାତ ଓ ୟୁରୋପ୍‌ର ଅନ୍ୟାନ୍ୟ ଦେଶମାନଙ୍କରେ ବେଶ୍ ଜନପ୍ରିୟ । ଜ୍ୟାଁକୋଷ୍ଟୋଙ୍କ ବୟସ ଷାଠିଏ ଉପରେ; କ୍ଷୀଣକାୟ ଓ ଆପାତତଃ ଦୁର୍ବଳ ବ୍ୟକ୍ତି ଜଣେ । ତାଙ୍କ ଜୀବନର ଏକମାତ୍ର ଆକାଂକ୍ଷା ଗଭୀର ସମୁଦ୍ରର ଅଭ୍ୟନ୍ତରରେ ଲୁଚି ରହିଥିବା ପ୍ରାଣୀ ଓ ଉଦ୍ଭିଦମାନଙ୍କ ସମ୍ପର୍କରେ ତଥ୍ୟ ସଂଗ୍ରହ କରିବା । ସେଥିପାଇଁ ସେ ଗୋଟିଏ ଜାହାଜରେ ତାଙ୍କର ବନ୍ଧୁମାନଙ୍କୁ ନେଇ ବିଭିନ୍ନ ସମୁଦ୍ରରେ ଘୂରି ବୁଲୁଥାନ୍ତି ଓ ସମୁଦ୍ର ତଳର ଚିତ୍ର ନେଇଥାନ୍ତି । ତେବେ କେବଳ ଜ୍ୟାଁକୋଷ୍ଟୋ ନୁହନ୍ତି, ପାଶ୍ଚାତ୍ୟ ଜଗତରେ ତାଙ୍କ ପରି ଶହ ଶହ ବ୍ୟକ୍ତି ବନ୍ୟ-ଜୀବନ ସମ୍ପର୍କରେ ତଥ୍ୟ ସଂଗ୍ରହରେ ବ୍ୟାପୃତ । ହିଂସ୍ର ଜନ୍ତୁମାନଙ୍କ ସମ୍ପର୍କରେ ତଥ୍ୟ ସଂଗ୍ରହ କରିବା ପାଇଁ ବିଶେଷତଃ ସେମାନଙ୍କ ଚିତ୍ର ନେବାପାଇଁ, ଅନେକଙ୍କୁ ଭୟଙ୍କର ବିପଦସଙ୍କୁଳ ପରିସ୍ଥିତିରେ କାର୍ଯ୍ୟ କରିବାକୁ ପଡ଼େ । ଏପରିକି ଅନେକ ସମୟରେ ମୃତ୍ୟୁବରଣ କରିବାକୁ ପଡ଼ିଥାଏ । × × ×

ବିଲାତ କିମ୍ବା ୟୁରୋପ୍‌ରେ ବନ୍ୟଜୀବନ ସମ୍ପର୍କରେ ଲୋକେ କାହିଁକି ଆଗ୍ରହୀ, ଭାରତରେ ଆଗ୍ରହୀ ନୁହନ୍ତି, କହିବା ହୁଏତ ସହଜ ନୁହେଁ । ତେବେ ଏତିକି କୁହାଯାଇପାରେ ଯେ ଭାରତର ଶତକଡ଼ା ଅଶୀଭାଗ ଲୋକ ନିଜର ଖାଦ୍ୟଗଣ୍ଡାକ ଯୋଗାଡ଼ କରିବା ପାଇଁ ଯେଉଁପରି ଭାବେ ସଂଗ୍ରାମରତ, ସେଥିରେ ପଶୁପକ୍ଷୀ ବା ବୃକ୍ଷଲତା ସମ୍ପର୍କରେ ଆଗ୍ରହୀ ହେବାର ଅବକାଶ ଖୁବ୍ କମ୍ । ତା'ଛଡ଼ା ଭାରତରେ ଶିଳ୍ପ ବିପ୍ଳବ ଆରମ୍ଭ ହୋଇଛି ମାତ୍ର; ତେଣୁ ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ସମ୍ପଦ ଏଯାଏଁ ପ୍ରାୟ ଅକ୍ଷୁଣ୍ଣ ଅଛି । ବିଲାତରେ ଶିଳ୍ପ ବିପ୍ଳବ ଫଳରେ ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ସମ୍ପଦ ଉପରେ ଭୟଙ୍କର ବିପଦ ସୃଷ୍ଟି ହେବାହେତୁ ହୁଏତ ସେ ଦେଶର ଲୋକେ ସେ ସବୁ ବିଷୟରେ ଖୁବ୍ ସତର୍କ ହୋଇ ପଡ଼ିଛନ୍ତି । ଥରେ ସମ୍ବାଦ ମିଳିଲା ଯେ ଗୋଟିଏ ନିର୍ଦ୍ଦିଷ୍ଟ ଜାତିର ମାଛ ଲୋପ ପାଇଯିବାର ସମ୍ଭାବନା ଥିବାରୁ ଆମେରିକାର କୌଣସି ଏକ ନଦୀରେ ବନ୍ଧ ନିର୍ମାଣ କରି ବିଦ୍ୟୁତ୍‌ଶକ୍ତି ଆହରଣ କରିବାର ପ୍ରସ୍ତାବ କାର୍ଯ୍ୟକାରୀ ହୋଇପାରି ନ ଥିଲା ।

ଗୃହପାଳିତ ପଶୁପକ୍ଷୀ କଥା ଛାଡ଼; ବିଲାତରେ ବନ୍ୟ ପଶୁପକ୍ଷୀ ଓ ବୃକ୍ଷଲତାଙ୍କର ମଧ୍ୟ ଯତ୍ନ ନିଆଯାଏ । ଦେଶର ବିଭିନ୍ନ ସ୍ଥାନରେ କ୍ଷୁଦ୍ର ହ୍ରଦ ବା ଜଳାଶୟମାନଙ୍କରେ ବିଭିନ୍ନ ରଙ୍ଗର ବହୁ ସୁନ୍ଦର ହଂସ ଓ ବତକ ପ୍ରଭୃତି ପୋଷା ଯାଇଥା'ନ୍ତି ଓ ସେମାନଙ୍କ ଯତ୍ନ ନେବାପାଇଁ ତଥା ଶୀତଋତୁରେ ସେମାନଙ୍କୁ ଖାଦ୍ୟ ଯୋଗାଇ ଦେବାପାଇଁ ସରକାରୀ ବ୍ୟକ୍ତି ନିଯୁକ୍ତ ଥା'ନ୍ତି । ମୁଁ ପଢୁଥିବା କେଣ୍ଟ୍ ବିଶ୍ୱବିଦ୍ୟାଳୟ ହତାରେ ଗୋଟିଏ ହ୍ରଦରେ ଗୁଡ଼ିଏ ହଂସ ଓ ବତକ ଥିଲେ ଏବଂ ସେମାନଙ୍କ ଯତ୍ନ ନେବାପାଇଁ ଜଣେ ଲୋକ ନିଯୁକ୍ତ

ଥିଲେ । ଅବସର ସମୟରେ ଛାତ୍ର ଛାତ୍ରୀମାନେ ହ୍ରଦ କୂଳରେ ବସି ପକ୍ଷୀମାନଙ୍କ ଗତିବିଧି ପର୍ଯ୍ୟବେକ୍ଷଣ କରୁଥିଲେ । ସନ୍ଧ୍ୟାରେ ବିଶ୍ୱବିଦ୍ୟାଳୟର ସୁବିସ୍ତୃତ ସବୁଜ ଲନ୍ ଉପରେ ଠିଆ ହୋଇ ଆକାଶରେ ଏହି ହଂସମାନଙ୍କ ଉଡ଼ିବା ଦେଖିଲେ, କୌଣସି ନିଭୃତ ଅରଣ୍ୟ ବା ପଲ୍ଲୀରେ ରହୁଥିବାର ଭ୍ରମ ହୁଏ ।

ବିଲାତରେ ବନ୍ୟ ପଶୁପକ୍ଷୀଙ୍କର କିପରି ଯତ୍ନ ନିଆଯାଏ, ତା'ର ଉଦାହରଣ ଦେଉଛି । ଥରେ ଗୋଟିଏ ଗୋଲ୍ଡେନ୍ ଇଗଲ୍ (ଚିଲ ଜାତୀୟ ଏକ ପକ୍ଷୀ) ଗୋଟିଏ ଗଛରେ ଅଣ୍ଡା ଦେଲା । ଗୋଲ୍ଡେନ୍ ଇଗଲ୍ ଏକ ଅତି ଦୁର୍ଲଭ ପକ୍ଷୀ ଏବଂ ଅଣ୍ଡା ଦେଇଥିବା ଏଇ ପକ୍ଷୀଟି ଆଫ୍ରିକାରୁ ଆସିଥିବା ଜଣାଗଲା । କାଳେ କେହି ବ୍ୟକ୍ତି ଅଣ୍ଡା ଦୁଇଟି ଚୋରାଇ ନେଇଯିବ, ସେଥିପାଇଁ ପୁଲିସ ପକ୍ଷରୁ ଅଣ୍ଡା ଦୁଇଟିକୁ ଦିନରାତି ପହରା ଦିଆଯିବାର ବ୍ୟବସ୍ଥା କରାଗଲା । ଦୁଃଖର ବିଷୟ, ଅଣ୍ଡା ଦୁଇଟିରୁ ଛୁଆ ବାହାରିଲେ ନାହିଁ । ବାପ ଇଗଲ୍‌ଟି ମାଆ ଇଗଲ୍ ସହିତ ଅଣ୍ଡା ଉଷୁମାଇବାରେ ସହଯୋଗ ନ କରିବାରୁ ଏପରି ହେଲା ବୋଲି ଖବରକାଗଜ ଓ ଟେଲିଭିଜନ୍‌ରେ ସମ୍ବାଦ ପ୍ରଚାରିତ ହେଲା ।

ସାଧାରଣ ଲୋକେ ବନ୍ୟଜୀବନ, ବିଶେଷତଃ ପକ୍ଷୀମାନଙ୍କ ସମ୍ପର୍କରେ କେତେ ସଚେତନ, ତାହା ମୋ ପଡ଼ୋଶୀମାନଙ୍କ ବିଷୟରେ କିଛି କହିଲେ ହିଁ ବୁଝାଯିବ । ମୋର ଜଣେ ପଡ଼ୋଶୀ ତାଙ୍କ ବାଡ଼ି (backyard)ରେ ବ୍ଲାକ୍‌ବାର୍ଡ୍, ହାଉସ୍ ମାଟିନ୍ (ଘରଚଟିଆ) ପ୍ରଭୃତି ପକ୍ଷୀଙ୍କ ପିଇବାପାଇଁ ଗୋଟିଏ କାଠପାତ୍ରରେ ଜଳ ରଖୁଥିଲେ । ଆଉ ଜଣେ ପଡ଼ୋଶୀ ତାଙ୍କ ବାଡ଼ିର ଗଛ ଡାଳରେ ଟୁକୁରା ଟୁକୁରା ମାଂସର ଚର୍ବି ଝୁଲାଇ ରଖୁଥିଲେ । ପକ୍ଷୀଙ୍କ ପାଇଁ ଖାଦ୍ୟ ବା ପାନୀୟ ଯୋଗାଇଦେବା ଥିଲା ତାଙ୍କର ଉଦ୍ଦେଶ୍ୟ ।

କୁକୁର, ବିଲେଇ ପ୍ରଭୃତି ଗୃହପାଳିତ ପଶୁ ରଖିଥିବା ବ୍ୟକ୍ତିମାନଙ୍କର କୁକୁରପ୍ରେମୀ ସଂଘ (Dog-lovers Association), ବିଲେଇପ୍ରେମୀ ସଂଘ (Cat-lovers Association) ପ୍ରଭୃତି ଯେପରି ଅଛି, ବନ୍ୟ ପଶୁପକ୍ଷୀଙ୍କ ପାଇଁ ସେପରି ଅନୁଷ୍ଠାନମାନ ନ ଥିଲେ ମଧ୍ୟ ପ୍ରତ୍ୟେକ ବନ୍ୟ ପଶୁ, ପକ୍ଷୀ, କୀଟପତଙ୍ଗ ଯେପରି ନିରାପଦରେ ରହିପାରିବେ ଏବଂ ସେମାନଙ୍କର କୌଣସି କାରଣରୁ ବିଲୋପ ନ ଘଟିବ, ସେଥିପ୍ରତି ବହୁ ବ୍ୟକ୍ତି ଓ R.S.P.C.A. ତୀକ୍ଷ୍ଣ ଦୃଷ୍ଟି ରଖିଥାନ୍ତି । କେତେବର୍ଷ ତଳେ କୌଣସି କାରଣରୁ ଅନେକ ପେଚା ମରିଯିବାର ଦେଖାଯିବାରୁ ଏକ ଅନୁଷ୍ଠାନ ଜରିଆରେ ପେଚାମାନଙ୍କ ସୁରକ୍ଷା ପାଇଁ ବହୁ ଅର୍ଥ ସଂଗ୍ରହ କରାଯାଇଥିଲା ଓ ପେଚାମାନଙ୍କ ରହିବାପାଇଁ କାଠରେ ବସାସବୁ ତିଆରି କରି ଗଛମାନଙ୍କରେ ଖଞ୍ଜି ଦିଆଗଲା । ଏହା ଫଳରେ ଶୀତଋତୁରେ ଥଣ୍ଡା ଓ ବରଫ ଯୋଗୁଁ ପେଚାମାନଙ୍କ ମୃତ୍ୟୁ ସଂଖ୍ୟା ଅନେକ ହ୍ରାସ ପାଇଲା । ଆଉଥରେ କୌଣସି ଅଞ୍ଚଳରେ ରାସ୍ତା ଉପରେ କାର୍ ତଳେ ଚାପିହୋଇ ଅନେକ ବେଙ୍ଗ ମରିଯିବା ଲକ୍ଷ୍ୟକରି R.S.P.C.A. ର ସ୍ୱେଚ୍ଛାସେବକମାନେ ବାଲ୍‌ଟିରେ ବେଙ୍ଗମାନଙ୍କୁ ରାସ୍ତା ଉପରୁ ନେଇ ନିକଟବର୍ତ୍ତୀ ନାଳରେ ଛାଡୁଥିବାର ଦୃଶ୍ୟ ଟେଲିଭିଜନ୍‌ରେ ଦେଖିଥିଲି । × × ×

ଅନ୍ୟ ଦେଶର ପଶୁପକ୍ଷୀ ଏବଂ ବୃକ୍ଷଲତା ସବୁକୁ ନିଜ ଦେଶକୁ ଆଣିବା ଏବଂ ନିଜ ଦେଶର ଅଂଶବିଶେଷରେ ପରିଣତ କରିବାପାଇଁ ଇଂରେଜ ଲୋକେ ସବୁବେଳେ ଆଗ୍ରହ ପ୍ରକାଶ କରିଥା'ନ୍ତି । ପୃଥିବୀର ବିଭିନ୍ନ ଦେଶରେ ଉପନିବେଶ ଥିବା ସମୟରେ ଇଂରେଜମାନେ ଶାସିତ ଦେଶମାନଙ୍କରୁ ବହୁ ପଶୁପକ୍ଷୀ ଓ ବୃକ୍ଷ ପ୍ରଭୃତି ଆଣିଥିଲେ । ମଜାର କଥା ହେଉଛି, ମୂଳ ଦେଶରେ ଲୁପ୍ତ କେତେକ ପଶୁ, ପକ୍ଷୀ ଓ ବୃକ୍ଷ ବର୍ତ୍ତମାନ ବିଲାତରେ ହିଁ ଦେଖିବାକୁ ମିଳିବ । ସୁଦୂର ଅତୀତରେ ଜଣେ ଇଂରେଜ ଚୀନ୍ ଦେଶରୁ ଏକ ଶ୍ରେଣୀୟ ହରିଣ ଆଣିଥିଲେ । ବିଲାତରେ ଏହି ଶ୍ରେଣୀୟ ହରିଣମାନଙ୍କ ସଂଖ୍ୟା ବଢ଼ିବାରେ ଲାଗିଲା । ପରେ ଜଣାଗଲା, ଏହି ହରିଣମାନଙ୍କ ମାତୃଭୂମି ଚୀନ୍ ଦେଶରେ । ସେମାନଙ୍କ ବଂଶ ସମ୍ପୂର୍ଣ୍ଣ ଲୋପ ପାଇଛି । ଚୀନ୍ ସରକାରଙ୍କ ଅନୁରୋଧକ୍ରମେ ବିଲାତ ସରକାର ଦୁଇଟି ହରିଣ ସେମାନଙ୍କ ପୂର୍ବପୁରୁଷଙ୍କ ଦେଶକୁ ପଠାଇଦେଲେ ।

ଥରେ ଜଣେ ବନ୍ଧୁଙ୍କ ଘର ସାମ୍ନାରେ ଗୋଟିଏ ମ୍ୟାଗ୍ନେସିଆ ଫୁଲଗଛ ଦେଖି ମୁଁ କହିଲି, 'ଭାରତକୁ ଏଇ ସୁନ୍ଦର ଗଛଟି ନିଆଯିବା ଉଚିତ ।' ବନ୍ଧୁ ମୋ ମନ୍ତବ୍ୟ ଶୁଣି ହୋ ହୋ ହୋଇ ହସିଲେ । କହିଲେ – 'ଭାରତରୁ ହିଁ ଏ ଗଛଟି ବିଲାତକୁ ଆସିଛି ।' ଭାରତରେ କୌଣସି କୌଣସି ଅଞ୍ଚଳରେ ହୁଏତ ହିମାଳୟର ପାଦଦେଶରେ ଏଇ ଫୁଲଗଛଟି ଦେଖିବାକୁ ମିଳିପାରେ; କିନ୍ତୁ ବିଲାତର ଉଦ୍ୟାନମାନଙ୍କରେ ଏଇ ଭାରତୀୟ ବୃକ୍ଷଟି ବହୁଳ ଭାବେ ଦେଖିବାକୁ ମିଳୁଥିବାବେଳେ ଭାରତରେ ତାହା ଏକ ଦୁଷ୍ପ୍ରାପ୍ୟ ଓ ଦୁର୍ଲଭ ବସ୍ତୁରେ ପରିଣତ ହୋଇଛି ।

ସବୁଠାରୁ ଆମୋଦଦାୟକ କଥା ହେଉଛି, ବନ୍ୟ ପଶୁପକ୍ଷୀ ଓ ବୃକ୍ଷଲତା ସମ୍ପର୍କରେ ଏତେ ଆଗ୍ରହୀ ବିଲାତ ଦେଶର ଜଙ୍ଗଲରେ ଗୋଟିଏ ହେଲେ ହିଂସ୍ରଜନ୍ତୁ ନାହାନ୍ତି, ପ୍ରାକୃତିକ ଅରଣ୍ୟ ମଧ୍ୟ ପ୍ରାୟ ନାହିଁ । ମୋଟ ଉପରେ ହିଂସ୍ରଜନ୍ତୁମାନଙ୍କୁ କେବଳ ଚିଡ଼ିଆଖାନା ଓ ସଫାରୀ ଅର୍ଥାତ୍ (ପ୍ରାକୃତିକ ପରିବେଶରେ ଜନ୍ତୁମାନଙ୍କୁ ରଖାଯାଇଥିବା ସ୍ଥାନ)ରେ ଦେଖିବାକୁ ମିଳିବ । ସେହିପରି ବିଲାତରେ ଯାହାକୁ ଜଙ୍ଗଲ ବୋଲି କୁହାଯାଏ, ତାହା ଶହ ଶହ ବର୍ଷ ତଳେ ପ୍ରକୃତି ସୃଷ୍ଟି କରି ନ ଥିଲା, ଅଳ୍ପ କେତେବର୍ଷ ତଳେ ଦେଶର ବାତାବରଣ ବା (Environment) ବିଭାଗ ଅର୍ଥରେ ପ୍ରସ୍ତୁତ କରାଯାଇଥିଲା । ଭାରତରେ ଯେପରି ଅନେକ ହିଂସ୍ରଜନ୍ତୁ ପୂର୍ଣ୍ଣ ଜଙ୍ଗଲ ଅଛି, ବିଲାତରେ କିମ୍ବା ୟୁରୋପ୍‌ରେ ତାହା କଳ୍ପନା କରାଯାଇ ନ ପାରେ । ଫରାସୀ–ବିପ୍ଳବ ସମୟରେ ଅର୍ଥାତ୍ ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରେ ବିଲାତର ଶେଷତମ ହିଂସ୍ରଜନ୍ତୁ ଗଧିଆ (wolf)ର ବିଲୋପ ଘଟିଥିଲା । ମୋଟ ଉପରେ ବିଲାତର ପ୍ରତି ଇଞ୍ଚ ଜମିର ଯତ୍ନ ମଣିଷ ହିଁ ନିଏ ଏବଂ ମଣିଷର ଏହି ଅବାଧ ହସ୍ତକ୍ଷେପ ଫଳରେ ପ୍ରକୃତି ହୁଏତ ତା'ର ପ୍ରାକୃତିକତା ଅନେକ ପରିମାଣରେ ହରାଇଛି । ଇଂରେଜ କବି କୁପର୍‌ଙ୍କ ପ୍ରସିଦ୍ଧ ଉକ୍ତି – God made the country, but man made the town ତାଙ୍କ ନିଜ ଦେଶ ପ୍ରତି ଆଉ ପ୍ରଯୁଜ୍ୟ ବୋଲି ମନେହୁଏ ନାହିଁ ।

ଦେଶରେ ହିଂସ୍ରଜନ୍ତୁ ଓ ପ୍ରାକୃତିକ ଅରଣ୍ୟର ଅନୁପସ୍ଥିତି ହୁଏତ ଇଂରେଜ ଲୋକଙ୍କର ବନ୍ୟ ଜୀବନ ପ୍ରତି ପ୍ରଚଣ୍ଡ ଆଗ୍ରହର ଏକ ମୁଖ୍ୟ କାରଣ । ଦେଶରେ ମୋଟ୍‌ରେ ୧୫୬ଟି ସଫାରୀ ଓ ସରକାରୀ–ବେସରକାରୀ ଚିଡ଼ିଆଖାନା ଅଛି । କେତେକ ବ୍ୟକ୍ତି ତାଙ୍କର କ୍ଷୁଦ୍ର ଚିଡ଼ିଆଖାନା କରି ସେଥିରୁ ଅର୍ଥ ଉପାର୍ଜନ କରନ୍ତି । ଲଣ୍ଡନ୍ ଚିଡ଼ିଆଖାନାକୁ ତ ପୃଥିବୀର ସବୁଠାରୁ ଶ୍ରେଷ୍ଠ ଚିଡ଼ିଆଖାନା କୁହାଯାଏ । ହୁଏତ ତାହା ଠିକ୍ । ଏହି ଚିଡ଼ିଆଖାନାରେ ପୃଥିବୀର ବହୁ ଦେଶରୁ ସଂଗୃହୀତ ଦୁର୍ଲଭ ପଶୁପକ୍ଷୀ ଅଛନ୍ତି । ଚିଡ଼ିଆଖାନାର ପ୍ରବେଶ ଦ୍ୱାର ନିକଟରେ ଦୁଇଟି ପାଣ୍ଡା (ଧଳାମୁହାଁ ଭାଲୁ) ପ୍ରଥମେ ଦର୍ଶକମାନଙ୍କ ଦୃଷ୍ଟିରେ ପଡ଼ନ୍ତି । ଚୀନ୍ ଦେଶରୁ ଆନୀତ ଏଇ ପଶୁ ଦୁଇଟି ବିଲାତରେ ଖୁବ୍ ଜନପ୍ରିୟ । ଲଣ୍ଡନ୍ ସହରର ଟିଉବ୍ ଷ୍ଟେସନ୍‌ମାନଙ୍କରେ (ଭୂମି ତଳେ ଥିବା ରେଲ୍‌ଷ୍ଟେସନ୍) ସ୍ଥାନେ ସ୍ଥାନେ ଏଇ ଦୁଇଟି ପାଣ୍ଡାଙ୍କ ଛବି ତଳେ ଲେଖାଥିବାର ଦେଖାଯାଏ, 'ମୋ ନା ଚିଂ ଚିଂ ଓ, ମୋ ନା ଚିଆ ଚିଆଓ । ଆମ ସମସ୍ତେ ଆପଣଙ୍କୁ ଲଣ୍ଡନ୍ ଚିଡ଼ିଆଖାନାରେ ସାକ୍ଷାତ୍ କରିବାକୁ ଅପେକ୍ଷା କରିଛୁ ।' ପାଣ୍ଡା ଓ ଟେଡ଼ି ବିୟର୍ । (ଧଳା ଓ କଳା ମିଶା ଭାଲୁ) କଣ୍ଢେଇ ଶିଶୁମାନଙ୍କ ମଧ୍ୟରେ ଖୁବ୍ ଆଦରଣୀୟ । ଶିଶୁମାନେ ଗୋଟିଏ ଟେଡ଼ି ବିୟର୍ ବା ପାଣ୍ଡାର ତୂଳା କଣ୍ଢେଇ ଧରି ଟ୍ରାମ୍‌ରେ ବସି ବା ଶୋଇ ଯାଉଥିବା ଦୃଶ୍ୟ ଅତି ସାଧାରଣ । ଲଣ୍ଡନ୍ ଚିଡ଼ିଆଖାନାର ଅନ୍ୟାନ୍ୟ ଆକର୍ଷଣୀୟ ଜୀବଜନ୍ତୁଙ୍କ ମଧ୍ୟରେ ଧଳା ଭାଲୁ, ଗରିଲା, ସମୁଦ୍ର ସିଂହ (sea lion), ସିଲ୍, ପେଙ୍ଗୁଇନ୍ ପ୍ରଭୃତି ପ୍ରଧାନ । ବିଭିନ୍ନ ଜାତିର ମାଛ ଓ ସାପ ବାସ୍ତବିକ୍ ଏକାନ୍ତ ଦର୍ଶନୀୟ । ବିଭିନ୍ନ ରଙ୍ଗର ଯେତେ ସମନ୍ୱୟ (combination) କଳ୍ପନା କରାଯାଇପାରେ; ବୋଧହୁଏ ତାହା ମାଛ ଓ ସାପମାନଙ୍କଠାରେ ଦେଖିବାକୁ ମିଳିବ । ଲଣ୍ଡନ୍ ଚିଡ଼ିଆଖାନାରେ ଗୋଟିଏ ଅତି ଆକର୍ଷଣୀୟ ଅଂଶ ହେଲା ମାଙ୍କଡ଼ମାନେ ରହୁଥିବା ଅଞ୍ଚଳ । ମୂଷାର ଆକାରଠାରୁ ସିଂହର ଆକାରଯାଏଁ ସବୁ ପ୍ରକାର ମାଙ୍କଡ଼ ଏଠାରେ ଅଛନ୍ତି । ଅଧିକାଂଶ ଆଫ୍ରିକା ଏବଂ ଦକ୍ଷିଣପୂର୍ବ ଏସିଆରୁ ଆନୀତ । ଜଳ, ସ୍ଥଳ ଏବଂ ଆକାଶ – ତ୍ରିଭୁବନରେ ରହୁଥିବା ଜୀବଜନ୍ତୁମାନଙ୍କୁ ଦେଖି ମୋର ମନେହେଲା, ଯେପରି ତିନି ଶ୍ରେଣୀର ଜୀବଜନ୍ତୁଙ୍କ ମଧ୍ୟରେ ବିପୁଳ ସାମଞ୍ଜସ୍ୟ ଓ ସମାନ୍ତରାଳତା ନିହିତ ଅଛି । ଘୋଡ଼ା ଆକାରର ମାଛ (sea horse) ବା ସିଂହ ପରି ଦିଶୁଥିବା ଜଳଜନ୍ତୁ (sea lion) ଏଭଳି ସମାନ୍ତରାଳତାର ଉଦାହରଣ । × × ×

ବନ୍ୟ ଜୀବଜନ୍ତୁଙ୍କ ପ୍ରତି ସ୍ନେହ ଓ ଆଦରର ଚରମ ପରିଣତି ହେଲା ସିଂହ, ସାପ ପ୍ରଭୃତି ବିପଜ୍ଜନକ ପ୍ରାଣୀମାନଙ୍କୁ ପୋଷାରୂପେ ନିଜ ଘରେ ରଖିବା । କେହି କେହି ସିଂହଛୁଆ, ବାଘଛୁଆ ପ୍ରଭୃତିଙ୍କୁ ନିଜ ଘରେ ରଖି ନିଜର ପଡ଼ୋଶୀମାନଙ୍କ ଆଶଙ୍କାର କାରଣ ହେବାର ସମ୍ବାଦ ପ୍ରକାଶ ପାଇଥିଲା । ଅନେକେ ହୁଏତ ବର୍ତ୍ତମାନ ଚାହାନ୍ତି – ବିଲାତର ପ୍ରାକୃତିକ ପରିବେଶରେ (ସଫାରୀରେ ନୁହେଁ) କିଛି ହିଂସ୍ରଜନ୍ତୁ ରହନ୍ତୁ । ଥରେ କେହି ଜଣେ ଗୋଟିଏ ସାପ ଜଙ୍ଗଲରୁ ଧରିଲେ । ବିଲାତର ଜଙ୍ଗଲରେ ଆପାତତଃ ସାପ ନାହାନ୍ତି । ତେଣୁ ଏହି

ଦୁର୍ଲଭ ସାପଟିକୁ ଟେଲିଭିଜନ୍‌ରେ ଦେଖାଗଲା । ସାପଟିକୁ ଧରିଥିବା ଭଦ୍ରବ୍ୟକ୍ତି ସାପଟିକୁ ଅତି ଆଦରରେ ଆଉଁଶି ଆଉଁଶି କହୁଥାନ୍ତି, 'ତାକୁ ପୁଣି ଜଙ୍ଗଲରେ ଛାଡ଼ିଦେବୁ ।' ବନ୍ୟ ଜୀବନ ପ୍ରତି ସ୍ନେହର ଅନ୍ୟ ଏକ ନିଦର୍ଶନ ହେଲା, ଶିଳ୍ପୀ ଓ କଳାକାରମାନେ ବନ୍ୟ ଜୀବନକୁ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ ବସ୍ତୁ (motif) ଭାବେ ଗ୍ରହଣ କରିବା । ଅଧିକାଂଶ ଇଂରେଜ ଘରେ ବିଲେଇ, କୁକୁର, ଘୋଡ଼ା, ପେଚା ବା ଅନ୍ୟ କୌଣସି ପଶୁ ବା ପକ୍ଷୀଙ୍କର ପେଣ୍ଟିଂ କିମ୍ବା ଚୀନାମାଟି ବା ଅନ୍ୟ କୌଣସି ବସ୍ତୁରେ ପ୍ରତିମୂର୍ତ୍ତି ଦେଖିବାକୁ ମିଳେ । କେଜାଣି କାହିଁକି, ଭାରତୀୟ ଶିଳ୍ପୀମାନେ କୁକୁର, ବିଲେଇ ପ୍ରଭୃତିକୁ ସେମାନଙ୍କ ଶିଳ୍ପ ସୃଷ୍ଟିର ପ୍ରେରଣା ରୂପେ ପ୍ରାୟ ଗ୍ରହଣ କରନ୍ତି ନାହିଁ । ପେଚାକୁ ତ ଅଶୁଭ ଓ କୁତ୍ସିତ ବୋଲି ମନେକରାଯାଏ । ବିଲାତ ଓ ୟୁରୋପ୍‌ର ଶିଳ୍ପୀମାନେ ପେଚା ପ୍ରତି କାହିଁକି ଏତେ ଆକୃଷ୍ଟ, ଜଣେ ଭାରତୀୟ ପକ୍ଷରେ ବୁଝିବା ଟିକିଏ କଠିନ । ହୁଏତ ପକ୍ଷୀମାନଙ୍କ ମଧ୍ୟରେ ପେଚା ତାହାର ମୁଖର ଗଢ଼ଣ ଦୃଷ୍ଟିରୁ ଏତେ ସ୍ୱତନ୍ତ୍ର ବୋଲି । ତା'ଛଡ଼ା ଐତିହ୍ୟ, ସଂସ୍କୃତି ଓ ଜଳବାୟୁର ପାର୍ଥକ୍ୟ ହେତୁ ବିଲାତୀ ରୁଚି ଭାରତୀୟ ରୁଚିଠାରୁ ଅନେକ ସମୟରେ ଭିନ୍ନ । × × ×

ବିଲାତରେ ପଶୁପକ୍ଷୀମାନଙ୍କ ପରି ବୃକ୍ଷଲତାମାନଙ୍କର ମଧ୍ୟ ବେଶ୍ ଯତ୍ନ ନିଆଯାଏ । ଯେଉଁମାନଙ୍କ ଘର ସାମ୍ନାରେ କିଛି ଜମି ଅଛି, ସେମାନେ ନିଶ୍ଚିତଭାବେ ସେ ଜମିରେ ସୁନ୍ଦର ବଗିଚାଟିଏ ତିଆରି କରିଥାନ୍ତି । ସାଧାରଣତଃ ବିଲାତର ଘରଗୁଡ଼ିକ ଛୋଟ ଛୋଟ, ବଗିଚାଗୁଡ଼ିକ ମଧ୍ୟ ଅନୁରୂପ କ୍ଷୁଦ୍ରାକୃତି । ବିଲାତ ଗୋଟିଏ ଦ୍ୱୀପ ହୋଇଥିବାରୁ ତାହାର ସ୍ଥଳଭାଗ ସୀମିତ । ପୁଣି ବଡ଼ ଆକାରରେ ଘର ତିଆରି କଲେ ତାହାକୁ ଗରମ ରଖିବା ଖର୍ଚ୍ଚସାପେକ୍ଷ । ତେଣୁ ବିଲାତରେ ଘରଗୁଡ଼ିକ କ୍ଷୁଦ୍ର । ଘର ସଜାଇବାରେ ଇଂରେଜ ଲୋକଙ୍କ ଝୁଙ୍କ ଦେଖିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ । ଛୋଟିଆ ବଗିଚାଟିକୁ ସୁନ୍ଦର କରି ରଖିବାରେ ସତେଯେମିତି ପରିବାର ପରିବାର ମଧ୍ୟରେ ଅହରହ ପ୍ରତିଯୋଗିତା ଚାଲିଥାଏ । ଲନ୍‌ଟିକୁ ମସୃଣ ଓ ସବୁଜ ରଖିବା, ଋତୁ ପରିବର୍ତ୍ତନ ଅନୁସାରେ ଫୁଲଗଛସବୁ ବଦଳାଇବା, ପ୍ରତି ଗଛରେ କୀଟନାଶକ ଔଷଧ ସ୍ପ୍ରେ କରିବା ବଗିଚାରେ ନୋମ୍ [ଏକ ପ୍ରକାର କାଳ୍ପନିକ ବାମନ ଜାତୀୟ ମଣିଷ], ଠେକୁଆ, ଗୁଣ୍ଡୁଚିମୂଷା ପ୍ରଭୃତିଙ୍କ ମୂର୍ତ୍ତି ସଜାଇ ରଖିବାରେ ଇଂରେଜମାନେ ସେମାନଙ୍କର ବହୁ ସମୟ, ଶକ୍ତି ଓ ଅର୍ଥ ବ୍ୟୟ କରିଥାନ୍ତି । ବଗିଚା ପ୍ରସ୍ତୁତ କରିବା ଉପକରଣ ଯଥା – ଲାନ୍ ମାୱେର୍, କୋଡ଼ି, ଦା' ପ୍ରଭୃତି ପରିବାରର ଆବଶ୍ୟକୀୟ ସରଞ୍ଜାମ ମଧ୍ୟରେ ଯାଏ । ଯେଉଁମାନେ ଫ୍ଲାଟ୍‌ରେ ରହନ୍ତି, ବଗିଚା କରିବା ପାଇଁ ସେମାନଙ୍କ ସୁଯୋଗ ଅବଶ୍ୟ କମ୍, କିନ୍ତୁ ସେମାନେ କୁଣ୍ଡରେ କୌଣସି ନା କୌଣସି ବୃକ୍ଷ ବା ଲତା ନିଜ ଘର ସାମ୍ନା ବାଲକୋନିରେ ରଖିଥାନ୍ତି । ବିଲାତରେ ଏପରି ଘରଟିଏ ପାଇବା କଠିନ, ଯେଉଁ ଘରେ କୌଣସି ନା କୌଣସି ପଶୁପକ୍ଷୀ (ବିଶେଷତଃ କୁକୁର), ଫୁଲଗଛ ବା କ୍ୟାକ୍‌ଟସ୍ କିମ୍ବା କଣ୍ଢେଇ ନ ଥିବ ।

ବୃକ୍ଷଲତା ତଥା ବଗିଚା ପ୍ରତି ଇଂରେଜମାନଙ୍କ ସ୍ନେହର ବହୁ ଉଦାହରଣ ଦିଆଯାଇପାରେ । ସୁପର୍ ମାର୍କେଟ୍‌ମାନଙ୍କରେ ଯେଉଁଠି ଦାମିକା ପୋଷାକପତ୍ର, ଟେଲିଭିଜନ୍ ଓ ଟାଇପ୍ ରାଇଟର୍ ପ୍ରଭୃତି ବିକ୍ରି ହୁଏ, ସେଠାରେ ମଧ ଫୁଲ ଓ ଫଳର ମଞ୍ଜି ଏବଂ ଚାରାଗଛ ସବୁ ବିକ୍ରି ହେଉଥାଏ । ୧୯୭୪ରେ ବିଲାତରେ ସବୁଠାରୁ ବେଶି ବିକ୍ରି ହୋଇଥିବା (best seller) ବହିମାନଙ୍କ ମଧ୍ୟରେ ଗୋଟିଏ ଥିଲା ବଗିଚା ସମ୍ପର୍କରେ । ବାତାବରଣ ବିଭାଗର ମନ୍ତ୍ରୀ ଦେଶର ବଗିଚା ଓ ଜଙ୍ଗଲଗୁଡ଼ିକର ଯତ୍ନ ନିଅନ୍ତି । ନୂତନ ସହର ପରିକଳ୍ପନା କଲାବେଳେ ସହରରେ ବିକ୍ଷିପ୍ତ ଭାବେ ଛୋଟ ଛୋଟ ଜଙ୍ଗଲ ମଧ ସୃଷ୍ଟି କରାଯାଏ । କେଣ୍ଟ୍ ବିଶ୍ୱବିଦ୍ୟାଳୟର ଚାରିକଡ଼େ ଓକ୍, ପାଇନ୍, ବାଦାମ, ବ୍ଲାକ୍‌ବେରୀ ପ୍ରଭୃତି ଗଛର ସୁନ୍ଦର ଜଙ୍ଗଲଟିଏ ସୃଷ୍ଟି କରାଯାଇଛି ଓ ଛାତ୍ରମାନେ ଏଇ ଜଙ୍ଗଲ ମଧଦେଇ ଚଲା ବାଟରେ ଅନେକ ସମୟରେ ସହରକୁ ଯିବାଆସିବା କରନ୍ତି । ବର୍ଷା କାଳରେ ଜଙ୍ଗଲର କର୍ଦ୍ଦମାକ୍ତ ରାସ୍ତାରେ ଚାଲୁଥିବା ବେଳେ ଅସଂଖ୍ୟ ପକ୍ଷୀଙ୍କ କାକଳୀ ଶୁଣି ଭାରତର ନିଭୃତ ପଲ୍ଲୀ ହିଁ ମନେପଡ଼େ ।

ବିଲାତର ବଗିଚାଗୁଡ଼ିକ ଦେଖିଲେ ପ୍ରଥମେ ଦୃଷ୍ଟି ଆକର୍ଷଣ କରେ ତାହାରି ଉଜ୍ଜ୍ୱଳ ରଙ୍ଗବିନ୍ୟାସ (colourfulness), ଗ୍ରୀଷ୍ମପ୍ରଧାନ ଭାରତରେ ଯେପରି ଉଗ୍ରସୁବାସଯୁକ୍ତ ପୁଷ୍ପଗୁଡ଼ିକ ସହଜରେ ନାସିକାକୁ ଆମୋଦିତ କରନ୍ତି, ଶୀତପ୍ରଧାନ ବିଲାତର ପୁଷ୍ପମାନେ ସେପରି କରନ୍ତି ନାହିଁ । ମୋଟାମୋଟି ସେମାନେ ଗନ୍ଧହୀନ । ଗୋଲାପ ପରି କୌଣସି କୌଣସି ଫୁଲ ଅବଶ୍ୟ ଗନ୍ଧହୀନ ନୁହନ୍ତି; କିନ୍ତୁ ସେମାନଙ୍କ ଗନ୍ଧ ମୃଦୁ ଓ ନଗଣ୍ୟ; କିନ୍ତୁ ବିଲାତୀ ଫୁଲଗୁଡ଼ିକଙ୍କ ଉଜ୍ଜ୍ୱଳ ରଙ୍ଗର ବୈଚିତ୍ର୍ୟ ସହଜରେ ଚକ୍ଷୁକୁ ବିମୋହିତ କରେ । କୃତ୍ରିମ ପରାଗ ସଙ୍ଗମ କରାଇ ବିଲାତର ଉଦ୍ଭିଦବିତ୍ (botanist)ମାନେ ବହୁ ପ୍ରକାର ନୂତନ ତଥା ଅଧିକ ଆକର୍ଷଣୀୟ ଫୁଲ ସୃଷ୍ଟି କରିଛନ୍ତି । କ୍ୟାଣ୍ଟର୍‌ବରୀର ନର୍ସରୀମାନଙ୍କରେ ପ୍ରାୟ ତିନିଶହ ପ୍ରକାରର ଗୋଲାପ ଚାରା କିଣିବାକୁ ମିଳେ । ଗୋଲାପ ଫୁଲପାଇଁ ଅବଶ୍ୟ ବିଲାତରେ କ୍ୟାଣ୍ଟର୍‌ବରୀର ସୁଖ୍ୟାତି ଅଛି ।

ବିଲାତର ବଗିଚାଗୁଡ଼ିକର ଆଉ ଗୋଟିଏ ବୈଶିଷ୍ଟ୍ୟ ହେଲା, ବଗିଚାର ଜମିକୁ ଖାଲ ଢିପ ରଖିବା । ଭାରତରେ ସାଧାରଣତଃ ବଗିଚାକୁ ଏକ ସମତଳ ଭୂମିରେ ସଜ୍ଜିତ ରଖାଯାଏ; କିନ୍ତୁ ବିଲାତରେ ସେପରି କରାଯାଏ ନାହିଁ । ଖାଲ ଢିପ ଜମିର ଗଛଗୁଡ଼ିକୁ ସଜାଇଲେ ବଗିଚାଟି ଅନେକ ସମୟରେ ଗଭୀରତା ଓ ବିସ୍ତୃତିର ସୂଚନା ଦିଏ । ଏପରି ଉଦ୍ୟାନ ନିର୍ମାଣକୁ ଲ୍ୟାଣ୍ଡସ୍କେପ୍ ଗାର୍ଡ଼ନିଂ (landscape gardening) କୁହାଯାଏ । ଭାରତରେ ଲ୍ୟାଣ୍ଡସ୍କେପ୍ ବା ସ୍ଥଳଭାଗ ମୋଟାମୋଟି ଫ୍ଲାଟ୍ ବା ସମତଳ । ଏପରି ଜମି ଭାରତୀୟ ସୂର୍ଯ୍ୟାଲୋକର ଉଜ୍ଜ୍ୱଳତାରେ ହୁଏତ କେତେକାଂଶରେ କର୍କଶ ଓ ଚକ୍ଷୁପୀଡ଼କ । ବିଲାତର ଅସମତଳ (sloping) ଲ୍ୟାଣ୍ଡସ୍କେପ୍ ବର୍ଷା, କୁହୁଡ଼ି ଓ ବରଫରେ କିନ୍ତୁ ରହସ୍ୟମୟ ଏବଂ

ଚକ୍ଷୁ ଆମୋଦକ ମନେହୁଏ । ଭାରତ ଓ ବିଲାତର ଲ୍ୟାଣ୍ଡସ୍କେପ୍‌ର ଭିନ୍ନତା ଉଭୟ ଦେଶର ଉଦ୍ୟାନ ନିର୍ମାଣ ପଦ୍ଧତିକୁ ନିଶ୍ଚିତ ଭାବରେ ପ୍ରଭାବିତ କରିଛି । ତେବେ ବିଲାତୀ ଓ ଭାରତୀୟ ଉଦ୍ୟାନର ତୁଳନା କଲାବେଳେ ଏକଥା ମଧ୍ୟ ସ୍ମରଣ ରଖିବା ଉଚିତ ଯେ, ସଙ୍ଗୀତ ବା ରନ୍ଧନ ବିଦ୍ୟା ଭଳି ଉଦ୍ୟାନ ନିର୍ମାଣରେ ଭାରତୀୟମାନେ କେବେ ବିଶେଷ କୁଶଳତା ଲାଭ କରି ନ ଥିଲେ । କେବଳ ମୋଗଲମାନେ ଉତ୍ତରଭାରତରେ କେତେକ ସୁନ୍ଦର ଉଦ୍ୟାନ ନର୍ମାଣ କରିଥିବାର ଜଣାଯାଏ । କିନ୍ତୁ ମୋଗଲମାନେ ଥିଲେ ବିଦେଶୀ । ଅନ୍ତତଃ ସେମାନଙ୍କ ସାଂସ୍କୃତିକ ଜୀବନରେ ସେମାନେ ପାରସ୍ୟ ଓ ମଧ୍ୟପ୍ରାଚ୍ୟକୁ ଅନୁସରଣ କରିଥିଲେ । ଭାରତର ପରମ୍ପରା ଓ ସଂସ୍କୃତି ପ୍ରତି ସେମାନେ ବିଶେଷ ଆସ୍ଥାବାନ୍ ଥିବାର ପ୍ରମାଣ ନାହିଁ ।

ବଗିଚାଗୁଡ଼ିକର ଆକାର କ୍ଷୁଦ୍ର ହେବାସତ୍ତ୍ୱେ ଅନେକେ ବଗିଚାରେ ଫଳଗଛମାନ ମଧ୍ୟ ଲଗାଇଥାନ୍ତି । କଲମି କରାଯାଇଥିବା ଛୋଟ ଛୋଟ ଗଛରେ କମ୍ ସମୟରେ ଆପଲ୍, ଲେମ୍ବୁ ଓ କମଳା ପ୍ରଭୃତି ଫଳ ହୋଇଥାଏ । ଲେମ୍ବୁ ଓ କମଳା ପ୍ରଭୃତି ଅବଶ୍ୟ ବିଲାତର ଜଳବାୟୁରେ ହୁଏ ନାହିଁ, ତେବେ ଘର ଭିତରେ ଏକଜାତୀୟ ବାମନ ଲେମ୍ବୁ ଓ କମଳା ଗଛ ମାତ୍ର ଦୁଇ ତିନି ଫୁଟ ଉଚ୍ଚ ହେଲେ ଏଥିରେ ଛୋଟ ଛୋଟ ଫଳ ହୁଏ । ବିଲାତରେ ସବୁଠାରୁ ବହୁଳ ଉତ୍ପାଦିତ ଓ ବ୍ୟବହୃତ ଫଳ ହେଲା ଆପଲ୍ ବା ନାସ୍‌ପାତି । ସେପ୍ଟେମ୍ବର ବା ଅକ୍ଟୋବର ଅର୍ଥାତ୍ ଆମଦାନୀ ସମୟରେ ଏହାର ଦାମ୍ ବହୁତ କମିଯାଏ । ମୁଁ ପ୍ରଥମେ ଅକ୍ଟୋବର ମାସରେ ବିଲାତରେ ପହଞ୍ଚି ପାଚିଲା ଆପଲ୍‌ସବୁ ଗଛ ତଳେ ପଡ଼ିଥିବା ଓ ତାହାକୁ କେହି ଛୁଉଁ ନ ଥିବା ଦେଖି ଆଶ୍ଚର୍ଯ୍ୟ ହୋଇଯାଇଥିଲି । ଆପଲ୍ ଇଂରେଜମାନଙ୍କ ଖାଦ୍ୟରେ ଏକ ମୁଖ୍ୟ ଅଂଶ ଗ୍ରହଣ କରିଥାଏ । ଜାମ୍‌ଠାରୁ ଆରମ୍ଭ କରି ଆପଲ୍‌ପାଇ, ଆପଲ୍ ପୁଡ଼ିଂ ପର୍ଯ୍ୟନ୍ତ ବିଭିନ୍ନ ରୂପରେ ଏହା ବ୍ୟବହୃତ ହୁଏ । ଆପଲ୍ ରସରେ ମଧ୍ୟ ବିଭିନ୍ନ ମଦ୍ୟ ପ୍ରସ୍ତୁତ ହୁଏ । ଅନ୍ୟାନ୍ୟ ଫଳସବୁ ଯଥା – କଦଳୀ, କମଳା, ଲେମ୍ବୁ, ତରଭୁଜ, ଟମାଟୋ ପ୍ରଭୃତି ପ୍ରାୟ ଅନ୍ୟାନ୍ୟ ଦେଶରୁ ଆମଦାନୀ ହୁଏ । କମଳା, ଲେମ୍ବୁ ଓ ଟମାଟୋ ପ୍ରଭୃତିର ଦାମ୍ ଅପେକ୍ଷାକୃତ ବେଶି ଏବଂ ଅନେକ ସମୟରେ ପ୍ରତ୍ୟେକ ଫଳକୁ କାଗଜରେ ଗୁଡ଼ାଇ ଗୋଟି ଗୋଟି କରି ରଖାଯାଇଥାଏ । ବ୍ଲାକ୍‌ବେରୀ, ରାସ୍‌ପବେରୀ ପ୍ରଭୃତି କେତେକ କୋଳି ବିଲାତରେ ଚାଷ କରାଯାଏ ଏବଂ ସେଥିରୁ ଜାମ୍, ପୁଡ଼ିଂ ପ୍ରଭୃତି ପ୍ରସ୍ତୁତ ହୁଏ । ମୋଟ ଉପରେ ଭାରତ, ଆଫ୍ରିକା ବା ଦକ୍ଷିଣପୂର୍ବ ଏସିଆ ପରି ଗ୍ରୀଷ୍ମପ୍ରଧାନ ଦେଶମାନଙ୍କ ତୁଳନାରେ ବିଲାତ ବା ୟୁରୋପ୍‌ରେ ମିଳୁଥିବା ପନିପରିବା ବା ଫଳର ପ୍ରକାର କମ୍ । ମାଟି ତଳେ ହେଉଥିବା ପରିବା ଅର୍ଥାତ୍ ଆଳୁ, ପିଆଜ, ଗାଜର ବିଲାତରେ ଉତ୍ପାଦିତ ମୁଖ୍ୟ ପରିବା । ଶିମ୍ବ ଅବଶ୍ୟ ଅନେକ ପରିମାଣରେ ଉତ୍ପାଦିତ ହୁଏ । ଲଙ୍କାଜାତୀୟ ପରିବା ଓ ବିଭିନ୍ନ ପ୍ରକାର ଶାଗ ବିଲାତରେ ମିଳେ ନାହିଁ । ବିଭିନ୍ନ ପ୍ରକାର ପନିପରିବା ଓ ଫଳ ମିଳୁ ନ ଥିବାରୁ ଇଂରେଜମାନେ ଅନ୍ୟ ଦେଶରୁ ଆନୀତ ଟିନ୍‌ଡ୍ ଫ୍ରୁଟ୍ ଓ ଭେଜିଟେବୁଲ୍

ଉପରେ ଅନେକ ସମୟରେ ନିର୍ଭର କରନ୍ତି । ଇସ୍ରାଏଲ୍‌ର ଭେଣ୍ଡି, ମାଲେସିଆର ସପୁରୀ ପ୍ରଭୃତି ଟିନ୍‌ଡ୍‌ଫୁଡ୍ ବିଲାତରେ ବେଶ୍ କଟେ ।

ବିଲାତରେ କୃଷିବିଶାରଦମାନେ ଉନ୍ନତ ଧରଣର ଫଳ ଓ ପନିପରିବା ଉତ୍ପାଦନରେ ଅନେକ ଅଗ୍ରଗତି କରିଛନ୍ତି । ଉଦାହରଣସ୍ୱରୂପ, ଗୋଟିଏ ବିଲାତି ଟମାଟୋ ଗଛରୁ ଉତ୍ପାଦିତ ଫଳର ପରିମାଣ ପ୍ରାୟ କୋଡ଼ିଏଟି ଭାରତୀୟ ଟମାଟୋ ଗଛରୁ ଉତ୍ପାଦିତ ଫଳର ପରିମାଣ ସଙ୍ଗେ ପ୍ରାୟ ସମାନ । ବିଲାତି ଟମାଟୋ ଗଛଟି ଏତେ ଡେଙ୍ଗା ହୁଏ ଯେ ଏହାକୁ ରଞ୍ଜା ପୋତି ଲଟାଇବାକୁ ହୁଏ । ପାଣିରେ ମଧ୍ୟ ଟମାଟୋ ଗଛ ଲଗାଇ ଫଳ ଆମଦାନୀ କରାଗଲାଣି । ସାଧାରଣ ଲୋକେ ସେମାନଙ୍କ ବଗିଚାରେ ବିଭିନ୍ନ ଫୁଲ ଓ ଫଳଗଛ ଲଗାଇବାରେ ସମୟ ଓ ଅର୍ଥବ୍ୟୟ କରନ୍ତି; ଯେପରି ସେମାନଙ୍କ ବଗିଚାକୁ ଉପଭୋଗ କରନ୍ତି ସେହିପରି । ଥରେ ଚେଲ୍‌ସିରେ ଗୋଟିଏ ଫୁଲ ପ୍ରଦର୍ଶନୀରେ କର୍ସିକା ନାମରେ ପାରସ୍ୟ ଦେଶରୁ ଆନୀତ ଗୋଟିଏ ଗୋଲାପ ଫୁଲର ଚାରା ଗୋଟିକୁ ପାଞ୍ଚଶହ ପାଉଣ୍ଡ ଅର୍ଥାତ୍ ଆଠହଜାର ଟଙ୍କାରେ ବିକ୍ରି ହୋଇଥିଲା । ବଜାରରେ ଫଳର ଚାରାଗୁଡ଼ିକ ମଧ୍ୟ ଚଢ଼ା ଦାମ୍‌ରେ ବିକ୍ରି ହୁଏ । ନିଜ ବଗିଚାରେ ଫଳିଥିବା ଫଳ ବିଶେଷତଃ ଟମାଟୋ ସବୁକୁ ଅନେକ ନିଜ କାଚ ଝରକା ନିକଟରେ ଯେପରି ସଜାଇ ଥୋଇଥାନ୍ତି, ସେଥିରୁ ଇଂରେଜ ଲୋକଙ୍କ ଉଦ୍ୟାନ ପ୍ରୀତିର ଯଥେଷ୍ଟ ପ୍ରମାଣ ମିଳେ । × × ×

ପଶୁପକ୍ଷୀ, ବୃକ୍ଷଲତା ତଥା ବନ୍ୟଜୀବନ ପ୍ରତି ଇଂରେଜ ଲୋକଙ୍କ ସ୍ନେହ ଓ ଯତ୍ନ ଲକ୍ଷ୍ୟ କଲେ ବନ୍ୟ-ଜୀବନ ପ୍ରତି ଆମ ଲୋକଙ୍କ ଅବହେଳା ସ୍ପଷ୍ଟ ହୋଇଉଠେ । ମୋଟ ଉପରେ ଆମେ ଆମ ଚାରିପାଖର ପଶୁପକ୍ଷୀଙ୍କ ସମ୍ପର୍କରେ ଖୁବ୍ କମ୍ ଜାଣୁ ଓ ସେମାନଙ୍କ ସଂରକ୍ଷଣ ସମ୍ପର୍କରେ କେବେ ଚିନ୍ତା କରୁନା । ପଶୁପକ୍ଷୀମାନଙ୍କ ପ୍ରତି ଅଯଥା ନିଷ୍ଠୁର ବ୍ୟବହାର ଭାରତୀୟ ଚରିତ୍ରର ଏକ ବୈଶିଷ୍ଟ୍ୟରେ ପରିଣତ ହୋଇଛି । ଏଇ ଅଳ୍ପଦିନ ତଳର ଗୋଟିଏ ଘଟଣା ଲେଖୁଛି । ବାଣୀବିହାରଠାରୁ ଟାଉନ୍ ବସ୍ ଛାଡ଼ିବାକୁ ପ୍ରସ୍ତୁତ ହେଉଛି, ଏଇ ସମୟରେ କେତୋଟି ପିଲା ଦୁଇ ତିନୋଟି ବିଲେଇଛୁଆଙ୍କୁ ଆଣି ବସ୍ ଚକ ସାମ୍ନାରେ ରଖିଦେଲେ । ବରହମ୍‌ପୁରୀ ବସ୍ ଡ୍ରାଇଭର ଚିତ୍କାର କରିବାରେ ଲାଗିଥାଏ... ପାପ ହବ ହେ... ପାପ ହବ ହେ... ସେଗୁଡ଼ାଙ୍କୁ ହଟେଇ ଦିଅ... ଇତ୍ୟାଦି । ସୌଭାଗ୍ୟକ୍ରମେ ବିଲେଇ ଛୁଆଗୁଡ଼ିକୁ ବସ୍ ଚକ ତଳୁ ଉଦ୍ଧାର କରି ନିଆଗଲା; କିନ୍ତୁ ବସ୍ ଚକତଳେ ବିଲେଇ ଛୁଆକୁ ହତ୍ୟା କରି ସେଥିରୁ ଆନନ୍ଦ ଉପଲବ୍ଧି କରିବାର ପରିକଳ୍ପନା କେବଳ ଭାରତରେ ହିଁ କରାଯାଇପାରେ ।

ବସନ୍ତଋତୁରେ କେଉଁ କୋଇଲିଟିର ଡାକ ମଣିଷ ପ୍ରଥମେ ଶୁଣିପାରିଲା, ବିଲାତରେ ତାହାର ସମ୍ବାଦ ରଖାଯାଉଥିବାବେଳେ ଭାରତୀୟମାନେ ପଶୁପକ୍ଷୀମାନଙ୍କ ପ୍ରତି ଯେପରି ନୃଶଂସ ଆଚରଣ କରନ୍ତି, ତାହାର ସମ୍ବାଦ କେହି ରଖନ୍ତି ନାହିଁ ।

# ଶନିବାରରେ କ୍ୟାଣ୍ଟରବରୀ

ଅନ୍ୟ ଯେକୌଣସି ଦିନଠାରୁ ଶନିବାରଟା କ୍ୟାଣ୍ଟରବରୀରେ ସମ୍ପୂର୍ଣ୍ଣ ଭିନ୍ନ । ସପ୍ତାହର ଅବଶ୍ୟ ଉଇକ୍-ଏଣ୍ଡ ଦୁଇଦିନ-ଶନିବାର ଓ ରବିବାର; କିନ୍ତୁ ରବିବାରରେ ସବୁ ଦୋକାନ ବଜାର ବନ୍ଦ । ତେଣୁ ଶନିବାର ଦିନ ସହରର ହାଇଷ୍ଟ୍ରୀଟ୍ ଓ ପାର୍କସବୁରେ ଲୋକ ଗହଳି ଖୁବ୍ ବେଶି ବଢ଼ିଯାଏ । ମେନ୍ ମାର୍କେଟ୍ ରାସ୍ତା ଫୁଟ୍‌ପାଥ୍‌ରେ ବେଳେ ବେଳେ ଭିଡ଼ରେ ଚାଲି ହୁଏ ନାହିଁ । କାର୍ ପାର୍କରେ କାର୍ ରଖିବାକୁ ସ୍ଥାନ ମିଳେ ନାହିଁ । ସହରର ସବୁଠାରୁ ସୁନ୍ଦର ଓ ବୃହତ୍ ବଗିଚା ୱେଷ୍ଟଗେଟ୍ ପାର୍କରେ ବେଞ୍ଚ ସବୁ ଉଇକ୍ ଏଣ୍ଡ ଉପଭୋଗ କରୁଥିବା ଲୋକମାନଙ୍କ ଦ୍ୱାରା ଅଧିକୃତ ହୋଇଯାଏ । ମୋଟ ଉପରେ ଶନିବାର ଦିନ କ୍ୟାଣ୍ଟରବରୀରେ ଏକ ଉତ୍ସବର ବାତାବରଣ ସୃଷ୍ଟି ହୁଏ । ବଜାରରେ ସପିଂ କରିବାର ନ ଥିଲେ ମଧ୍ୟ ବହୁ ପରିବାର ଏଇ ବାତାବରଣ ଉପଭୋଗ କରିବାକୁ ସହର ବୁଲି ବାହାରନ୍ତି ।

ଇଂଲାଣ୍ଡର ଅନ୍ୟ ଯେକୌଣସି ସହରରେ ଶନିବାର ଦିନ ନିଶ୍ଚୟ କ୍ୟାଣ୍ଟରବରୀ ପରି ଉତ୍ସବର ବାତାବରଣ ସୃଷ୍ଟି ହେଉଥିବ । ଲଣ୍ଡନ୍ କଥା ତ ଛାଡ଼ ! ଲଣ୍ଡନ୍‌ର ମୁଖ୍ୟ ବ୍ୟବସାୟ କେନ୍ଦ୍ର ଅର୍ଥାତ୍ ସମସ୍ତ ସୁପର୍ ମାର୍କେଟ୍‌ମାନଙ୍କ ବାସସ୍ଥାନ ଅକ୍ସଫୋର୍ଡ୍ ଷ୍ଟ୍ରୀଟ୍‌ର ଲୋକ ଗହଳି ଦେଖିଲେ ମନେହେବ ସପିଂ କରିବା ପାଇଁ ନୁହେଁ ରାସ୍ତାରେ ଟ୍ରାଫିକ୍ ସମସ୍ୟା ସୃଷ୍ଟି କରିବାପାଇଁ ଏତେ ଲୋକ ନିଶ୍ଚୟ ଏକତ୍ରିତ ହୋଇଛନ୍ତି । ଲଣ୍ଡନ୍‌ର ଦକ୍ଷିଣପୂର୍ବରେ ଅବସ୍ଥିତ କ୍ୟାଣ୍ଟରବରୀ ଏଡ଼ିନ୍‌ବରା, ବ୍ରିଷ୍ଟଲ୍ ବା ବର୍ମିଂହାମ୍ ପରି ଏକ ବଡ଼ ସହର ନୁହେଁ; କିନ୍ତୁ ଦୁଇଟି କାରଣରୁ ଏଠାରେ ଉଇକ୍-ଏଣ୍ଡରେ ଲୋକ ଗହଳି ବଢ଼ିଯାଏ । ଇଂଲାଣ୍ଡର ସବୁଠାରୁ ବଡ଼ କ୍ୟାଥେଡ୍ରାଲ୍ ଦେଖିବା ପାଇଁ ଇଂଲାଣ୍ଡ ଓ କଣ୍ଟିନେଣ୍ଟରୁ ବହୁଯାତ୍ରୀ ଏଠାକୁ ଆସନ୍ତି । ପୁଣି କେଣ୍ଟ ବିଶ୍ୱବିଦ୍ୟାଳୟ ସ୍ଥାପିତ ହେବା ପରେ ଦେଶର ବିଭିନ୍ନ ସ୍ଥାନରୁ ବହୁ ଛାତ୍ର ଓ ଅଧ୍ୟାପକଙ୍କର ଏଠାରେ ସମାବେଶ ହୋଇଛି ।

ତେଣୁ ଶନିବାର ଦିନ କ୍ୟାଣ୍ଟରବରୀ ସହରର ହାଇଷ୍ଟ୍ରୀଟ୍‌ରେ ସାଧାରଣ ନାଗରିକଙ୍କ ଛଡ଼ା ବହୁ ଛାତ୍ରଛାତ୍ରୀ ଓ ପର୍ଯ୍ୟଟନକାରୀଙ୍କ ସମାଗମ ହୁଏ । ପର୍ଯ୍ୟଟନକାରୀମାନେ ଅଧିକାଂଶ ଫ୍ରାନ୍ସରୁ ଆସିଥାନ୍ତି । ସେମାନଙ୍କ ଚାଲିଚଳଣ ବେଶପୋଷାକରୁ ନୁହେଁ, ସେମାନଙ୍କ ଭାଷାରୁ ସେମାନେ ପର୍ଯ୍ୟଟନକାରୀ ବୋଲି ବୁଝିହୁଏ । କ୍ୟାଣ୍ଟରବରୀରୁ ଫ୍ରାନ୍ସ ମାତ୍ର ଦୁଇ ଘଣ୍ଟାର ବାଟ । ମଝିରେ ଇଂଲିଶ ଚାନେଲ୍ । କେବେ କେମିତି ଫ୍ରାନ୍ସରୁ ସ୍କୁଲ୍‌ପିଲାମାନେ ଏକ୍ସକର୍ସନ୍‌ରେ କ୍ୟାଣ୍ଟରବରୀ ଆସନ୍ତି । କାନ୍ଧରେ ବେଡ଼ିଂ ପକାଇ, ହାତରେ ଛୋଟ ଛୋଟ କ୍ୟାମେରା ଧରି, ସ୍କୁଲ୍ ପିଲାମାନେ କ୍ୟାଣ୍ଟରବରୀ ସହରରେ ବୁଲୁଥିବାର ଦୃଶ୍ୟ ଅସାଧାରଣ ନୁହେଁ । ପର୍ଯ୍ୟଟନକାରୀ ଓ ସାଧାରଣ ନାଗରିକମାନଙ୍କଠାରୁ ଛାତ୍ର-ଛାତ୍ରୀମାନଙ୍କୁ ଚିହ୍ନିବା ଅନେକ ସମୟରେ ବେଶ୍ ସହଜ । ଛାତ୍ର ଓ ଛାତ୍ରୀ ଉଭୟଙ୍କର ପ୍ରିୟ ପରିଧେୟ ଜିନ୍‌ପ୍ୟାଣ୍ଟ, ପୁଅମାନଙ୍କ ଲମ୍ବା ମୁଣ୍ଡବାଳ ଓ ପୁଅ ଓ ଝିଅମାନେ ପରସ୍ପର ଅଣ୍ଟାରେ ହାତ ଗୁଡ଼ାଇ ଚାଲିବାରୁ

ଛାତ୍ରଛାତ୍ରୀମାନଙ୍କୁ ମୋଟାମୋଟି ଚିହ୍ନି ହୁଏ । କେହି କେହି ଅବଶ୍ୟ ୟୁନିଭର୍‌ସିଟି ଅଫ୍ କେଣ୍ଟ ଲେଖାଥିବା ଗଞ୍ଜି ପିନ୍ଧି ସେମାନଙ୍କ ଛାତ୍ରତ୍ୱର ନିଃସନ୍ଦେହ ପରିଚୟ ଦେଉଥାନ୍ତି ।

ଶନିବାରର ଲୋକଗହଳି ଅନେକାଂଶରେ ସେଦିନର ପାଣିପାଗ ଉପରେ ନିର୍ଭର କରେ । ମନେହୁଏ, ସମସ୍ତେ ଯେପରି ଆସନ୍ତା ଉଇକ୍‌ଏଣ୍ଡର ପାଣିପାଗ ସମ୍ପର୍କରେ ଜାଣିବାକୁ ଉଦ୍‌ଗ୍ରୀବ ହୋଇ ଅପେକ୍ଷା କରିଥା'ନ୍ତି । ଦୁଇଦିନ ଆଗରୁ ଟେଲିଭିଜନ୍‌ରେ ଉଇକ୍‌ଏଣ୍ଡର ପାଣିପାଗ ସମ୍ପର୍କରେ ସୂଚନା ଦିଆଯାଏ । ଟେଲିଭିଜନ୍‌ରେ ଚାରୋଟି ଚାନେଲ୍ । ପ୍ରତି ଚାନେଲ୍‌ରେ ଦିନକୁ ଛଅଥର ହେଲେ ମୋଟରେ ଦିନକୁ ଚବିଶଥର କେବଳ ପାଣିପାଗ ସମ୍ପର୍କରେ ବୁଲେଟିନ୍ ପ୍ରଚାରିତ ହୁଏ । ଶନିବାର ଦିନ ଯଦି ଖରାପ ପାଗ ହେଲା, ସହରରେ ତା'ର ପ୍ରତିକ୍ରିୟା ଲକ୍ଷ୍ୟ କରିବା ଆଦୌ କଠିନ ହୁଏ ନାହିଁ । କଥା ଅଛି, ପରିଚିତ ବା ଅପରିଚିତ ଯେକୌଣସି ଇଂରେଜୀ ଲୋକ ସଙ୍ଗେ ଦୁଇଟି ବିଷୟରେ ନିରାପଦରେ ଆଲୋଚନା କରାଯାଇପାରେ – ଗୋଟିଏ ହେଲା, ଦିନର ପାଣିପାଗ, ଅନ୍ୟଟି – କୁକୁର । ଖରାପାଗ ହୋଇଥିଲେ ରାସ୍ତାରେ ଚାଲୁଥିବା ଅପରିଚିତ ଲୋକ କେହି କେହି ହଠାତ୍ 'ଗୁଡ୍ ମର୍ଣ୍ଣିଂ,' 'ଲଭ୍‌ଲିଡାଏ ଇଜିଣ୍ଟିଟ୍ ? (ଚମତ୍କାର ଦିନ, ନୁହେଁ ?) କହିବା ମୁଁ ଅନେକ ଥର ଶୁଣିଛି । ଦୋକାନରେ ସପିଂ କରୁଥିବାବେଳେ ସେଲ୍‌ସ୍‌–ଗାର୍ଲ୍‌ମାନେ ମଧ୍ୟ ସଉଦା ପ୍ୟାକିଂ କରୁଥିବା ସମୟରେ ଆପଣଙ୍କ ସଙ୍ଗେ କିଛି କଥା କହିବାକୁ ଚାହିଁଲେ ସେଇ ବାକ୍ୟଟି ଉଚ୍ଚାରଣ କରନ୍ତି – ଲଭ୍‌ଲି ଡାଏ... ।

ଇଂଲାଣ୍ଡ ଥଣ୍ଡା, କୁହୁଡ଼ି ଓ ବର୍ଷାର ଦେଶ । ତେଣୁ ଉଜ୍ଜ୍ୱଳ ସୂର୍ଯ୍ୟ କିରଣ ଦେଖିବା ପାଇଁ ସେଠାରେ ଲୋକେ ବ୍ୟାକୁଳ ଏବଂ ଉଇକ୍‌ଏଣ୍ଡରେ ଖରାପାଗ ହେଲେ ସେମାନେ ଅଧିକ ଖୁସି ହେବା ସ୍ୱାଭାବିକ । ଖରାପାଗ ହେଲେ କ୍ୟାଣ୍ଟର୍‌ବରୀ ମେନ୍‌ମାର୍କେଟ୍‌ରେ କେଣ୍ଟ–କାଉଣ୍ଟି କାଉନ୍‌ସିଲ୍ ପକ୍ଷରୁ ଏକ ବ୍ୟାଣ୍ଡ୍‌ପାର୍ଟି ଯନ୍ତ୍ର ସଙ୍ଗୀତ ପରିବେଷଣ କରନ୍ତି । କେବେ କେବେ, କେହି କେହି ଭାଲୁ (ଟେଡ଼ିବିୟର) ବା ଓ୍ୱମ୍ବଲ୍ (ଏକ କାଳ୍ପନିକ ଲମ୍ବାମୁହଁ ଜନ୍ତୁ)ର ପୋଷାକ ପିନ୍ଧି ପିଲାମାନଙ୍କୁ ଖୁସି କରିବାପାଇଁ ରାସ୍ତାରେ ବୁଲୁଥା'ନ୍ତି । ହାତରେ ଛୋଟ ଛୋଟ କାଠ ବାକ୍ସ ଧରି କୌଣସି ସଂସ୍ଥା ପାଇଁ ଚାନ୍ଦା ମାଗୁଥିବା ଲୋକମାନଙ୍କୁ ମଧ୍ୟ ଏଇ ଉଇକ୍‌ଏଣ୍ଡରେ ଦେଖିବାକୁ ମିଳେ । ବିଶେଷତଃ କ୍ୟାଣ୍ଟର୍‌ବରୀ କ୍ୟାଥେଡ୍ରାଲ୍‌ର ରକ୍ଷଣାବେକ୍ଷଣ ପାଇଁ ଅର୍ଥାଭାବ ହେଉଥିବାରୁ ବହୁ ସ୍ତ୍ରୀଲୋକ 'ନନ୍' ମାନଙ୍କପରି ଧଳା ପୋଷାକ ପିନ୍ଧି ମାର୍କେଟ୍‌ରେ ବୁଲି ଚାନ୍ଦା ସଂଗ୍ରହ କରିବା ଏଠାରେ ଏକ ସାଧାରଣ ଦୃଶ୍ୟ । ଥରେ ଗୈରିକ ଧୋତି ଓ ଶାଢ଼ି ପରିହିତ କେତେଜଣ ଇଂରେଜ–ହିନ୍ଦୁ ଗୀତା ଓ ଅନ୍ୟାନ୍ୟ ଧର୍ମଗ୍ରନ୍ଥ ବିକ୍ରି କରୁଥିବା ମୁଁ ଦେଖିଥିଲି । ସେମାନେ ବୋଧହୁଏ ଆନନ୍ଦ ମାର୍ଗର ସଭ୍ୟ । ଜଣେ ମୋ ପାଖକୁ ଆସି ମୋ ଆଡ଼କୁ ଗୀତାଟିଏ ବଢ଼ାଇ କହିଲା – 'ନିଅନ୍ତୁ, ଖୁବ୍ ଭଲ ।'

ସପ୍ତାହରେ ପାଞ୍ଚଦିନର ଅଫିସ୍ ବା ଅନ୍ୟାନ୍ୟ ବ୍ୟାବସାୟିକ କାର୍ଯ୍ୟ ପରେ ଶନିବାର ଓ ରବିବାର ସାଧାରଣ ଇଂରେଜ ଲୋକପାଇଁ ଯଥାର୍ଥରେ ଖୁବ୍ ମୂଲ୍ୟବାନ୍ । ଆମେ

ଭାରତୀୟମାନେ କାର୍ଯ୍ୟ ଓ ଅବସର ଭିତରେ ବିଶେଷ ପାର୍ଥକ୍ୟ ଦେଖୁ ନାହୁଁ । ତେଣୁ ଅଫିସ୍ କାର୍ଯ୍ୟ ଭିତରେ ଆମେ ଘଣ୍ଟା ଘଣ୍ଟା ବନ୍ଧୁମାନଙ୍କ ସହ ଗପସପ କରୁ । ସପ୍ତାହର ଯେକୌଣସି ଦିନ, ଯେକୌଣସି ସଂଖ୍ୟାରେ, ଯେକୌଣସି ସମୟରେ ଅତିଥିମାନେ ଆମ ଦ୍ୱାରରେ ଉପସ୍ଥିତ ହୁଅନ୍ତି । ଇଂଲାଣ୍ଡରେ କିନ୍ତୁ ପୂର୍ବରୁ ନ ଜଣାଇ କେହି କାହା ଘରକୁ ଆସିବା କିମ୍ୱା ସପ୍ତାହର ପାଞ୍ଚଦିନ ଭିତରେ କେହି କାହା କାର୍ଯ୍ୟରେ ବାଧାଦେବା କ୍ୱଚିତ୍ । ତେଣୁ ସବୁ ବନ୍ଧୁମିଳନ, ପିକ୍‌ନିକ୍ ବା ସ୍ଥାନ ପରିବର୍ତ୍ତନର ସମୟ ଉଇକ୍-ଏଣ୍ଡ୍ । କେହି କେହି ମାସ ମାସ ଆଗରୁ ଉଇକ୍-ଏଣ୍ଡର ପ୍ରୋଗ୍ରାମ୍ ସ୍ଥିର କରିଥାନ୍ତି । ମୁଁ ପ୍ରଥମେ କ୍ୟାଣ୍ଟରବରୀ ଆସିବା ପରେ ଲଣ୍ଡନ୍‌ର ଜଣେ ଓଡ଼ିଆ ବନ୍ଧୁଙ୍କ ସଙ୍ଗେ ଗୋଟିଏ ଉଇକ୍‌ଏଣ୍ଡ୍ କଟାଇବା ପାଇଁ ଟେଲିଫୋନ୍ କଲି । ସେ ମୋତେ ଦୁଃଖର ସହିତ ତିନିଚାରି ସପ୍ତାହ ଅପେକ୍ଷା କରିବାକୁ କହିଲେ । ସପ୍ତାହର ପାଞ୍ଚଦିନର ଅଫିସ୍ କାର୍ଯ୍ୟ ଭିତରେ ସମସ୍ତେ ହୁଏତ ଉଇକ୍-ଏଣ୍ଡର ପ୍ରୋଗ୍ରାମ୍ ସ୍ଥିର କରିଥାନ୍ତି ।

ଏତେ ଧରାବନ୍ଧା ପ୍ରୋଗ୍ରାମ୍ ଭିତରେ ଉଇକ୍-ଏଣ୍ଡ୍ ହୁଏତ ଉଇକ୍ ଏଣ୍ଡ୍ ହୋଇ ରହୁ ନ ଥିବ । ସିନେମା କିମ୍ୱା ଥିଏଟର୍ ଦେଖିବାକୁ, କୌଣସି ପ୍ରସିଦ୍ଧ ରେସ୍ତୋରାଁରେ ଡିନର୍ ଖାଇବାକୁ, ବସ୍‌ରେ କୌଣସି ସ୍ଥାନକୁ ଯାତ୍ରା କରିବାକୁ, ଆଗରୁ ଟିକେଟ ବୁକ୍ କରିବାକୁ ପଡ଼େ । ଉଇକ୍-ଏଣ୍ଡ୍ କଟାଇବାକୁ ଏତେ ପ୍ରତିଯୋଗିତା ଓ ଏତେ ଯୋଜନାର ସମ୍ମୁଖୀନ ନ ହୋଇପାରିଲେ ଚୁପ୍ ଚୁପ୍ ଘରେ ବସି ଟେଲିଭିଜନ୍ ଦେଖିବା ଛଡ଼ା ଉପାୟ ନାହିଁ । ହଠାତ୍ କେଉଁ ବନ୍ଧୁଙ୍କ ଦ୍ୱାର ଖଟ୍ ଖଟ୍ କଲେ, ସେ ନ ଥା'ନ୍ତି । ଟେଲିଫୋନ୍ କଲେ କେହି ରିସିଭ୍ କରନ୍ତି ନାହିଁ । ଥିଏଟର୍ ଦେଖିବାକୁ ଗଲେ ଶୁଣିବାକୁ ମିଳେ, 'ଆପଣ ଆଗରୁ ସିଟ୍ ରିଜର୍ଭ୍ କରିବା ଉଚିତ ଥିଲା ।'

କେବଳ ଇଂରେଜ ଲୋକଙ୍କର ସମଗ୍ର ଜୀବନ ଓ ଯୋଜନାବଦ୍ଧ, ଉଇକ୍-ଏଣ୍ଡ୍ ସେଥିରୁ ବାଦ୍ ଯିବାର କାରଣ ନାହିଁ । ଶିଶୁଟି ଜନ୍ମ ହେଲେ ମାଆକୁ ସରକାରୀ ଟଙ୍କା ମିଳେ, ପ୍ରାଥମିକ ଶିକ୍ଷା ମାଗଣା ଓ ବାଧ୍ୟତାମୂଳକ, ଚାକିରି ନ ମିଳିଲେ ସରକାର ବେକାରୀ ଭତ୍ତା ଦିଅନ୍ତି, ବୁଢ଼ାବୁଢ଼ୀମାନଙ୍କର ନିଜର କେହି ନ ଥିଲେ ଭରଣ ପୋଷଣର ଦାୟିତ୍ୱ ସରକାରଙ୍କର । ଭାରତୀୟ ସମାଜରେ ଜନ୍ମହେଲେ ଶିଶୁଟି ଯେପରି ତା'ର ନିଜ କର୍ମ ନେଇ ଆସିଥାଏ, ଇଂରେଜ ସମାଜରେ ସେପରି ହୁଏ ନାହିଁ । ଇଂରେଜ ସମାଜ ଶିଶୁଟିର 'କର୍ମ' ପୂର୍ବରୁ ନିର୍ଦ୍ଦିଷ୍ଟ କରି ରଖିଥାଏ । ତେଣୁ ଇଂରେଜ ଶିଶୁଟି ନିରକ୍ଷର ରହିପାରିବ ନାହିଁ କିମ୍ୱା ଭୋକରେ ବା ଚିକିତ୍ସା ଅଭାବରେ ରାସ୍ତାରେ ପଡ଼ି ମରିପାରିବ ନାହିଁ । ଏପରି ସମାଜରେ ସମୟ ମଧ୍ୟ ଅସୀମ ଅନନ୍ତ ନୁହେଁ କିମ୍ୱା ଜୀବନରେ କିଛି ପାଇବା ପାଇଁ ଏ ଜନ୍ମରେ ନ ହେଲେ ଆସନ୍ତା ଜନ୍ମଯାଏଁ, ଆସନ୍ତା ଜନ୍ମରେ ନ ହେଲେ ତା ପରବର୍ତ୍ତୀ ଜନ୍ମଯାଏଁ ଅପେକ୍ଷା କରିବାରେ କେହି ବିଶ୍ୱାସ କରନ୍ତି ନାହିଁ । ଉଇକ୍-ଏଣ୍ଡରେ ଇଂରେଜ

ଲୋକଙ୍କ କାର୍ଯ୍ୟବ୍ୟସ୍ତତା ଦେଖିଲେ ହିଁ ବୁଝି ହୁଏ ଇଂଲାଣ୍ଡରେ ସମୟ ସମ୍ପୂର୍ଣ୍ଣ ଯୋଜନାବଦ୍ଧ ଏବଂ ସମୟର ସମ୍ପୂର୍ଣ୍ଣ ସଦ୍‌ବ୍ୟବହାର କରିବା ପାଇଁ ସେଠାରେ ସମସ୍ତେ ବଦ୍ଧପରିକର ।

ମୋର ପଡ଼ୋଶୀ ମିଃ ୟାର୍‌ଉଡ଼୍ ବା ମୋ ଘରଠାରୁ ଅଳ୍ପ ଦୂରରେ ରହୁଥିବା ମିଃ ଗୋଲ୍ଡ୍ ସ୍ୟାକ୍ ପ୍ରତି ଶନିବାର ଦିନ ସକାଳୁ ନିୟମିତ କ୍ୟାଣ୍ଟର୍‌ବରୀ ମେନ୍ ମାର୍କେଟ୍‌ରେ ବୁଲନ୍ତି ନାହିଁ କିମ୍ବା ସିନେମା ଥିଏଟର୍ ଦେଖିବାକୁ ବା ପିକ୍‌ନିକ୍ କରିବାକୁ ବିଶେଷ ଆଗ୍ରହ ପ୍ରକାଶ କରନ୍ତି ନାହିଁ । ସେମାନେ ମଧ୍ୟବୟସ୍କ ଏବଂ ହୁଏତ ଲୋକ ଗହଳି ମଧ୍ୟରେ ଏତେ ସମୟ କଟାଇବାରେ ଟିକିଏ କ୍ଳାନ୍ତି ଅନୁଭବ କରନ୍ତି । ସେମାନଙ୍କ ଉଇକ୍-ଏଣ୍ଡର କିନ୍ତୁ ସେମାନେ ସମ୍ପୂର୍ଣ୍ଣ ସଦ୍‌ବ୍ୟବହାର କରନ୍ତି । ମିଃ ୟାର୍‌ଉଡ଼୍ ନ୍ୟାସ୍‌ନାଲ୍ ହେଲ୍‌ଥ୍ ସର୍ଭିସ୍‌ରେ ଜଣେ ଡାକ୍ତର । ନିୟମିତ ହସ୍‌ପିଟାଲ୍ ଯିବା ଛଡ଼ା ତାଙ୍କର ଅନ୍ୟ ଦୁଇଟି ଆଗ୍ରହ ହେଲା, କାଠ କାମ ଓ ବଗିଚା । ଶନିବାର ଦିନ ସେ ତାଙ୍କ ଘର ସାମ୍ନାରେ ପ୍ରାୟ ଅଶୀ ବର୍ଗ ଫୁଟ ବିଶିଷ୍ଟ ବଗିଚାଟିରେ ଲନ୍ ମାଓ୍ୱେର୍‌ରେ ଘାସ କାଟନ୍ତି କିମ୍ବା ଫୁଲଗଛଗୁଡ଼ିକର ଯତ୍ନ ନିଅନ୍ତି । ସ୍ତ୍ରୀ ମାର୍ଗାରେଟ୍ ଗମ୍ଭୀର ମୁଖରେ ସ୍ୱାମୀଙ୍କୁ ସାହାଯ୍ୟ କରନ୍ତି । ଛୋଟ ଝିଅ ଦୁଇଟି ଘର ସାମ୍ନା ଫୁଟ୍‌ପାଥିରେ ଟୟପ୍ରାମ୍ ଠେଲି କିମ୍ବା ସେମାନଙ୍କ ପ୍ଲାଷ୍ଟିକ୍ କଣ୍ଢେଇଗୁଡ଼ିକ ନେଇ ଖେଳିବାରେ ଲାଗିଯାନ୍ତି । ୟାର୍‌ଉଡ଼୍‌ଙ୍କ ଘର ପଛ ବଗିଚା ଅର୍ଥାତ୍ ବ୍ୟାକ୍ ଗାର୍ଡ଼ନ୍‌ରେ ସେ ଅନେକ ପନିପରିବା ଲଗାଇଥାନ୍ତି – ଆଳୁ, ଟମାଟୋ, ବନ୍ଧାକୋବି, ଲେଟ୍ୟୁସ୍, ର୍‌ୟାସ୍ପ୍‌ବେରୀ ଶିମ୍ବ । ଋତୁ ଅନୁସାରେ ଫଳ । ଶନିବାର ହେଲେ ଦିନସାରା ଛୋଟ ବଗିଚାଟିରେ ସେ ଏପଟ ସେପଟ ହେବା ଦେଖାଯାଏ । ଗଛ ମୂଳରୁ ଶୁଖିଲାପତ୍ର ଗୋଟେଇବା, ଗଛରେ କୀଟନାଶକ ଔଷଧ ସ୍ପ୍ରେ କରିବା, ଖରାହେଲେ ଗଛ ଉପରେ ଘୋଡ଼ାଇବା ଏମିତି କାମରେ ତାଙ୍କର ଉଇକ୍-ଏଣ୍ଡର ଅଧିକାଂଶ ସମୟ କଟେ । ଟି-ଟାଇମ୍ ହେଲେ । ମାର୍ଗାରେଟ୍ ଦୁଇଟି ବଡ଼ ଗାର୍ଡେନ୍ ଚେୟାର୍ ଓ ଦୁଇଟି ଛୋଟ ଗାର୍ଡେନ୍ ଚେୟାର୍ ଆଣି ବଗିଚାରେ ପକାନ୍ତି । ୟାର୍‌ଉଡ଼୍ ପରିବାର ଚା'ପାନ ସହିତ ସେମାନଙ୍କ ବଗିଚାର ସୌନ୍ଦର୍ଯ୍ୟ ଓ ସମୃଦ୍ଧି ଉପଭୋଗ କରନ୍ତି ।

କୌଣସି କୌଣସି ଉଇକ୍-ଏଣ୍ଡରେ ଡାକ୍ତର ୟାର୍‌ଉଡ଼୍ କେତୋଟି କାଠପଟା ବା ଡାବଲ ଓ କରତ, ନିହାଣ ପ୍ରଭୃତି ନେଇ କିଛି ଗୋଟାଏ କାମରେ ଲାଗିଯାନ୍ତି । ଦିନସାରା ଠକ ଠକ, କର୍‌ର୍ କର୍‌ର୍ ଶବ୍ଦ ଶୁଭୁଥାଏ । ଥରେ ଡାକ୍ତର ୟାର୍‌ଉଡ଼୍ ହସପିଟାଲରୁ ଚାରି ପାଞ୍ଚଦିନ ଛୁଟି ନେଇଥିଲେ । ବୋଧହୁଏ ସେ ପାଞ୍ଚଦିନ ସେ ମୋଟେ ଘରୁ ବାହାରକୁ ଯାଇ ନ ଥିଲେ । ପାଞ୍ଚଦିନର ଛୁଟି ବିନିମୟରେ ସେ ତାଙ୍କର ଘର ପାଇଁ ପ୍ରସ୍ତୁତ କଲେ ଦୁଇଟି ସୁନ୍ଦର ଥାକ ବା ସେଲ୍‌ଫ ।

ମିଃ ଗୋଲ୍ଡ୍‌ସ୍ୟାକ୍ ଜଣେ ବଢ଼େଇ । ଶନିବାର ସକାଳୁ ସପିଂ କରିବା ପାଇଁ ମେନ୍ ମାର୍କେଟ୍‌କୁ ଗଲାବେଳେ ମୁଁ ଦେଖେ, ସେ ତାଙ୍କ ଘର ସାମ୍ନାର ଗରାଜ୍‌ର କିଛି ଗୋଟାଏ କାମରେ ବ୍ୟସ୍ତ ଥା'ନ୍ତି । କେବେ କାର୍-ତଳେ ଚିତ୍‌ହୋଇ ଶୋଇ, କେବେ ଛୋଟ ଷ୍ଟୁଲ୍

ଉପରେ ବସି ସେ ତାଙ୍କର ମୋଟରଗାଡ଼ି ବା ସାଇକେଲ୍‌ର କୌଣସି ମରାମତି କରୁଥାନ୍ତି । ଶନିବାର ଓ ରବିବାର ଦୁଇଦିନ ବଢ଼େଇ କାମରୁ ଅବସର ମିଳିଲେ ସେ ସମୟ କଟାନ୍ତି ତାଙ୍କର ପ୍ରିୟ ଗରାଜ୍‌ରେ । ଗରାଜ୍‌ରେ ସଜ୍ଜିତ ହୋଇ ରହିଥିବା ଅସଂଖ୍ୟ ଯନ୍ତ୍ରପାତିକୁ ଦେଖିଲେ ତାଙ୍କର କୌଣସି ନା କୌଣସି କାମ ମନେ ପଡ଼ିଯାଏ । ଯନ୍ତ୍ରପାତିର ଦୁନିଆରେ ସମୟ କଟାଇବା ତାଙ୍କର ଏକ ବିଳାସ ! × × ×

ଅନ୍ୟ ଅନେକଙ୍କପରି ଶନିବାର ଦିନ ଟ୍ରଲି ନେଇ ସପିଂ କରିବାକୁ ଯିବା ମୋର ଥିଲା ନିୟମିତ ଅଭ୍ୟାସ । ଟେସ୍‌କୋ ଏକ ସମବାୟ ଦୋକାନ । ତେଣୁ ସେଠାରେ ଜିନିଷପତ୍ରର ଦରଦାମ୍ ଟିକିଏ କମ୍ । ଡେଲିକୋଟେସନ୍‌ରେ ଭାରତୀୟ ମସଲା, ଆଚାର, ପାମ୍ପଡ଼ ପ୍ରଭୃତି ଖୁଚୁରାରେ ମିଳେ । ରାସ୍ତାରେ, ଟେସ୍‌କୋରେ କିମ୍ବା ଡେଲି କୋଟେସନ୍‌ରେ କୌଣସି ବନ୍ଧୁଙ୍କ ସହିତ ଦେଖା ହୋଇଯାଏ ।

'ହାଓ ୟୁ ?', 'ଫାଇନ୍, ଥ୍ୟାଙ୍କ୍ ୟୁ ।'

ଅନେକ ସମୟରେ କଥାବାର୍ତ୍ତା ଆଉ ଅଧିକ ଆଗାଏ ନାହିଁ । ଛୁଟିଦିନ ହେଲେ ବି ସମସ୍ତଙ୍କ ପ୍ରୋଗ୍ରାମ୍ ଆଗରୁ ନିର୍ଦ୍ଦିଷ୍ଟ । ତେଣୁ ବିନା କାରଣରେ କାହାକୁ ବାଟରେ ଅଟକାଇ ଗପିବା ଅଭଦ୍ରତା । ହାତରେ ସମୟ ଥିଲେ ରାସ୍ତା କଡ଼ରେ ବେଞ୍ଚ୍ ଉପରେ ବସି ଟିନ୍‌ଡ୍‌ଲେମୋନେଡ୍ ବା କୋକାକୋଲା ବା ଅନ୍ୟ କୌଣସି ଡ୍ରିଙ୍କ୍ ପିଇବା, ରାସ୍ତାର ଚଳମାନ୍ ମଣିଷ ସ୍ରୋତକୁ ଲକ୍ଷ୍ୟ କରିବା କିମ୍ବା ବେଞ୍ଚ୍ ପଡ଼ିଥିବା ସ୍ଥାନମାନଙ୍କରେ ପାଉଁରୁଟି ଟୁକୁରା ଆଶାରେ ଏକତ୍ରିତ ଅସଂଖ୍ୟ ପାରାଙ୍କୁ ନିରୀକ୍ଷଣ କରିବାରେ ମୁଁ ଘଣ୍ଟା ଘଣ୍ଟା ସମୟ କଟାଏ । ଆପାତତଃ ବହୁ ଇଂରେଜ ଭଦ୍ରବ୍ୟକ୍ତି ଓ ଭଦ୍ରମହିଳା ମଧ୍ୟ ତାହାହିଁ କରନ୍ତି । ଅନେକେ ରାସ୍ତାକଡ଼ ବେଞ୍ଚ୍ ଉପରେ ବସି ସେମାନଙ୍କ ଲଞ୍ଚ୍ ଖାଇ ନିଅନ୍ତି । ସାମାନ୍ୟ ସାଣ୍ଡୱିଚ୍ ଓ ଟିନ୍‌ଡ୍ ଡ୍ରିଙ୍କ୍ । ପାଞ୍ଚ ମିନିଟ୍‌ରେ ଲଞ୍ଚ୍ ଶେଷ । ଖରାପାଗ ହୋଇଥିଲେ ରାସ୍ତାକଡ଼ର ବେଞ୍ଚର ସ୍ଥାନ ମିଳେ ନାହିଁ । ଶନିବାରରେ ଖରାପାଗ ହୋଇଥିଲେ ଘର ବାହାରେ ସମୟ କଟାଇବାର ସୁବର୍ଣ୍ଣ ସୁଯୋଗ ହରାଇବାକୁ କେହି ଯେମିତି ପ୍ରସ୍ତୁତ ନୁହନ୍ତି । ଟେଲିଭିଜନ୍‌ରେ ଗୋଟିଏ ଜନପ୍ରିୟ ଗୀତର ପ୍ରଥମ ବାକ୍ୟଟି ହେଲା – 'ସନ୍‌ସାଇନ୍ ସଟର୍‌ଡେ... ।'

ସପିଂ କରିବାକୁ ଗଲାବେଳେ ମୁଁ ଅନେକ ସମୟରେ ଭାଲ୍ ରୁମ୍‌ରେ ପହଞ୍ଚେ । ତା'ର ଘର ମେନ୍‌ରୋଡ୍ ଉପରେ । କେବେ କେବେ ସେ ଯାଇଥାଏ ଚାର୍ଥମ୍‌କୁ, ତା' ଗାର୍ଲଫ୍ରେଣ୍ଡକୁ ଦେଖିବାକୁ, କିନ୍ତୁ ଅଧିକାଂଶ ସମୟରେ ସେ ରୁମ୍‌ରେ ଥାଏ । ବେଳେ ବେଳେ ଉଇକ୍-ଏଣ୍ଡ କଟାଇବାକୁ ତା'ର କେହି ବନ୍ଧୁ ତା ସହିତ ରହୁଥା'ନ୍ତି । ନିଜ ଭଡ଼ା ରୁମ୍‌ରେ ଅନ୍ୟ କାହାକୁ ରଖିବା ବେଆଇନ୍; କିନ୍ତୁ ଉଇକ୍-ଏଣ୍ଡରେ ଅନେକ ସେପରି ଆଇନ୍‌କୁ ମାନନ୍ତି ବୋଲି କୁହାଯାଇପାରିବ ନାହିଁ । ଭାଲ୍‌ର ଅନେକ ବନ୍ଧୁବାନ୍ଧବ ମରିସସ୍‌ରୁ ଆସି ଇଂଲାଣ୍ଡର ହସ୍‌ପିଟାଲ୍‌ମାନଙ୍କରେ ନର୍ସ୍‌କାମ କରନ୍ତି । ସେମାନଙ୍କ ମଧ୍ୟରୁ ଦୁଇଜଣଙ୍କ ସହିତ ମୋର ଭଲ

ବନ୍ଧୁତା ହୋଇଥିଲା – ଗାଡ୍ ଓ ବେନ୍ । ଗାଡ୍ କ୍ୟାଣ୍ଟରବରୀରୁ ଅଳ୍ପ ଦୂରରେ ଗୋଟାଏ ମେଣ୍ଟାଲ୍ ହସ୍‌ପିଟାଲ୍‌ରେ ମେଲ୍ ନର୍ସ । ଅନେକ ଶନିବାର ସେ ଭାଲ୍ ସଙ୍ଗେ କଟାଏ । ଭାଲ୍ ଓ ସେ ପ୍ରାୟ ଦିନ ଏଗାରଟାରେ ଉଠନ୍ତି, ଉଠିସାରି ଯା'ନ୍ତି ସପିଂ କରିବାକୁ । ଦିନସାରା ଟେଲିଭିଜନ୍ ଦେଖିବା ଓ ସନ୍ଧ୍ୟାରେ ସ୍ଥାନୀୟ କ୍ଲବ୍‌ରେ ଲାଗା ବିୟର୍ ବା ହୁଇସ୍କି ପିଇବାରେ ସେମାନଙ୍କର ଉଇକ୍-ଏଣ୍ଡଟି କଟେ । ଟେଲିଭିଜନ୍ ଓ ପବ୍ ନ ଥିଲେ ଇଂଲାଣ୍ଡରେ ଅଧିକାଂଶ ଲୋକ ଉଇକ୍-ଏଣ୍ଡ୍ କିପରି କଟାନ୍ତେ, କଳ୍ପନା କରିବା କଠିନ ।



## ସୁନ୍ଦରୀ ଇସାବେଲାଙ୍କ କୁତ୍ସିତ ରୂପ

ରାଦାର୍‌ଫୋର୍ଡ୍ କଲେଜରେ ସବଇଓ୍ୱାର୍ ତକ୍ୱି ହାସାନ୍‌ଙ୍କ ରୁମ୍‌ରେ ଆଲୋଚନା ଚାଲିଥିଲା । ବାହାରେ ଜାନୁୟାରୀର ପ୍ରଚଣ୍ଡ ଥଣ୍ଡା । ସବଇଓ୍ୱାର୍ ଇଲେକ୍‌ଟ୍ରିକ୍ କେଟ୍‌ଲିରେ ପାଣି ଗରମ କରୁଥିଲେ, ଗରମପାଣିକୁ କପ୍‌ରେ ଢାଳି ପ୍ରତି କପ୍‌ରେ ଟି-ବ୍ୟାଗ୍ ପକାଉଥିଲେ । ଆମେ ପ୍ରତି ଘଣ୍ଟାରେ ଥରେ ଲେଖାଏଁ ଚା' ପିଉଥିଲୁ । ଖ୍ରୀଷ୍ଟମାସ୍ ଛୁଟି ପାଇଁ ପ୍ରାୟ ସମସ୍ତ ଛାତ୍ରଛାତ୍ରୀ ନିଜ ନିଜ ଘରକୁ ଯାଇଥିଲେ । ଆମେ କେତେଜଣ ଅଣଇଂରେଜ ଛାତ୍ର ଗୋଟିଏ ରୁମ୍‌ରେ ବସି ଆଲୋଚନା କରୁଥିଲୁ ।

ଆଲୋଚନାଟି ଆରମ୍ଭ ହେଲା ନର୍‌ଗିସ୍‌ର ନାଆଁରୁ । ମେରିଆ ଇସାବେଲା ପ୍ରଥମେ ସାଙ୍ଗରେ ଆସିଥିବା ତା' ବନ୍ଧୁର ପରିଚୟ ଦେଲା, 'ଦିସ୍ ଇଜ୍ ନର୍‌ଗିସ୍' । ମୁଁ ମନ୍ତବ୍ୟ କଲି, 'ବାଃ, ସୁନ୍ଦର ନାଆଁଟିଏ, ନର୍‌ଗିସ୍ ଅର୍ଥ ଫୁଲ ।'

ନର୍‌ଗିସ୍ ଆପାତତଃ ତା' ନାଆଁର ମାନେ ଶୁଣି ଖୁସୀ ହେଲା । ସେ ଆସିଛି ଦକ୍ଷିଣ ଆଫ୍ରିକାରୁ, ଏଠାରେ ଅଣ୍ଡର୍ ଗ୍ରାଜୁଏଟ୍ ଛାତ୍ରୀ । ଦେଖିବାକୁ କଳା, ଫୁଲ୍‌ପ୍ୟାଣ୍ଟ୍ ଓ ସାର୍ଟ୍ ପିନ୍ଧିଛି, ମୁଣ୍ଡବାଳ ବବ୍‌ଡ୍ । ଦେଖିବାକୁ ସୁନ୍ଦରୀ ନୁହେଁ, କିନ୍ତୁ କଥାବାର୍ତ୍ତା ମାର୍ଜିତ ଓ ରୁଚିକର । ମୂଳତଃ ସେ ଗୁଜରାଟୀ ଭାରତୀୟ । ଏବେବି ଘରେ କଚ୍ଛି ଭାଷା କହେ ।

ମେରିଆ କହିଲା, 'ତୁମର ନାଆଁଗୁଡ଼ିକ ବେଶ୍ ପୋଏଟିକ୍ । ହୁଏତ ତୁମର ନାଆଁଗୁଡ଼ିକର କୌଣସି ନା କୌଣସି ଅର୍ଥ ଅଛି; କିନ୍ତୁ ଆମ ନାଆଁ ସବୁର ଅନେକ ସମୟରେ ଅର୍ଥ ନ ଥାଏ ।'

ନର୍‌ଗିସ୍ ମେରିଆକୁ ସମର୍ଥନ କଲା, 'ଇଂରେଜ ନାଆଁଗୁଡ଼ିକ ସତରେ ବଡ଼ ବିଚିତ୍ର । ଏଇ ଯେମିତି ଷ୍ଟୋନ୍ ହାଉସ୍ (ପଥର ଘର), ଲଂଫେଲୋ (ଡେଙ୍ଗା ଲୋକ), ଡ୍ରିଙ୍କ୍ ଓ୍ୱାଟର୍ (ପାଣିପିଆ) ।'

ମୁଁ କହିଲି , 'ଭାରତରେ ଅନେକଙ୍କ ନାମ ହିନ୍ଦୁ ଦେବତାଙ୍କର । ସେମିତି ମୋ ନିଜ ନାଆଁ ।'

ଆଲୋଚନାଟି ଆରମ୍ଭ ହେଲା ବେଶ୍ ଲଘୁ ଭାବରେ; କିନ୍ତୁ ହଠାତ୍ ଗୋଟିଏ ପ୍ରଶ୍ନ ଆଲୋଚନାର ମୋଡ଼ ବଦଳାଇ ଦେଲା । ପାକିସ୍ତାନୀ ବନ୍ଧୁ ସବଜ୍‌ୱାର୍ ମେରିଆ ଇସାବେଲାଙ୍କୁ ପଚାରିଲେ, 'ବର୍ତ୍ତମାନ ତୁମ ମୋଜାମ୍ବିକ୍‌ରେ ପର୍ତ୍ତୁଗୀଜ୍‌ମାନଙ୍କ ବିରୋଧରେ ଆନ୍ଦୋଳନ ଚାଲିଛି । ତୁମେ ଏଠାରୁ କୁଆଡ଼େ ଯିବ ବୋଲି ଭାବୁଛ – ପର୍ତ୍ତୁଗାଲ୍ ନା ମୋଜାମ୍ବିକ୍ ?'

ମେରିଆ ପାଇଁ ପ୍ରଶ୍ନଟି ନିଶ୍ଚିତ ଭାବରେ ଥିଲା ଗୁରୁତର । ଯଦିଓ ସେ ଥିଲା ପର୍ତ୍ତୁଗୀଜ୍, ସେ ଆସିଥିଲା ପର୍ତ୍ତୁଗୀଜ୍‌ମାନଙ୍କ ଆଫ୍ରିକୀୟ ଉପନିବେଶ ମୋଜାମ୍ବିକ୍ ରାଜ୍ୟରୁ, ଅଳ୍ପ କେତେ ଦିନ ହେଲା ମୋଜାମ୍ବିକ୍‌ରେ କଳା ଲୋକେ ସେମାନଙ୍କ ବିଦେଶୀ ଶାସକ ଗୋରା ପର୍ତ୍ତୁଗୀଜ୍‌ମାନଙ୍କ ବିରୋଧରେ ଆରମ୍ଭ କରି ଦେଇଥିଲେ ପ୍ରଚଣ୍ଡ ସଂଗ୍ରାମ । ମନେହେଉଥିଲା, ମୋଜାମ୍ବିକ୍‌ରୁ ପର୍ତ୍ତୁଗୀଜ୍ ଉପନିବେଶର ସୂର୍ଯ୍ୟ ଅସ୍ତ ପ୍ରାୟ ।

ଲଣ୍ଡନ୍‌ର ଟେଣ୍ଟାଲ୍ ହଲ୍‌ରେ ବ୍ରିଟିଶ୍ କାଉନ୍‌ସିଲ୍ ଦ୍ୱାରା ଆୟୋଜିତ ଗୋଟିଏ ଡିନର୍ ପାର୍ଟିରେ ମୋର ପରିଚୟ ହୋଇଥିଲା ମେରିଆ ସହିତ । ଖୁବ୍ ସୁନ୍ଦରୀ ଝିଅ ମେରିଆ, ପାଚିଲା ଗହମ ରଙ୍ଗର ଦେହ, ଗଭୀର ନୀଳ ଆଖି, ଯେକୌଣସି ପାର୍ଟି ବା ଆଲୋଚନାରେ ସହଜରେ ଅନ୍ୟମାନଙ୍କ ଦୃଷ୍ଟି ଆକର୍ଷଣ କରିପାରୁଥିଲା । କିଛି ସମୟ ଚୁପ୍ ରହି ମେରିଆ କହିଲା, 'ହଁ, ସେଟା ଗୋଟାଏ ବଡ଼ ସମସ୍ୟା ।'

ମୁଁ ପଚାରିଲି, 'ମୋଜାମ୍ବିକ୍‌ରେ ପର୍ତ୍ତୁଗାଲ୍–ବିରୋଧୀ ମନୋଭାବ ଅଛି କି ?'

'ନା' । ସେ କହିଲା, 'ମୋଜାମ୍ବିକ୍‌ରେ ପର୍ତ୍ତୁଗୀଜ୍‌ମାନଙ୍କ ସଂଖ୍ୟା ଖୁବ୍ କମ୍, ମାତ୍ର ଦେଢ଼ହଜାର; କିନ୍ତୁ ନିଗ୍ରୋମାନଙ୍କ ସଂଖ୍ୟା କେତେ ଲକ୍ଷ । ସେଠାରେ ପର୍ତ୍ତୁଗାଲ୍–ବିରୋଧୀ ମନୋଭାବ ଥିଲେ ସେମାନେ ଆମକୁ ଅକ୍ଳେଶରେ କେବେଠୁ ହତ୍ୟା କରିସାରନ୍ତେଣି ।'

ଆପାତତଃ ନିରୀହ, ସତର ଅଠର ବର୍ଷର ଅଣ୍ଡର୍ ଗ୍ରାଜୁଏଟ୍ ଛାତ୍ରୀ ମେରିଆ ଯେ ମୋଜାମ୍ବିକ୍ ରାଜ୍ୟର ଭୟଙ୍କର କଳା–ଗୋରା ସଂଘର୍ଷ ବା ଉପନିବେଶବାଦ ସମ୍ପର୍କରେ ବିଶେଷ କିଛି ଜାଣିଥିଲା, ତାହା ଅବଶ୍ୟ ଆଶା କରାଯାଇ ନ ପାରେ । ଏକ ଦରିଦ୍ର ଓ ଅନୁନ୍ନତ ଆଫ୍ରିକୀୟ ରାଜ୍ୟରେ ସେ ଏକ ଧନଶାଳୀ ପର୍ତ୍ତୁଗୀଜ୍ ପରିବାରର ଅଲିଅଳୀ ଝିଅ । ଚାରିପାଖର କଳା ମଣିଷଙ୍କ ଦାରିଦ୍ର୍ୟ ଓ ସଂଗ୍ରାମ ସମ୍ପର୍କରେ ହୁଏତ ସେ କେବଳ ପର୍ତ୍ତୁଗୀଜ୍ ସମ୍ବାଦପତ୍ରରେ ପଢ଼ିଛି କିମ୍ବା ପର୍ତ୍ତୁଗୀଜ୍‌ମାନଙ୍କଠାରୁ ଶୁଣିଛି । କଳା–ଗୋରା ସଂଘର୍ଷ ସମ୍ପର୍କରେ ତା'ଠାରୁ ନିରପେକ୍ଷ ମନ୍ତବ୍ୟ ଆଶା କରିବା ବୃଥା ।

ସେ କହୁଥିଲା, 'ମୋଜାମ୍ବିକ୍‌ରେ କଳା ଓ ଗୋରାମାନଙ୍କ ମଧ୍ୟରେ ବାଛବିଚାର କରାଯାଏ ନାହିଁ । କଳା ଗୋରା ସମସ୍ତେ ପଢ଼ିପାରିବା ପାଇଁ ବୃତ୍ତି (Scholarship)

ଦିଆଯାଏ । କଳାଲୋକେ ଅତି ଗରିବ । ସେମାନଙ୍କୁ ଆମେ ପର୍ତ୍ତୁଗୀଜ୍‌ମାନେ କାମ ଦେଉ । ଦିନକୁ ଚାରି ପାଞ୍ଚ ଜଣ ଆମ ଦୁଆରେ ଠକ୍ ଠକ୍ କରନ୍ତି – ଆପଣଙ୍କର ଚାକର–ଚାକରାଣୀ ଦରକାର ? ଆମ ଘରେ ଯେଉଁ ଚାକର ଅଛି, ତାକୁ ଆମେ ଭଲ ଖାଦ୍ୟ ଦେଉ । ବର୍ଷ ଶେଷରେ କିଛି ଦରମା ବି ଦେଉ । ଆପଣମାନେ ଜାଣନ୍ତି, ପର୍ତ୍ତୁଗାଲ୍ ଗୋଟିଏ କ୍ଷୁଦ୍ର ଓ ଦରିଦ୍ର ଦେଶ । ତେଣୁ ଆମେ ଅନ୍ୟ ଏକ ଦେଶକୁ ଶୋଷଣ କରିବୁ ? ମୋଜାମ୍ବିକ୍‌ରେ ଆମର ସ୍ୱାର୍ଥ କ'ଣ, କେବଳ ବ୍ୟବସାୟ ବାଣିଜ୍ୟ ଛଡ଼ା ? ଭାରତକୁ ବି ପର୍ତ୍ତୁଗୀଜ୍‌ମାନେ ଯାଇଥିଲେ କେବଳ ବ୍ୟବସାୟ ବାଣିଜ୍ୟ ଉଦ୍ଦେଶ୍ୟରେ ।'

ଆଲୋଚନାଟି ଆଉ ଲଘୁ ହେବାର ଉପାୟ ନ ଥିଲା । ଆଲୋଚନା ମଝିରେ ଅବଶ୍ୟ ସବ୍‌ଜଓ୍ୱାର୍ ଚା' ବନାଉଥିଲେ ଓ ଆମେମାନେ ଅଭ୍ୟସ୍ତ ରୀତିରେ ଚା' ପିଉଥିଲୁ; କିନ୍ତୁ ଉପନିବେଶବାଦ ସମ୍ପର୍କୀୟ ଆଲୋଚନାରେ ସ୍ୱାଭାବିକ ଭାବରେ ଆମେ ସମସ୍ତେ ହୋଇଉଠିଥିଲୁ ଉତ୍ତେଜିତ । ମୋ ଓ ସବ୍‌ଜଓ୍ୱାର୍‌ଙ୍କ ମଧ୍ୟରେ ବହୁ ମତପାର୍ଥକ୍ୟ ସତ୍ତ୍ୱେ ଆମ ଦୁହିଁଙ୍କ ମଧ୍ୟରେ ଏକ ପ୍ରଗାଢ଼ ସାମଞ୍ଜସ୍ୟ ଥିଲା, ଆମେ ଉଭୟେ ଆସିଥିଲୁ ଏକ ପୂର୍ବତନ ଇଂରେଜ ଉପନିବେଶରୁ । ଆମର ପୂର୍ବପୁରୁଷମାନେ ଦୁଇଶହ ବର୍ଷ ଧରି ଶାସିତ ଓ ଶୋଷିତ ହୋଇଥିଲେ ଏକ ୟୁରୋପୀୟ ରାଜ୍ୟଦ୍ୱାରା । ମେରିଆ ଥିଲା ଇଂରେଜମାନଙ୍କ ଭଳି ଏକ ଉପନିବେଶକାରୀ ଶକ୍ତିର ଅଂଶ । ଆମର ଏଇ ଆଲୋଚନାରେ ରାଦାରଫୋର୍ଡ୍ କଲେଜ୍‌ରେ ଏକ କ୍ଷୁଦ୍ର କୋଠରିରେ, ବସ୍ତୁତଃ ମୁହାଁମୁହିଁ ହୋଇ ପଡ଼ିଥିଲେ ଏକ ଶୋଷିତ ଓ ଏକ ଶୋଷକ ମଣିଷ ଗୋଷ୍ଠୀର ପ୍ରତିନିଧିମାନେ ।

ମୁଁ ଓ ସବ୍‌ଜଓ୍ୱାର୍ ଯୁକ୍ତି କଲୁ, 'ଦେଖ ମେରିଆ, ତୁମେ କେବଳ ଗୋରା ବା ଉପନିବେଶକାରୀ ଶକ୍ତିମାନଙ୍କ କଥା ଶୁଣିଛ, କଳା ଓ ଶାସିତ ମଣିଷଙ୍କ ସ୍ୱର ତୁମ କାନରେ ବାଜି ନାହିଁ । କୌଣସି ସ୍ୱାର୍ଥ ନ ଥିଲେ, ତୁମେମାନେ ନିଜ ଦେଶ ଛାଡ଼ି ସୁଦୂର ମୋଜାମ୍ବିକ୍ ଯାଇ ନ ଥା'ନ୍ତ । ତୁମେମାନେ ଅନ୍ୟ ଦେଶର ଉପକାର ପାଇଁ ଉପନିବେଶମାନ ସୃଷ୍ଟି କରିଛ ବୋଲି ଉପନିବେଶକାରୀ ଶକ୍ତିମାନେ ଶହ ଶହ ବର୍ଷ ଧରି ମିଥ୍ୟା ପ୍ରଚାର କରି ଆସିଛନ୍ତି ଓ ବହୁ ଗୋରା ଲୋକେ ମଧ୍ୟ ନିଜ ଅଜ୍ଞତା ଓ ନିରୀହତାରେ ସେଥିରେ ବିଶ୍ୱାସ କରୁଛନ୍ତି । ମୋଜାମ୍ବିକ୍‌ରେ ତୁମ ଦ୍ୱାରରେ ଯେଉଁ ମଣିଷମାନେ ଠକ୍‌ଠକ୍ କରନ୍ତି, ସେମାନଙ୍କ ଦାରିଦ୍ର୍ୟ ପାଇଁ ସେମାନଙ୍କ ଶାସକ ଅର୍ଥାତ୍ ପର୍ତ୍ତୁଗୀଜ୍‌ମାନେ ଦାୟୀ ନୁହନ୍ତି କି ? ମୋଜାମ୍ବିକ୍‌ରେ କଳା ଓ ଗୋରା ଉଭୟଙ୍କୁ ପଢ଼ିବାପାଇଁ ବୃତ୍ତି ଦିଆଯିବାର ବ୍ୟବସ୍ଥା ଅଛି ସତ କିନ୍ତୁ ଇଂଲାଣ୍ଡରେ ପଢ଼ିବା ପାଇଁ ମୋଜାମ୍ବିକ୍‌ରୁ ତୁମେ ଆସିଛ, କୌଣସି କଳା ଛାତ୍ର ବା ଛାତ୍ରୀ ଆସି ନାହିଁ ।'

ଆମର ପ୍ରଗଳ୍ଭତାରେ ମେରିଆ ହୁଏତ ଟିକିଏ ଶଙ୍କିଗଲା, ତା'ର ସୁନ୍ଦର ମୁହଁଟି ଲାଲ୍ ହୋଇଉଠିଲା । ମୁଁ ଓ ସବ୍‌ଜଓ୍ୱାର୍ ଉଭୟ ବୟସ ଓ ଶିକ୍ଷାରେ ମେରିଆଠାରୁ ଥିଲୁ ବହୁତ ଉର୍ଦ୍ଧ୍ୱରେ । ଓଡ଼ିଶାରେ ଜନ୍ମ ହୋଇଥିଲେ ମେରିଆ ହୁଏତ କୌଣସି ଇଣ୍ଟରମେଡ଼ିଏଟ୍ କ୍ଲାସ୍‌ରେ ମୋର ଛାତ୍ରୀ ହୋଇଥା'ନ୍ତା ।

ମାର୍ଜିତ ଓ ରୁଚିକର କଥା କହିବାରେ ଅଭ୍ୟସ୍ତ ନରଗିସ୍ ପରିସ୍ଥିତିଟାକୁ ସହଜ କରିବାରେ ସାହାଯ୍ୟ କଲା ଯଥେଷ୍ଟ । ସେ କହିଲା, 'ଖାଲି ୟୁରୋପୀୟ କାହିଁକି, ଭାରତୀୟମାନେ ବି ଆଫ୍ରିକାର ଲୋକଙ୍କୁ କମ୍ ଶୋଷଣ କରି ନାହାନ୍ତି । ଆଫ୍ରିକାର ସାଧାରଣ ଲୋକେ ଅତି ନିରୀହ ହୋଇଥିବାରୁ ଚତୁର ଭାରତୀୟ ବ୍ୟବସାୟୀମାନେ ଏପରି କରିବାରେ ସମର୍ଥ ହୋଇଛନ୍ତି ।'

ନରଗିସ୍ ନିଜେ ସେହିପରି ଏକ ଚତୁର ଭାରତୀୟ ବ୍ୟବସାୟୀ ପରିବାରର ଝିଅ । ସହଜ ଓ ସ୍ୱାଭାବିକ ଭାବରେ ସେ ଯେପରି ନିଜ ଗୋଷ୍ଠୀ ବା ଜାତିର ଦୁର୍ବଳତା ସ୍ୱୀକାର କରିଗଲା, ମେରିଆର ଅହମିକା ଓ ମତାନ୍ଧତାର ତାହା ଥିଲା ଠିକ୍ ବିପରୀତ ଦିଗ । ଆମେ ନର୍‌ଗିସ୍‌ର ନିରପେକ୍ଷ ମନ୍ତବ୍ୟରେ ଆଶ୍ୱସ୍ତି ଅନୁଭବ କଲୁ । ଶୋଷକଶ୍ରେଣୀ ଯେ ନିଜ ଦୋଷ ଦୁର୍ବଳତାକୁ ଚିହ୍ନିବା ଓ ସ୍ୱୀକାର କରିବା ସମ୍ଭବ, ନରଗିସ୍ ଥିଲା ତା'ର ପ୍ରମାଣ ! × × ×

ସେଦିନର ଆଲୋଚନାର ଅଳ୍ପ କେତେ ସପ୍ତାହ ପୂର୍ବରୁ ଟେଲିଭିଜନ୍‌ରେ ଏକ ପ୍ରସିଦ୍ଧ ଇଂରାଜୀ ଉପନ୍ୟାସର ଚଳଚ୍ଚିତ୍ର ଦେଖିଥିଲି Robinson Crusoe । ଉପନ୍ୟାସଟି ଅଷ୍ଟାଦଶ ଶତାବ୍ଦୀରେ ଡାନିଏଲ୍ ଡେଫୋଙ୍କଦ୍ୱାରା ଲିଖିତ ହୋଇଥିଲା ଏବଂ ଏହା ପୃଥିବୀର ପ୍ରାୟ ସମସ୍ତ ଉନ୍ନତ ଭାଷାରେ ଅନୂଦିତ ହୋଇଛି । ଏହା ଆପାତତଃ ଜଣେ ଦୁଃସାହସିକ ନାବିକର କାହାଣୀ । ଜାହାଜ ସମୁଦ୍ରରେ ଜଳମଗ୍ନ ହେବାରୁ ଏହାର ଜଣେ ଯାତ୍ରୀ ରବିନ୍‌ସନ୍ କ୍ରୁଶୋ ପ୍ରାଣରକ୍ଷା କରି ଗୋଟିଏ ଦ୍ୱୀପରେ ପହଞ୍ଚେ । ଦ୍ୱୀପରେ ସେ ପ୍ରଥମେ ମନୁଷ୍ୟ ବସତିର ନାମ ଗନ୍ଧ ପାଏ ନାହିଁ; କିନ୍ତୁ ସେ ପରେ ଗୋଟିଏ ଆଦିମ ଧନୁଶରଧାରୀ କଳା ମଣିଷର ସାକ୍ଷାତ୍ ପାଏ । ଧନୁଶରଧାରୀ କଳା ମଣିଷଟି ପ୍ରଥମେ ବନ୍ଧୁକଧାରୀ ଗୋରା ଆଗନ୍ତୁକ ରବିନ୍‌ସନ୍ କ୍ରୁଶୋକୁ ସନ୍ଦେହ ଦୃଷ୍ଟିରେ ଦେଖେ: କିନ୍ତୁ ପରେ ସେ ରବିନ୍‌ସନ୍‌ର ବଶତା ସ୍ୱୀକାର କରେ ଓ ତାହାର ବିଶ୍ୱସ୍ତ ଭୃତ୍ୟରେ ପରିଣତ ହୁଏ । ରବିନ୍‌ସନ୍ ଏଇ ଭୃତ୍ୟଟି ସାହାଯ୍ୟରେ ସେହି ଅରଣ୍ୟମୟ ଦ୍ୱୀପରେ ତା'ର କୁଟୀର, ଡଙ୍ଗା ପ୍ରଭୃତି ପ୍ରସ୍ତୁତ କରେ ଓ ଅପେକ୍ଷାକୃତ ସ୍ୱଚ୍ଛନ୍ଦ ଜୀବନ ଯାପନ କରେ; କିନ୍ତୁ କିଛି ଦିନ ପରେ ଆଉ ଗୋଟିଏ ଜାହାଜ ସେଇ ଦ୍ୱୀପର ନିକଟସ୍ଥ ହୁଏ ଓ ରବିନ୍‌ସନ୍ ସେଇ ଜାହାଜରେ ତା'ର ମାତୃଭୂମି ଇଂଲଣ୍ଡକୁ ଫେରିଯାଏ । ଭୃତ୍ୟଟି ଲୋତକପୂର୍ଣ୍ଣ ନେତ୍ରରେ ତା'ର ମାଲିକକୁ ବିଦାୟ ଦିଏ ।

ଏଇ କାହାଣୀଟି ଯେତେ ସହଜ ଓ ସରଳ ମନେହେଲେ ବି ଏହା ବୋଧହୁଏ ଉପନିବେଶବାଦର ଏକ ସାର୍ଥକ ଓ ଶକ୍ତିଶାଳୀ ଆଲେଖ୍ୟ । ରବିନ୍‌ସନ୍ କ୍ରୁଶୋ ଓ କଳା ମଣିଷଟିର ସମ୍ପର୍କ ଉପନିବେଶକାରୀ ଓ ଶାସିତ ମଣିଷର ସମ୍ପର୍କଠାରୁ କୌଣସି ପ୍ରକାରେ ଭିନ୍ନ ନୁହେଁ । ଗୋରା ମଣିଷଟି ଘଟନାଚକ୍ରରେ କଳା ମଣିଷର ଦେଶରେ ପହଞ୍ଚିଲା ଓ କଳା ମଣିଷଟି ତା' ନିଜ ଦେଶରେ ବିଦେଶୀ ମଣିଷଟିର ଭୃତ୍ୟରେ ପରିଣତ ହୋଇଗଲା !

ଏଇ ପରିଣତି ମୂଳରେ ରହିଲା ଗୋରା ମଣିଷର ବୃହତ୍ତର ଶକ୍ତି ବା superior technology । ଗୋରା ମଣିଷର ବନ୍ଧୁକ ଆଗରେ କଳାମଣିଷର ଧନୁଶର ଶକ୍ତିହୀନ ହୋଇପଡ଼ିଲା । ବସ୍ତୁତଃ ଉପନିବେଶବାଦର ପ୍ରତିଷ୍ଠା ଧନୁଶର ଉପରେ ବନ୍ଧୁକର ଶକ୍ତିର ପ୍ରତିଷ୍ଠା ଭିନ୍ନ ଅନ୍ୟ କିଛି ନୁହେଁ ।

ସପ୍ତଦଶ ଶତାବ୍ଦୀରୁ ୟୁରୋପୀୟମାନେ ଯେତେବେଳେ ଏସିଆ ଓ ଆଫ୍ରିକାର ବିଭିନ୍ନ ଦେଶକୁ ବ୍ୟବସାୟ ବାଣିଜ୍ୟ ଉଦ୍ଦେଶ୍ୟରେ ଯାତ୍ରା କଲେ, ସେତେବେଳେ ସେମାନେ ସାଙ୍ଗରେ ନେଇଥିଲେ ଶକ୍ତିଶାଳୀ ଯୁଦ୍ଧ ସରଞ୍ଜାମ । ଏଇ ସରଞ୍ଜାମ ବଳରେ ବିଭିନ୍ନ ଦେଶରେ ସେମାନେ ଉପନିବେଶ ସ୍ଥାପନ କରିପାରିଲେ । ବର୍ତ୍ତମାନ ଯେଉଁ ଯୁକ୍ତରାଷ୍ଟ୍ରକୁ ଅତି ଉନ୍ନତ ଓ ସଭ୍ୟ ଦେଶ ବୋଲି କୁହାଯାଉଛି, ତାହାର ଇତିହାସ ମାତ୍ର ଦୁଇଶହ ବର୍ଷର; କିନ୍ତୁ ୟୁରୋପୀୟମାନେ ଯୁକ୍ତରାଷ୍ଟ୍ରକୁ ଆସିବା ପୂର୍ବରୁ ସେଠାରେ ହୁଏତ ହଜାର ହଜାର ବର୍ଷ ଧରି ଲୋହିତ ଭାରତୀୟମାନେ ବାସ କରୁଥିଲେ । ୟୁରୋପୀୟମାନଙ୍କ ବନ୍ଧୁକ ଆଗରେ ସେମାନଙ୍କ ଧନୁଶର ତିଷ୍ଠିପାରିଲା ନାହିଁ । ତେଣୁ ଆଜି ଯୁକ୍ତରାଷ୍ଟ୍ରରେ ଅଳ୍ପ କେତେ ଶହ ଲୋହିତ ଭାରତୀୟ ସେମାନଙ୍କ ମାତୃଭୂମିରେ ପ୍ରଦର୍ଶନୀର ବସ୍ତୁ ଭଳି ଦର୍ଶକମାନଙ୍କ କୁତୂହଳ ମେଣ୍ଟାଉଛନ୍ତି ।

ମଜାର କଥା ହେଉଛି, ଯେଉଁମାନେ ବନ୍ଧୁକ ଶକ୍ତି ବଳରେ ଉପନିବେଶବାଦ ସୃଷ୍ଟି କରିଛନ୍ତି, ସେଇମାନେ ଉପନିବେଶବାଦ ସପକ୍ଷରେ ଚତୁରତା ସହକାରେ ଶହ ଶହ ବର୍ଷ ହେଲା ପ୍ରଚାର ମଧ୍ୟ ଚଳାଇ ଆସିଛନ୍ତି । ଯେଉଁ ୟୁରୋପୀୟମାନେ ଏସିଆ, ଆମେରିକା ଓ ଆଫ୍ରିକାରେ ଉପନିବେଶ ପ୍ରତିଷ୍ଠା କରିଛନ୍ତି ଓ ଉପନିବେଶମାନଙ୍କ ସମ୍ପତ୍ତି ଅପହରଣ କରି ସମୃଦ୍ଧିଶାଳୀ ହୋଇଛନ୍ତି, ସେଇମାନେ ହିଁ ସେମାନଙ୍କ ଶାସିତ ଦେଶ ବା ଜାତିମାନଙ୍କ ଇତିହାସ ଲେଖିଛନ୍ତି ଓ ଶାସିତ ଜାତିମାନେ ସେଇ ଇତିହାସ ପଢ଼ି ନିଜ ସମ୍ପର୍କରେ ଧାରଣା କରି ଆସିଛନ୍ତି । ଉଦାହରଣସ୍ୱରୂପ, ଆଫ୍ରିକାର ଲୋକେ ଏଯାଏଁ ୟୁରୋପୀୟମାନେ ସେମାନଙ୍କ ସମ୍ପର୍କରେ ଲେଖିଥିବା ଇତିହାସ ହିଁ ପଢ଼ି ଆସୁଥିଲେ । ଏଭଳି ଇତିହାସର ଅନ୍ୟ ଯେଉଁ ମୂଲ୍ୟ ଥାଉନା କାହିଁକି, ଏଥିରେ ଗୋଟିଏ ମୂଳ ଧାରଣା ବଦ୍ଧମୂଳ ଥାଏ । ତାହା ହେଉଛି, ୟୁରୋପୀୟମାନେ ହିଁ ସଭ୍ୟତାର ଆଲୋକ ବହନ କରନ୍ତି ଓ ସେମାନେ ଏସିଆ, ଆଫ୍ରିକା ଓ ଆମେରିକାର ମୂଳ ଅଧିବାସୀମାନଙ୍କଠାରୁ ଶ୍ରେଷ୍ଠ ।

ତେଣୁ ମେରିଆ ଇସାବେଲାର ଯୁକ୍ତିରେ କିଛି ନୂତନ ବା ଆଶ୍ଚର୍ଯ୍ୟକର ନ ଥିଲା । ଉପନିବେଶବାଦ ସପକ୍ଷରେ ତା'ର ଯୁକ୍ତି ସୁନ୍ଦର, ସଭ୍ୟ ଓ ଉନ୍ନତ ୟୁରୋପୀୟ ବ୍ୟକ୍ତିତ୍ୱ କୁତ୍ସିତ ଦିଗଟି ହିଁ ସୂଚାଉଥିଲା । × × ×

ଡକ୍ଟି ହାସାନ୍‌ଙ୍କ ରୁମ୍‌ରେ ସେଦିନର ଆଲୋଚନା ଭାଙ୍ଗିଲାବେଳକୁ ରାତି ଅନେକ ହୋଇଥିଲା । ଆଲୋଚନାଟି ଉତ୍ତେଜନାପୂର୍ଣ୍ଣ ହୋଇଥିବାରୁ କିଛି ଅସ୍ୱାଭାବିକତା ଅନୁଭବ କରି ମୁଁ ମୋ ରୁମ୍‌କୁ ଫେରିଲି ।

ତା' ପରଦିନ ସକାଳେ କବାଟରେ କାହାର ଖଟ୍ ଖଟ୍ ଶୁଭିଲା । ଡକ୍ଟି ହାସାନ୍ ଆସିଥିଲେ । ସାମାନ୍ୟ ବିଚଳିତ ସ୍ୱରରେ କହିଲେ, 'ମିଶ୍ର, ମେରିଆ କାଲିର ଆଲୋଚନାରେ ଅପମାନିତ ହୋଇଛି ବୋଲି ମୋତେ କହିଲା, ତୁମେ ଆସ, ଆମେ ଦୁହେଁ କ୍ଷମା ମାଗିନେବା ।'

ଡକ୍ଟି ହାସାନ୍ ଓ ମୁଁ ମେରିଆକୁ କ୍ଷମା ମାଗିନେଲୁ । ଆମେ ମଧ ବୁଝାଇବାକୁ ଚେଷ୍ଟାକଲୁ ଯେ ଉପନିବେଶବାଦକୁ ଆମେ ଯେତେ ସମାଲୋଚନା କଲେ ବି ବ୍ୟକ୍ତିଗତ ଭାବରେ ତା' ବିରୋଧରେ ଆମର କିଛି କହିବାର ନାହିଁ ।

ମେରିଆ ଆପାତତଃ ଆମ ଯୁକ୍ତିରେ ସନ୍ତୁଷ୍ଟ ହେଲା; କିନ୍ତୁ ସେ ଆଉ କେବେ ଡକ୍ଟି ହାସାନ୍‌ଙ୍କ ରୁମ୍‌କୁ ଆସିବା କିମ୍ବା ଆମ ସହିତ କୌଣସି ଗୁରୁତର ବିଷୟରେ ଆଲୋଚନା କରିବା ମୋର ମନେ ନାହିଁ ।



## ତୃତୀୟ ପୃଥିବୀ

ଦିନେ ସନ୍ଧ୍ୟାରେ କେଣ୍ଟ ବିଶ୍ୱବିଦ୍ୟାଳୟରୁ ଘରକୁ ଫେରୁଛି, ବାଟରେ ଜଣେ ଭଦ୍ରଲୋକଙ୍କ ସହିତ ଦେଖାହେଲା । ଭଦ୍ରଲୋକ ବେଶ୍ ଡେଙ୍ଗା, କଳା ସୁଟ୍‌ଟିଏ ପିନ୍ଧିଥା'ନ୍ତି, ଦେହର ରଙ୍ଗ କଳା । ରାସ୍ତାରେ ଆଉ କେହି ନ ଥା'ନ୍ତି ବୋଧହୁଏ । ଭଦ୍ରଲୋକ ମୋତେ ଚାହିଁଲେ, ମୁଁ ବି ତାଙ୍କୁ ଚାହିଁଲି; କିନ୍ତୁ ଆମେ ପରସ୍ପରକୁ କିଛି ନ କହି ନୀରବରେ ନିଜ ନିଜ ବାଟରେ ଚାଲିଗଲୁ ।

ତା'ପରଦିନ । ଠିକ୍ ସେତିକିବେଳେ ସେଇ ପୁରୁଣା ସ୍ଥାନରେ ଭଦ୍ରଲୋକଙ୍କ ସହିତ ପୁଣି ଥରେ ଦେଖାହେଲା । ଏଥର ସେ ମୋ ନିକଟକୁ ଆସି କହିଲେ, 'କ୍ଷମା କରିବେ, ଆପଣ କ'ଣ ମରିସସ୍‌ରୁ ଆସିଛନ୍ତି ?' ମୁଁ କହିଲି , 'ନା, ଆପଣ କେଉଁ ଦେଶରୁ ଆସିଛନ୍ତି ? ଇଣ୍ଡିଆରୁ ?' ତା'ପରେ ଅଳ୍ପ ସମୟ କଥାବାର୍ତ୍ତାରେ ଆମେ ପରସ୍ପରକୁ ଜାଣିଲୁ । ସେ ଯେମିତି ଅନେକ କିଛି କହିବେ ବୋଲି ମୋତେ ହିଁ ଖୋଜୁଥିଲେ । ନିଜ ସମ୍ପର୍କରେ ସେ ଅନର୍ଗଳ କହିଚାଲିଲେ । ସେ ଆସିଛନ୍ତି ମରିସସ୍‌ରୁ । ସେ ମୂଳତଃ ତାମିଲ, ତାଙ୍କ ପୂର୍ବପୁରୁଷ

ଭାରତରୁ ଆସିଥିଲେ । ଠିକ୍ କେଉଁଠୁ ସେ କହିପାରିଲେ ନାହିଁ, ତାମିଲନାଡୁରୁ ହୋଇଥିବେ ବୋଲି ମୁଁ ତାଙ୍କୁ ବୁଝାଇଦେଲି । ବର୍ତ୍ତମାନ ସେ ତାମିଲ ଭୁଲିଗଲେଣି । ତାଙ୍କ ମାଆ ଓ ବାପା କିଛି କିଛି ତାମିଲ ଜାଣନ୍ତି । ତାଙ୍କର ସ୍ତ୍ରୀଙ୍କର ଆକସ୍ମିକ ବିୟୋଗ ଘଟିଛି, ଝିଅ ଦୁଇଟି ମରିସସ୍‌ରେ ରହୁଛନ୍ତି । ସେ ବର୍ତ୍ତମାନ ସ୍ଥାନୀୟ ଟେକ୍‌ନୋଲଜି କଲେଜ୍‌ରେ ଟେଲିଭିଜନ୍ ଅପରେଟର୍ ଭାବରେ କାମ କରୁଛନ୍ତି । ତାଙ୍କର ନାମ ମାରିମୁତୁ ସନ୍ୟାସୀ ପିଲେ । 'ପିଲେ' – ସେ ଆଉ ବର୍ତ୍ତମାନ ବ୍ୟବହାର କରୁ ନାହାନ୍ତି । ତାଙ୍କର ଡାକ ନାମ 'ଡେଲ୍' । ଇଂରାଜୀରେ ତାଙ୍କୁ ତାଙ୍କ ବନ୍ଧୁମାନେ ଡାକନ୍ତି ଡାଲୁ ।

ନିଜ ସମ୍ପର୍କରେ କହିବା ବା ଅନ୍ୟକୁ ତା' ବ୍ୟକ୍ତିଗତ ଜୀବନ ସମ୍ପର୍କରେ ପଚାରିବା ଇଂରେଜଲୋକଙ୍କ ଅଭ୍ୟାସବିରୁଦ୍ଧ । ପୁଣି ପ୍ରଥମ ସାକ୍ଷାତ୍‌ରେ ନିଜର ପରିବାର, ପୂର୍ବପୁରୁଷଙ୍କ ଇତିହାସ ଓ ଆର୍ଥିକ ସ୍ଥିତି ସମ୍ପର୍କରେ ଅଯାଚିତଭାବେ ସମ୍ବାଦ ଦେବା କୌଣସି ଇଂରେଜ ଲୋକଠାରେ ଆଶା କରାଯାଇ ନ ପାରେ । ପ୍ରଥମ ସାକ୍ଷାତ୍‌ରେ ଜଣେ ଇଂରେଜ ଲୋକ ସାଧାରଣତଃ 'କିପରି ଅଛନ୍ତି ?' 'ଆଜିର ଦିନଟି ଚମତ୍କାର' ପରି କେତେକ ଫର୍ମୁଲାବନ୍ଧା ନିରୀହ ମନ୍ତବ୍ୟ ବ୍ୟତୀତ ଆଉ ଅଧିକ କିଛି କହି ନ ଥା'ନ୍ତି । ନିଜର ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟ ବା privacy ରକ୍ଷାକରିବା ସମ୍ପର୍କରେ ଇଂରେଜମାନେ ଯେପରି ଅତିମାତ୍ରାରେ ସଚେତନ । ଜଣେ ଇଂରେଜ ଭଦ୍ରମହିଳାଙ୍କ ସଙ୍ଗେ ମୋର ବେଶ୍ ଭଲ ପରିଚୟ ଥିଲେ ମଧ୍ୟ ତାଙ୍କର ଅଜା ଜଣେ ବଙ୍ଗାଳୀ ବ୍ରାହ୍ମଣ ଥିଲେ ବୋଲି ସେ ମୋତେ କେବେ କହି ନ ଥିଲେ । ଆକସ୍ମିକଭାବେ ଏଇ ସମ୍ବାଦଟି ମୁଁ ଆଉ ଜଣେ ବନ୍ଧୁଙ୍କଠାରୁ ଶୁଣିଥିଲି । ଅଳ୍ପଦିନ ତଳେ ମୋର ସୁପର୍‌ଭାଇଜର୍ ଅର୍ଥାତ୍ ଯାହାଙ୍କ ତତ୍ତ୍ୱାବଧାନରେ ଦୀର୍ଘ ତିନିବର୍ଷ ମୁଁ ଗବେଷଣା କରିଛି, ସେ ଗୋଟିଏ ଚିଠି ଲେଖିଛନ୍ତି । ତାଙ୍କ ସହିତ ମୋର ବେଶ୍ ଘନିଷ୍ଠତା ଥିଲା ବୋଲି ମୁଁ କହିପାରେ । ସେ କିନ୍ତୁ ତାଙ୍କ ଚିଠିରେ ନିଜ ସମ୍ପର୍କରେ କିଛି ଲେଖି ନାହାନ୍ତି । ମୋ ପ୍ରତି ଓ ମୋ ପରିବାର ପ୍ରତି ସ୍ନେହ ପ୍ରକାଶ କଲା ପରେ, ସେ ଲେଖିଛନ୍ତି, 'ଏତେଦିନ ପରେ ବସନ୍ତ ଆସିଛି । ବ୍ଲୁବେଲ ଫୁଲ ସବୁ ଫୁଟିଲାଣି, କିନ୍ତୁ ମୁଁ ମୋ ରୁମ୍‌ଭିତରୁ କେବଳ କର୍ଦ୍ଦମାକ୍ତ ରାସ୍ତାଟିଏ ଦେଖିପାରୁଛି । ରାଦର୍‌ଫୋର୍ଡ୍ କଲେଜର ଏବେ ବିସ୍ତୃତି କାର୍ଯ୍ୟ ଚାଲିଛି ।'

ଭାଷା, ଆଚାର ବ୍ୟବହାର ଓ ରୁଚିରେ ଏସିଆ ଓ ଆଫ୍ରିକାରୁ ଆସି ବିଲାତରେ ରହୁଥିବା ଲୋକେ ଇଂରେଜ ଲୋକଙ୍କଠାରୁ ଅନେକାଂଶରେ ଭିନ୍ନ । ଏଇ ଭିନ୍ନତା କେବଳ ଚମଡ଼ାର ରଙ୍ଗରେ ସୀମାବଦ୍ଧ ବୋଲି ଅନେକ ସମୟରେ ଭୁଲ୍ ଧାରଣା ହେବା ସ୍ୱାଭାବିକ । କାରଣ ଏଇ ଏସିଆ ଓ ଆଫ୍ରିକାର ଲୋକେ ଇଂରେଜମାନଙ୍କ ପରି ପୋଷାକ ପିନ୍ଧନ୍ତି, ପବ୍‌ରେ ମଦ ପିଅନ୍ତି ଓ କ୍ରିକେଟ୍ ବା ସକର (ଫୁଟ୍‌ବଲ୍) ସମ୍ପର୍କରେ ଆଲୋଚନା କରନ୍ତି; କିନ୍ତୁ ସେମାନଙ୍କୁ ନିକଟରେ ଦେଖିଲେ ବୁଝିହୁଏ ସେମାନେ ଏକ ସ୍ୱତନ୍ତ୍ର ଗୋଷ୍ଠୀ । ବହୁକାଳଧରି ବିଲାତରେ ରହିଥିଲେ ସୁଦ୍ଧା ସେମାନେ ସେମାନଙ୍କ ହୃଦୟରେ ନିଜ ଦେଶର ଅଧିବାସୀ ବ୍ୟତୀତ ଅନ୍ୟ କିଛି ନୁହନ୍ତି । ସୁଟ୍ ପିନ୍ଧି ପବ୍‌ରେ ସନ୍ଧ୍ୟାରେ ବିଅର୍ ବା ସ୍କଚ୍

ପିଇ ବିଲାତର ଟେକ୍‌ନିକାଲ୍ କଲେଜ୍‌ରେ ଚାକିରି କଲେ ସୁଦ୍ଧା ଭାଲ୍ ଇଂରେଜ ହୋଇପାରି ନାହିଁ । ସେ ଭାରତୀୟ ବା ମରିସସୀୟ ହୋଇ ରହିଛି । ତେଣୁ ଆଉ ଜଣେ ଭାରତୀୟ ସହିତ ଦେଖାହେଲେ ସେ ଅଯାଚିତ ଭାବେ ନିଜର ମନର କଥା କହିପାରୁଛି । ସେ ଯେପରି ପ୍ରମାଣ କରିଦେବାକୁ ଚାହେଁ ଯେ ସେ ଇଂରେଜମାନଙ୍କଠାରୁ ଭିନ୍ନ ।

ମାତ୍ର ଅଳ୍ପ କେତେ ମିନିଟ୍‌ର ସାକ୍ଷାତ୍‌ରେ ଭାଲ୍ ଓ ମୁଁ ଯେପରି ପରସ୍ପର ସହିତ ଅନ୍ତରଙ୍ଗ ହୋଇପଡ଼ିଲୁ, ସେଥିପାଇଁ ଅନେକାଂଶରେ ଆମର ଅତୀତ ଇତିହାସ ଦାୟୀ । ଆମେ ଦୁହେଁ ବିଲାତରେ ରହୁଥିଲେ ମଧ୍ୟ ଆମର ଅତୀତ ଇତିହାସ ଅଭିନ୍ନ, ଆମେମାନେ ଭାରତୀୟ ଓ ହିନ୍ଦୁ । ଇଂରେଜମାନଙ୍କଦ୍ୱାରା ଶାସିତ ହୋଇଥିବାରୁ ଇଂରେଜମାନଙ୍କ ପ୍ରତି ଆମର ଦୃଷ୍ଟିଭଙ୍ଗୀ ସମାନ । ଆମର ଚମଡ଼ାର ରଙ୍ଗ ଆମକୁ ପରସ୍ପରର ନିକଟବର୍ତ୍ତୀ କରିବାରେ ଯେ ସାହାଯ୍ୟ କରିଛି, ଏହା ଅବଶ୍ୟ ଅସ୍ୱୀକାର କରାଯାଇ ନ ପାରେ; କିନ୍ତୁ ଚମଡ଼ାର ରଙ୍ଗ ନିଶ୍ଚିତ ଭାବରେ ଆମର ଏକମାତ୍ର ଯୋଗସୂତ୍ର ନୁହେଁ ।

ବିଲାତରେ ପହଞ୍ଚିବା ସମୟରୁହିଁ ମୁଁ ଅନୁଭବ କରିଥିଲି, ଭାଲ୍ ପରି ଏସିଆ ବା ଆଫ୍ରିକାରୁ ଆସିଥିବା ଲୋକମାନଙ୍କର ମୁଁ ଯେତେ ନିକଟବର୍ତ୍ତୀ, ଇଂରେଜ ବା ୟୁରୋପୀୟମାନଙ୍କର ସେତେ ନିକଟବର୍ତ୍ତୀ ନୁହେଁ । ବିଲାତରେ ପହଞ୍ଚିବା ପରେ ଲଣ୍ଡନ୍‌ରେ ବିରାଟ ପୋଷ୍ଟାଲ ଟାୱାର ସମ୍ମୁଖସ୍ଥ ର୍ୟାମ୍‌ଜି ହଲ୍‌ରେ ଅନ୍ୟାନ୍ୟ କମନ୍ ୱେଲ୍‌ଥ୍ ସ୍କଲାର୍‌ମାନଙ୍କ ସହିତ ମୋତେ କିଛିଦିନ ରହିବାକୁ ହୋଇଥିଲା । ସେଠାରେ ଏସିଆ, ଆଫ୍ରିକା, ଆମେରିକା, ଅଷ୍ଟ୍ରେଲିଆ ପ୍ରଭୃତି ପୂର୍ବତନ ଇଂରେଜ ଶାସିତ ବିଭିନ୍ନ ଦେଶରୁ ବହୁ ବ୍ୟକ୍ତି ଆସିଥିଲେ । ଆପାତତଃ ସେମାନେ ପରସ୍ପରକୁ ଆଗରୁ ଜାଣି ନ ଥିଲେ; କିନ୍ତୁ ଅଳ୍ପ କେତେ ଘଣ୍ଟା ପରେ ଦେଖାଗଲା, ଆଫ୍ରିକାରୁ ଆସିଥିବା କଳାଲୋକେ ଏକାଠି ବସି ଗପସପ କରୁଛନ୍ତି କିମ୍ବା **ସପିଂ** ପାଇଁ ବାହାରିଛନ୍ତି । କାନାଡ଼ା ଓ ଅଷ୍ଟ୍ରେଲିଆରୁ ଆସିଥିବା ସ୍କଲାର୍‌ମାନେ ଏକାଠି କୌଣସି ପବ୍‌କୁ ବାହାରିଛନ୍ତି ଇତ୍ୟାଦି । କଳା ଓ ଗୋରା ଲୋକମାନଙ୍କ ମଧ୍ୟରେ ଆଦୌ ବନ୍ଧୁତା ବା ଆଳାପ ଆଲୋଚନା ନ ଥିଲା ବୋଲି ମୁଁ ଏଠାରେ କହୁ ନାହିଁ, କିନ୍ତୁ କୌଣସି କାରଣରୁ କଳା ଅର୍ଥାତ୍ ଏସିଆ, ଆଫ୍ରିକାରୁ ଆସିଥିବା ଲୋକେ ଏବଂ ୟୁରୋପ୍ ଓ କାନାଡ଼ା ପ୍ରଭୃତି ଦେଶରୁ ଆସିଥିବା ଗୋରାଲୋକେ ଯେପରି ଦୁଇ ଦଳରେ ପରିଣତ ହୋଇଗଲେ ।

ଲଣ୍ଡନ୍‌ରେ ପହଞ୍ଚିବାର ପ୍ରଥମ ସପ୍ତାହରେ ର୍ୟାମ୍‌ଜି ହଲରେ ମୁଁ ଯାହା ଲକ୍ଷ୍ୟ କରିଥିଲି, ବିଲାତରେ ରହିଥିବା ସାଢ଼େ ତିନିବର୍ଷରେ ଠିକ୍ ତାହାର ପୁନରାବୃତ୍ତି ହିଁ ଦେଖିଲି । ପ୍ରଥମେ କିଛି ଦିନ ମୋର ମନେହେଉଥିଲା, ମୁଁ ନିଜେ ହୁଏତ ଇଂରେଜ ଲୋକମାନଙ୍କ ରୀତିନୀତି ସହିତ ଖାପ୍ ଖୁଆଇ ଚଳି ନ ପାରି ଏସିଆ ଓ ଆଫ୍ରିକାର ଲୋକମାନଙ୍କ ସହିତ ଅଧିକ ସମ୍ପର୍କ ରଖୁଛି । ହୁଏତ ମୋ ବିଶ୍ୱାସରେ କିଛିଟା ସତ୍ୟତା ଥିଲା; କିନ୍ତୁ ବିଲାତରେ ଜନ୍ମ

ହୋଇଥିବା କିମ୍ବା ବିଲାତରେ ଅତି କମ୍ ବୟସରୁ ବଢ଼ି ଆସିଥିବା ଭାରତୀୟ ଛାତ୍ରମାନେ ସୁଦ୍ଧା ନିଜ ନିଜ ଭିତରେ ଗୋଷ୍ଠୀ ଗଠନ କରିଥିବା ମୁଁ ଲକ୍ଷ୍ୟ କଲି । ଏଠାରେ ଜଣେ ଭାରତୀୟ ଛାତ୍ରଙ୍କ ସମ୍ପର୍କରେ କିଛି ଲେଖିଲେ କଥାଟା ଆହୁରି ପରିଷ୍କାର ହେବ ।

ତାଙ୍କ ନାମ ଜର୍ଣ୍ଣେଲ୍ ସିଂ ଗ୍ରେୱାଲ୍, କେଣ୍ଟ୍ ବିଶ୍ୱବିଦ୍ୟାଳୟର ଜଣେ ଅଣ୍ଡର୍ ଗ୍ରାଜୁଏଟ୍ । ଗୋଟିଏ ପାର୍ଟିରେ ତାଙ୍କ ସହିତ ମୋର ପରିଚୟ ହୋଇଥିଲା । ତାଙ୍କର ବୟସ ପ୍ରାୟ ବାଇଶି । ଗଲା ପନ୍ଦର ବର୍ଷ ହେଲା ସେ ନିଜ ବାପା, ମାଆ, ଭାଇ ଭଉଣୀଙ୍କ ସହିତ ବିଲାତରେ ରହି ଆସିଛନ୍ତି । ଭାରତ ସମ୍ପର୍କରେ ତାଙ୍କର ପ୍ରାୟ ଧାରଣା ନାହିଁ । ତାଙ୍କ ପାସ୍‌ପୋର୍ଟ୍ ବ୍ରିଟିଶ୍ ଅର୍ଥାତ୍ ସେ ବିଲାତର ନାଗରିକ ହୋଇସାରିଛନ୍ତି । ତାଙ୍କର ଖାଦ୍ୟପେୟ, ପୋଷାକ, ରୁଚି ଉଚ୍ଚାରଣରେ ଭାରତୀୟତାର ଛାପ ପ୍ରାୟ ଅନୁପସ୍ଥିତ ।

ଜର୍ଣ୍ଣେଲ ସିଂ ଗ୍ରେୱାଲ୍ ଓ ମୁଁ ପ୍ରାୟ ତିନିମାସ ଗୋଟିଏ ଘରେ ରହିଥିଲୁ । ଏହି ସମୟ ମଧ୍ୟରେ ତାଙ୍କର ଅନେକ ବନ୍ଧୁ ତାଙ୍କ ସହିତ ସାକ୍ଷାତ୍ କରିବାକୁ ଆସୁଥିଲେ । ମୁଁ ଲକ୍ଷ୍ୟକଲି, ସେମାନେ ସମସ୍ତେ ଥିଲେ କଳା – ସେମାନେ କିମ୍ବା ସେମାନଙ୍କ ପୂର୍ବପୁରୁଷମାନେ ଭାରତୀୟ ଉପମହାଦେଶରୁ ହିଁ ଆସିଥିଲେ । ଦିନେ ମୁଁ ଗ୍ରେୱାଲ୍‌ଙ୍କୁ ପଚାରିଲି, 'ତୁମେତ ବିଲାତରେ ରହୁଛ ଓ ରହିବ । ତେବେ ତୁମ ବନ୍ଧୁମାନଙ୍କ ଭିତରେ ଜଣେ ଇଂରେଜ ଛାତ୍ର ନାହାନ୍ତି କାହିଁକି ?'

ଗ୍ରେୱାଲ୍ ପ୍ରଥମେ ମୋ ପ୍ରଶ୍ନଟି ଠିକ୍ ବୁଝିପାରିଲେ ନାହିଁ । କହିଲେ, "ମୋର ଇଂରେଜ ବନ୍ଧୁ ତ ଅନେକ ଅଛନ୍ତି ।"

ତିନିମାସ ଭିତରେ ଜଣେ ଇଂରେଜ ବନ୍ଧୁ ତାଙ୍କୁ ଦେଖା କରିବାକୁ କାହିଁକି ଆସି ନାହାନ୍ତି ବୋଲି ମୁଁ ପଚାରିଲି । ଗ୍ରେୱାଲ୍ କିଛି ସମୟ ଆଲୋଚନା ପରେ ସ୍ୱୀକାର କଲେ, କୌଣସି କାରଣରୁ ବିଲାତରେ କଳା ଓ ଗୋରା ଲୋକେ ଦୁଇଟି ସମାନ୍ତରାଳ ଗୋଷ୍ଠୀପରି ଚଳନ୍ତି । ସାମାଜିକ କ୍ଷେତ୍ରରେ ସେମାନଙ୍କ ମଧ୍ୟରେ ସମ୍ପର୍କ କମ୍ । ଜଣେ କଳା ଓ ଗୋରା ଲୋକ ମଧ୍ୟରେ ଅନ୍ତରଙ୍ଗତା କେବେ କେଉଁଠି ଦେଖାଯାଏ ନାହିଁ, ନୁହେଁ, କିନ୍ତୁ ଏପରି ଅନ୍ତରଙ୍ଗତା ସ୍ୱାଭାବିକ ନୁହେଁ, ବ୍ୟତିକ୍ରମ ବୋଲି ମନେକରିବାକୁ ହେବ ।

ପାଶ୍ଚାତ୍ୟ ଜଗତରେ ଏସିଆ ଓ ଆଫ୍ରିକାକୁ 'ତୃତୀୟ ପୃଥିବୀ' ବା Third World ବୋଲି କୁହାଯାଏ । ଏଇ ପ୍ରଚଳିତ ଶବ୍ଦଟିରୁହିଁ ସୂଚନା ମିଳେ ଯେ ଗୋରା ଲୋକେ କଳା ଲୋକମାନଙ୍କୁ କେତେକାଂଶରେ ଭିନ୍ନ ଓ ବିଚିତ୍ର ବୋଲି ଭାବନ୍ତି । ତୃତୀୟ ପୃଥିବୀ କହିଲେ ପାଶ୍ଚାତ୍ୟ ଜଗତରେ ମୋଟାମୋଟି ଯେଉଁ ଧାରଣା ହୁଏ, ତାହା ହେଉଛି ଗୋରାମାନଙ୍କଦ୍ୱାରା ଶାସିତ ହେଉଥିବା ବା ହୋଇଥିବା ଦରିଦ୍ର ଓ ଅନୁନ୍ନତ କଳାରଙ୍ଗର ଲୋକମାନଙ୍କ ଦେଶସବୁ । ସାଧାରଣତଃ ଭାରତ, ବାଂଲାଦେଶ, ଚୀନ ଓ ଆଫ୍ରିକାର ଦେଶମାନଙ୍କ ସମ୍ପର୍କରେ ଏଇ

ଶବ୍ଦଟି ବ୍ୟବହାର କରାଯାଏ । ବାଂଲାଦେଶର ଦାରିଦ୍ର୍ୟ, ଭାରତ ଓ ଚୀନର ଜନାକୀର୍ଣ୍ଣତା, ଆଫ୍ରିକାର ଜଙ୍ଗଲୀ ଲୋକମାନଙ୍କର ଆଦିମ ଜୀବନଯାତ୍ରା ପ୍ରଭୃତି ବହୁ ସମୟରେ ଟେଲିଭିଜନ୍‌ରେ ଦେଖିବାକୁ ମିଳେ । ସେଇଥିରୁ ତୃତୀୟ ପୃଥିବୀ ସମ୍ପର୍କରେ ସାଧାରଣ ଲୋକଙ୍କର ଯାହା ଧାରଣା ହେଉଥିବ ।

ୟୁରୋପ୍, ଅଷ୍ଟ୍ରେଲିଆ ଓ ଆମେରିକା ତୁଳନାରେ ଏସିଆ ଓ ଆଫ୍ରିକା ମହାଦେଶର ଅଧିବାସୀମାନେ ଯେ ଦରିଦ୍ର ଓ ବହୁ କ୍ଷେତ୍ରରେ ଅନଗ୍ରସର, ଏହା ଅବଶ୍ୟ ବିବାଦୀୟ ନୁହେଁ; କିନ୍ତୁ ଏସିଆ ଓ ଆଫ୍ରିକାର ବୈଚିତ୍ର୍ୟ ସମ୍ପର୍କରେ ଧାରଣା ଦେବାକୁ ଯାଇ ଅନେକ ସମୟରେ ପାଶ୍ଚାତ୍ୟ ଲେଖକ, ସାମ୍ବାଦିକ ଓ ଚଳଚ୍ଚିତ୍ର ନିର୍ମାତାମାନେ ଏଇ ମହାଦେଶର କେତୋଟି ନିର୍ଦ୍ଦିଷ୍ଟ ଦିଗ ସମ୍ପର୍କରେ ହିଁ ଆଲୋକପାତ କରନ୍ତି । ଭାରତ ସମ୍ପର୍କରେ ମୋତେ ବିଭିନ୍ନ ସମୟରେ ଯେଉଁ ପ୍ରଶ୍ନସବୁ ପଚରା ଯାଉଥିଲା, ସେଇଥିରୁ ଭାରତ ସମ୍ପର୍କରେ ସାଧାରଣ ଇଂରେଜ ଲୋକଙ୍କ ଧାରଣାର କିଞ୍ଚିତ୍ ପରିଚୟ ମିଳିପାରିବ ।

(କ) ଭାରତର ଲୋକେ ଗୋରୁକୁ ପୂଜା କରନ୍ତି ?

(ଖ) ଭାରତରେ ସବୁଆଡ଼େ ସାପ, ସାପୁଆ କେଳା, ମହାରାଜା ଦେଖିବାକୁ ମିଳନ୍ତି ?

(ଗ) ଭାରତରେ ପ୍ରତି ଗାଆଁରେ ନୂଆ ନୂଆ ଭାଷା ଚଳେ ?

(ଘ) ଆପଣମାନେ କେଉଁ ଭାଷାରେ କଥାବାର୍ତ୍ତା କରନ୍ତି ?

(ଙ) ଭାରତରେ କ’ଣ ଲୋକମାନେ ଖାଇବାକୁ ପାଆନ୍ତି ନାହିଁ ?

ଏ ପ୍ରଶ୍ନଗୁଡ଼ିକ ଆପାତତଃ ନିରୀହ; କିନ୍ତୁ ବହୁ ସମୟରେ ଶିକ୍ଷିତ ଲୋକେ ହିଁ ଏଭଳି ପ୍ରଶ୍ନମାନ ପଚାରିଥାନ୍ତି । ଭାରତର ପ୍ରତି ଗାଆଁରେ ଭିନ୍ନ ଭିନ୍ନ ଭାଷା ଚଳେକି ବୋଲି ଇଂରାଜୀ ସାହିତ୍ୟରେ ଏମ୍.ଏ. କରୁଥିବା ଜଣେ ଛାତ୍ର ମୋତେ ପଚାରିଥିଲେ । ଭାରତ କହିଲେ ଏବେବି ପିଲାଠାରୁ ବୁଢ଼ା ସମସ୍ତଙ୍କ ମନକୁ ଆସେ – ସାପ, ସାପୁଆକେଳା, ହାତୀ, ମହାବଳ ବାଘ ଓ ମହାରାଜା । ଭାରତ ସମ୍ପର୍କରେ ଛୋଟ ପିଲାମାନଙ୍କ ବହିରେ ଏଇ ସବୁର ଛବି ହିଁ ଦିଆଯାଇଥାଏ । ମୋର ଛଅ ବର୍ଷର ପୁଅ ସ୍କୁଲ୍‌ରୁ ଭାରତ ସମ୍ପର୍କରେ ଏହିପରି ଧାରଣାଗୁଡ଼ିଏ ସଂଗ୍ରହ କରି ମୋତେ ବିଚିତ୍ର ପ୍ରଶ୍ନ ସବୁ ପଚାରୁଥିଲା । ମଜାର କଥା ହେଉଛି, ଅନେକ ସମୟରେ ଭାରତକୁ ଖୁବ୍ ଭଲଭାବେ ଜାଣିଥିବା ଭାରତୀୟ ଲେଖକ ଓ ସାମ୍ବାଦିକମାନେ ମଧ୍ୟ ଇଂରେଜ ବା ପାଶ୍ଚାତ୍ୟ ଦେଶର ଲୋକମାନଙ୍କ ଧାରଣାକୁ ସନ୍ତୁଷ୍ଟ କରିବା ଭଳି ସମ୍ବାଦ ବା ଲେଖାମାନ ଲେଖିଥାନ୍ତି । ବିଶେଷତଃ ଇଂରାଜୀଭାଷାରେ ଲେଖୁଥିବା ଭାରତୀୟ ଲେଖକମାନେ ଭାରତ ସମ୍ପର୍କରେ ଲେଖିଲାବେଳେ ଭାରତର ଗୋ-ପୂଜା, ବାବାଜୀ, ସାପ ଓ ମହାରାଜାମାନଙ୍କୁ ସେମାନଙ୍କ ପୃଷ୍ଠାରେ ଅତିରଞ୍ଜିତ ସ୍ଥାନ ଦେଇଥାନ୍ତି । ସେମାନଙ୍କ ବହିର ଭଲ କାଟ୍‌ତି ହେବା ସେମାନଙ୍କ ଲକ୍ଷ୍ୟ ହୋଇଥିବାରୁ

ଭାରତ ସମ୍ପର୍କରେ ଯାହା ଲେଖିଲେ ଇଂରେଜ ପାଠକମାନେ ପଢ଼ିବାକୁ ଭଲ ପାଇବେ, ସେମାନେ ତାହାହିଁ ଲେଖିଥାନ୍ତି ।

ଭାରତ ସମ୍ପର୍କରେ ବୁଦ୍ଧିମାନ୍ ଲେଖକମାନେ କିପରି ମିଥ୍ୟା ପ୍ରଚାର କରନ୍ତି, ତାହାର ଗୋଟିଏ କ୍ଷୁଦ୍ର ଉଦାହରଣ ଏଠାରେ ଦେଉଛି । ବିଲାତରେ ରହୁଥିବା ଜଣେ ଭାରତୀୟ ସାମ୍ବାଦିକ ବିଲାତର ଗୋଟିଏ ଦୈନିକ କାଗଜରେ ପଞ୍ଜାବର ଗୋଟିଏ ଗାଆଁ ସମ୍ପର୍କରେ ଲେଖିଥିଲେ । ଭାରତର ଶ୍ରମିକମାନଙ୍କ ଦାରିଦ୍ର୍ୟ ସମ୍ପର୍କରେ ଆଲୋକପାତ କରିବା ଥିଲା ତାଙ୍କର ଉଦ୍ଦେଶ୍ୟ । ସେ ଲେଖିଥିଲେ ଯେ ଭାରତର ଜଣେ ଶ୍ରମିକର ଦୈନିକ ଆୟ କୋଡ଼ିଏ ପେନ୍ସ । କୋଡ଼ିଏ ପେନ୍ସ ମୋଟାମୋଟି ତିନିଟଙ୍କା ସଙ୍ଗେ ସମାନ; କିନ୍ତୁ କୋଡ଼ିଏ ପେନ୍ସର କ୍ରୟଶକ୍ତି ତିନିଟଙ୍କାର କ୍ରୟଶକ୍ତିଠାରୁ ଯଥେଷ୍ଟ କମ୍ । ଭାରତରେ ତିନିଟଙ୍କାରେ ଜଣେ ଦୁଇଥର ଭାତ ଓ ଶାଗ ଅନ୍ତତଃ ଖାଇପାରିବ; କିନ୍ତୁ କୋଡ଼ିଏ ପେନ୍ସରେ ବିଲାତରେ ଗୋଟିଏ କପ୍ ଚା' ଛଡ଼ା ଆଉ କିଛି ମିଳିବ ନାହିଁ । ଚତୁର ସାମ୍ବାଦିକ ଭାରତୀୟ ଦାରିଦ୍ର୍ୟର ଭୟଙ୍କରତା ବୁଝାଇବାକୁ ଯାଇ କୋଡ଼ିଏ ପେନ୍ସ ଓ ତିନିଟଙ୍କାର କ୍ରୟଶକ୍ତି ସମ୍ପର୍କରେ ବୁଝାଇବାକୁ ଭୁଲି ଯାଇଥିଲେ ।

'ତୃତୀୟ ପୃଥିବୀ' ସମ୍ପର୍କରେ କେବଳ ଇଂରେଜ ବା ଗୋରା ଲୋକଙ୍କର ବିଚିତ୍ର ଧାରଣାମାନ ରହିଛି ବୋଲି ଭାବିବା ଭୁଲ୍ । ନିଜ ଦେଶ ବାହାରେ ବହୁ ବର୍ଷଧରି ରହି ଆସିଥିବା କଳାଲୋକମାନଙ୍କର ମଧ୍ୟ ସେମାନଙ୍କ ନିଜ ଦେଶ ସମ୍ପର୍କରେ ବିଚିତ୍ର ଧାରଣାମାନ ଅଛି । ନିଜ ଦେଶ ସମ୍ପର୍କରେ ଠିକ୍ କଥା ଜାଣିବା ପାଇଁ ସେମାନଙ୍କର ଅବଶ୍ୟ କୌଣସି ଉପାୟ ନାହିଁ । ଟେଲିଭିଜନ୍‌ରେ ହିନ୍ଦୁଧର୍ମ ସମ୍ପର୍କରେ ଗୋଟିଏ ପ୍ରୋଗ୍ରାମ୍ ଲକ୍ଷ୍ୟ କରିସାରିବା ପରେ ମୋର ଜଣେ ହିନ୍ଦୁ ମରିସସୀୟ ବନ୍ଧୁ ମୋତେ ପଚାରିଲେ – 'ଏକଥା କ'ଣ ସତ ଯେ ହିନ୍ଦୁମାନେ ତେତିଶ କୋଟି ଦେବତାରେ ବିଶ୍ୱାସ କରନ୍ତି ?' ଲାରିନିଓ ବୋଲି ଆଫ୍ରିକାର ଗୋଟିଏ ଫରାସୀଭାଷୀ ଉପନିବେଶରୁ ଆସିଥିବା ଆଉ ଜଣେ ହିନ୍ଦୁ ଛାତ୍ର ମୋତେ ବେଶ୍ ଗମ୍ଭୀର ଭାବରେ ଥରେ ପ୍ରଶ୍ନ କଲେ, 'ଭାରତକୁ ଗଲେ ବାବାଜୀ ଓ ମହାରାଜାମାନଙ୍କୁ ଦେଖିହେବ ?' ହିନ୍ଦୁଧର୍ମରେ ଯେ ଗୋଟିଏ ଈଶ୍ୱରଙ୍କୁ ବିଭିନ୍ନ ନାମରେ ଓ ବିଭିନ୍ନ ରୂପରେ ପୂଜା କରାଯାଏ ଏବଂ ପୃଥିବୀର ସମସ୍ତ ପ୍ରାଣୀଙ୍କଠାରେ (ତେତିଶ କୋଟି ?) ଐଶ୍ୱରିକ ସତ୍ତାର ଉପସ୍ଥିତି ସ୍ୱୀକାର କରାଯାଏ, ତାହା ଟେଲିଭିଜନ୍ ପ୍ରୋଗ୍ରାମ୍‌ରେ କୁହାଯାଇଥିଲେ ପ୍ରଥମ ବନ୍ଧୁ ଏଭଳି ପ୍ରଶ୍ନ ପଚାରି ନ ଥା'ନ୍ତେ । ସେହିପରି ବାବାଜୀ ଓ ମହାରାଜାମାନେ କେବଳ ଭାରତର ନିଜସ୍ୱ ନୁହନ୍ତି, ସବୁ ଦେଶରେ ସେମାନେ ବିଭିନ୍ନ ନାମ ଓ ଆଭରଣ ତଳେ ବିଦ୍ୟମାନ ଅଛନ୍ତି, ଏହା ବୁଝାଇ ଦିଆଯାଇଥିଲେ ଦ୍ୱିତୀୟ ବନ୍ଧୁ ହୁଏତ ଭାରତ ସମ୍ପର୍କରେ ଅପେକ୍ଷାକୃତ କୌଣସି ପ୍ରାସଙ୍ଗିକ ପ୍ରଶ୍ନ ପଚାରିଥା'ନ୍ତେ । କହିରଖେ କି ଏ ଦୁଇବନ୍ଧୁ ଭାରତ ଦେଖି ନାହାନ୍ତି, ସେମାନଙ୍କ ପୂର୍ବପୁରୁଷମାନେ ଦୀର୍ଘଦିନ ତଳେ ଭାରତରୁ ଯାଇ ଆଫ୍ରିକାରେ ରହିଥିଲେ ।

ତୃତୀୟ ପୃଥିବୀ ଅଧିବାସୀମାନେ ପରସ୍ପର ସମ୍ପର୍କରେ କିଭଳି ଭୁଲ ଧାରଣାମାନ ପୋଷଣ କରିଥା'ନ୍ତି, ତାହାର ଆଉ ଗୋଟିଏ ଉଦାହରଣ ହେଉଛି – ଗ୍ୟାମ୍‌ବ୍ରିଜ ହଲ୍‌ରେ ରହୁଥିବା ସମୟରେ ଆଫ୍ରିକାର କେତେଜଣ ସ୍କଲାର୍‌ଙ୍କ ସଙ୍ଗେ ଦିନେ ଆଲୋଚନା ହେଉଥିଲା । ୟୁରୋପ୍‌ର ଲୋକେ ଆଫ୍ରିକାର କଳାଲୋକମାନଙ୍କ ସମ୍ପର୍କରେ କିଭଳି ବିଚିତ୍ର ଧାରଣାମାନ ରଖିଥା'ନ୍ତି, ସେଇ କଥା ଅତି ଦୁଃଖର ସହିତ ଆଫ୍ରିକାର ବନ୍ଧୁମାନେ କହୁଥାନ୍ତି । ନାଇଜେରିଆର ଲୋକେ ୟୁରୋପୀୟମାନଙ୍କ ଅଜ୍ଞତା ସମ୍ପର୍କରେ ମନ୍ତବ୍ୟ ଦେଇସାରି କହିଲେ, ତେବେ ଖାଲି ସେମାନଙ୍କୁ ଦୋଷ ଦେଲେ ଚଳିବ ନାହିଁ । ଆମମାନଙ୍କର ପରସ୍ପର ସମ୍ପର୍କରେ ଅନେକ ଭୁଲ୍ ଧାରଣା ଅଛି । ଆମର ନିଜର ବହୁଦିନଯାଏଁ ବିଶ୍ୱାସ ଥିଲା ଯେ କଙ୍ଗୋରେ ସବୁ ଲୋକମାନେ ବାମନ (Pigmy) ଓ ସେମାନେ ମାଙ୍କଡ଼ ପରି ଗଛରେ ରହନ୍ତି ।

ଆମେ ଭାରତୀୟମାନେ ମଧ୍ୟ ଆଫ୍ରିକା ମହାଦେଶ ସମ୍ପର୍କରେ ବିଚିତ୍ର ଧାରଣା ଓ ମନୋଭାବ ପୋଷଣ କରିଥାଉଁ । ଆଫ୍ରିକା ଯେ ଶିଳ୍ପ, ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଅନେକ ସମୟରେ ଭାରତ ସହିତ ତୁଳନୀୟ, ଆମ ମଧ୍ୟରୁ ଅନେକେ ତାହା ଜାଣନ୍ତି ନାହିଁ । ୟୁରୋପରେ ସଙ୍ଗୀତ ଓ କ୍ରୀଡ଼ାକ୍ଷେତ୍ରରେ ଆଫ୍ରିକାର ଯୁବକଯୁବତୀମାନେ ନିଜକୁ ଯେଭଳି ପ୍ରତିଷ୍ଠିତ କରିପାରିଛନ୍ତି, ଭାରତ ଉପମହାଦେଶର ଲୋକେ କୌଣସି କ୍ଷେତ୍ରରେ ସେଭଳି କରିପାରି ନାହାନ୍ତି । ଆମର ପଡ଼ୋଶୀ ଶ୍ରୀଲଙ୍କା, ଚୀନ୍, ମାଲେସିଆ ପ୍ରଭୃତି ଦେଶମାନଙ୍କ ସମ୍ପର୍କରେ ମଧ୍ୟ ଆମର ଅଜ୍ଞତା ଯଥେଷ୍ଟ ।

ମଜା ଓ ଦୁଃଖର କଥା ହେଉଛି ଆଜିର ଏସିଆ ଓ ଆଫ୍ରିକାର ଦେଶମାନେ ବର୍ତ୍ତମାନ ସବୁ କଥାରେ ପାଶ୍ଚାତ୍ୟ ଜଗତକୁ ଅନାଇ ରହିଛନ୍ତି ଏବଂ ପରସ୍ପରକୁ ଜାଣିବା ଓ ପରସ୍ପର ସହିତ ସମ୍ପର୍କ ସ୍ଥାପନ କରିବା ଉପରେ ଆବଶ୍ୟକୀୟ ଗୁରୁତ୍ୱ ଦେଉ ନାହାନ୍ତି । ଉଦାହରଣସ୍ୱରୂପ, ଭାରତରେ ୟୁରୋପ୍ ଓ ଆମେରିକା ପ୍ରଭୃତି ସମ୍ପର୍କରେ ଏତେ ଶିକ୍ଷା ଦିଆଯାଉଥିବାବେଳେ, ଆମର ପଡ଼ୋଶୀ ଶ୍ରୀଲଙ୍କା, ଥାଇଲାଣ୍ଡ ଓ ପାକିସ୍ତାନ ସମ୍ପର୍କରେ ଛାତ୍ରଛାତ୍ରୀମାନଙ୍କୁ କୌଣସି ସ୍ତରରେ ପ୍ରାୟ କିଛି କୁହାଯାଏ ନାହିଁ । ଇଂରେଜ ଓ ଅନ୍ୟାନ୍ୟ ଉପନିବେଶକାରୀ ଶକ୍ତିମାନେ ଆମର ଆମ ପଡ଼ୋଶୀ ବା ତୃତୀୟ ପୃଥିବୀର ଅନ୍ୟାନ୍ୟ ଦେଶମାନଙ୍କ ସମ୍ପର୍କରେ ଯାହା ଧାରଣା ଦେଇଛନ୍ତି, ଆମେମାନେ ସେଇ ଧାରଣାର ଊର୍ଦ୍ଧ୍ୱକୁ ଉଠି ପାରୁ ନାହିଁ । ସେମାନେ ଯେ ସେମାନଙ୍କ ଅଜ୍ଞତା ବା ଔପନିବେଶିକ ସ୍ୱାର୍ଥ ସିଦ୍ଧି ଉଦ୍ଦେଶ୍ୟରେ ବହୁ ସମୟରେ ଏସିଆ ଓ ଆଫ୍ରିକାର ଦେଶମାନଙ୍କ ସମ୍ପର୍କରେ ମିଥ୍ୟା ପ୍ରଚାର କରିଛନ୍ତି ଓ କରୁଛନ୍ତି ଏହା ନିଃସନ୍ଦେହ ।

ୟୁରୋପ୍ ଓ ଆମେରିକାର ଦେଶମାନଙ୍କ ତୁଳନାରେ ଏସିଆ ଓ ଆଫ୍ରିକାର ଦେଶମାନଙ୍କ ସହିତ ଆମେ କେତେ ନିକଟବର୍ତ୍ତୀ ତାହା ବିଲାତରେ ରହୁଥିବା ସମୟରେ ମୁଁ କେତେକାଂଶରେ ଅନୁଭବ କରିଥିଲି । କ୍ୟାଣ୍ଟରବରୀରେ ଆମ ଘର ସମ୍ମୁଖରେ ମାଲୟେସିଆର ଜଣେ

ଭଦ୍ରଲୋକ ତାଙ୍କ ପରିବାର ସହିତ ରହୁଥିଲେ । ଏତେ ନିକଟରେ ରହି ସୁଦ୍ଧା ମାସ ମାସ ଧରି ଆମର ସମ୍ପର୍କ କେବଳ 'ହ୍ୟାଲୋ', 'କିପରି ଅଛନ୍ତି'ର ସୀମା ଅତିକ୍ରମ କରି ନ ଥିଲା । ହଠାତ୍ ଦିନେ କୌଣସି କାରଣରୁ ଭଦ୍ରଲୋକ ମୋତେ ଆସି ସନ୍ଧ୍ୟାରେ ତାଙ୍କ ଘରେ ଖାଇବା ପାଇଁ ନିମନ୍ତ୍ରଣ କଲେ । ସନ୍ଧ୍ୟାରେ ତାଙ୍କ ଘରକୁ ଯାଇ ଦେଖିଲି, ତାଙ୍କ ସ୍ତ୍ରୀ ଠିକ୍ ଭାରତୀୟଙ୍କ ପରି ଭାତ ଓ ଚିଙ୍ଗୁଡ଼ି ତରକାରି ରାନ୍ଧିଛନ୍ତି । ତାଙ୍କ ଟେପ୍‌ରେକର୍ଡ଼ରେ ହିନ୍ଦୀ ଚଳଚ୍ଚିତ୍ର ଗୀତ ସବୁ ବାଜୁଛି । ଖାଦ୍ୟପେୟରେ ଯେ ମାଲୟେସିଆର ରୁଚି ଭାରତୀୟ ରୁଚି ସଙ୍ଗେ ପ୍ରାୟ ସମାନ ଏବଂ ହିନ୍ଦୀ ଚଳଚ୍ଚିତ୍ର ଯେ ମାଲୟେସିଆରେ ଏତେ ବେଶି ଜନପ୍ରିୟ, ମୋର ଧାରଣା ହିଁ ନ ଥିଲା । ପରସ୍ପର ପଡ଼ୋଶୀ ହୋଇ ଏତେ ଦିନ ରହିବା ପରେ ମଧ୍ୟ ଭଦ୍ରଲୋକଙ୍କ ସମ୍ପର୍କରେ ଏତେ କମ୍ ଜାଣିଥିବାରୁ ମୁଁ ଲଜ୍ଜା ଅନୁଭବ କଲି ।

ଶ୍ରୀଲଙ୍କାର ଦୁଇଜଣ ଭଦ୍ରଲୋକଙ୍କ ସହିତ ମୋର ଅନେକଟା ଘନିଷ୍ଠତା ହୋଇଥିଲା । ସାଂସ୍କୃତିକ ଦୃଷ୍ଟିରୁ ବିଚାର କଲେ ଶ୍ରୀଲଙ୍କା ଓ ଭାରତ ମଧ୍ୟରେ ସମ୍ପର୍କ ଅତି ଗଭୀର । ଶ୍ରୀଲଙ୍କାର ଲୋକମାନଙ୍କର ଚାଲିଚଳଣ, ରୁଚି ଓ ରୀତିନୀତିରେ ଏପରି କିଛି ନାହିଁ, ଯାହାକି ସେମାନେ ଭାରତୀୟ ନୁହନ୍ତି ବୋଲି ଚିହ୍ନାଇ ଦେବ । ଭାରତୀୟ ଭାଷା ବିଶେଷତଃ ଓଡ଼ିଆ ସହିତ ସିଂହଳୀର ସାମଞ୍ଜସ୍ୟ ଲକ୍ଷ୍ୟ କରି ମୁଁ ଆଶ୍ଚର୍ଯ୍ୟ ହୋଇଥିଲି । ଆମଘରକୁ ନିମନ୍ତ୍ରିତ ଶ୍ରୀଲଙ୍କାର ବନ୍ଧୁମାନେ ଅନେକ ସମୟରେ ଆମର ଓଡ଼ିଆ କଥାବାର୍ତ୍ତା ବୁଝିପାରୁଥିଲେ । ସୁଦୂର ଅତୀତରେ ଓଡ଼ିଶା ସହିତ ଶ୍ରୀଲଙ୍କାର କିଭଳି ନିବିଡ଼ ସମ୍ପର୍କ ଥିଲା, ଏହା ଅବଶ୍ୟ ଇତିହାସରେ ସ୍ୱୀକୃତ; କିନ୍ତୁ ବର୍ତ୍ତମାନ ସୁଦ୍ଧା ଓଡ଼ିଶା ଓ ଶ୍ରୀଲଙ୍କା ମଧ୍ୟରେ ଯେ ଏତେ ସାମଞ୍ଜସ୍ୟ ଅଛି, ତାହା ବାସ୍ତବିକ୍ ଆଶ୍ଚର୍ଯ୍ୟଜନକ ।

ବିଲାତରେ ଏସିଆ ଓ ଆଫ୍ରିକାର ଲୋକେ କେତେ ସଂଖ୍ୟାରେ ବସବାସ କରନ୍ତି, ଲଣ୍ଡନ୍‌ର ରାସ୍ତାମାନଙ୍କରେ ଥରେ ବୁଲିଆସିଲେ ସେ ସମ୍ପର୍କରେ ମୋଟାମୋଟି ଧାରଣା କରିହେବ । ଲଣ୍ଡନ୍‌ରେ ପ୍ରାୟ ପ୍ରତି ଦଶଜଣ ଗୋରାଲୋକରେ ଜଣେ ନିଗ୍ରୋ ବା ଭାରତୀୟ ଆଖିରେ ପଡ଼େ । ତୃତୀୟ ପୃଥିବୀର ଏହି ଲୋକମାନେ ବିଗତ ଦୁଇଶତାବ୍ଦୀ ମଧ୍ୟରେ ଇଂରେଜମାନଙ୍କ ଶାସିତ ଉପନିବେଶମାନଙ୍କରୁ ଆସିଛନ୍ତି ଏବଂ ବର୍ତ୍ତମାନ ସୁଦ୍ଧା ଆସୁଛନ୍ତି । ଇଂରେଜମାନଙ୍କ ଶାସିତ ପ୍ରାୟ ସମସ୍ତ ଦେଶ ସ୍ୱାଧୀନ ହୋଇଗଲେଣି; କିନ୍ତୁ ସ୍ୱାଧୀନତା ଲାଭ ପରେ ସେ ସବୁ ଦେଶର ଲୋକମାନଙ୍କର ସେମାନଙ୍କ ଶାସକ ଦେଶ ପ୍ରତି ପ୍ରଚଣ୍ଡ ଆକର୍ଷଣ ରହିଛି । ଭାରତ, ପାକିସ୍ତାନ, ବାଂଲାଦେଶ, ନାଇଜେରିଆ, ୱେଷ୍ଟଇଣ୍ଡିଜ୍ ପ୍ରଭୃତି ଦେଶର ଅସଂଖ୍ୟ ଲୋକ ବିଲାତ ଆସି ସ୍ଥାୟୀ ଭାବରେ ବସବାସ କରିବାକୁ ବ୍ୟାକୁଳ । ଏହି ବ୍ୟାକୁଳତାର ଅବଶ୍ୟ ବହୁ କାରଣ ଅଛି; କିନ୍ତୁ ମୂଳ କାରଣ ହେଉଛି ଆର୍ଥନୀତିକ । ଏକ ଦରିଦ୍ର ଦେଶରୁ ଆସି ଏକ ସମୃଦ୍ଧିଶାଳୀ ଦେଶରେ ରହି ଉଚ୍ଚ ଜୀବନ ଧାରଣର ମାନ ଉପଭୋଗ କରିବା ଅନେକଙ୍କ ପାଇଁ ଏକ ସ୍ୱାଭାବିକ ଆକର୍ଷଣ ।

ବିଲାତରେ ରହୁଥିବା ତୃତୀୟ ପୃଥିବୀର ଲୋକମାନଙ୍କ ସମ୍ପର୍କରେ ଦୁଇଟି କଥା ମୁଁ କହିବାକୁ ଚାହେଁ । ସେମାନେ ପରସ୍ପର ସହିତ ରଖିଥିବା ସମ୍ପର୍କ ଏବଂ ଇଂରେଜମାନଙ୍କ ସହିତ ସେମାନଙ୍କ ସମ୍ପର୍କ । ବିଲାତ ବାହାରେ ବିଶେଷତଃ ଭାରତରେ ଅଧିକାଂଶଙ୍କ ଧାରଣା ଯେ ବିଲାତରେ ଗୋରା ଓ କଳା ଲୋକଙ୍କ ମଧ୍ୟରେ ଅବିରାମ ସଂଘର୍ଷ ଓ ବିବାଦ ଲାଗି ରହିଛି । ଏଭଳି ଧାରଣା କେତେକାଂଶରେ ଠିକ୍; କିନ୍ତୁ ଏଠାରେ ମନେରଖିବା ଉଚିତ ଯେ କଳା ଲୋକମାନଙ୍କ ମଧ୍ୟରେ ବି ସବୁବେଳେ ଏକତା ନାହିଁ । ପୁଣି ଯେଉଁ ଇଂରେଜମାନେ କଳାଲୋକଙ୍କ ସହିତ ସଂଘର୍ଷ ସୃଷ୍ଟି କରିଛନ୍ତି ବା ସୃଷ୍ଟି କରିବାରେ ବିଶ୍ୱାସ କରିନ୍ତି, ସେମାନଙ୍କ ସଂଖ୍ୟା ବେଶି ନୁହେଁ ।

ବିଲାତରେ ତୃତୀୟ ପୃଥିବୀର ଲୋକ କହିଲେ ସ୍ଥୂଳତଃ ନିଗ୍ରୋ ଓ ଭାରତୀୟମାନଙ୍କୁ ହିଁ ବୁଝାଏ । ନିଗ୍ରୋମାନେ ଆଫ୍ରିକା ଓ ୱେଷ୍ଟଇଣ୍ଡିଜ୍‌ରୁ ଆସିଛନ୍ତି । ଭାରତୀୟ କହିଲେ ଭାରତ ଉପମହାଦେଶ ଅର୍ଥାତ୍ ଭାରତ; ପାକିସ୍ତାନ, ବାଂଲାଦେଶ ଓ ଶ୍ରୀଲଙ୍କାରୁ ଆସିଥିବା ସମସ୍ତଙ୍କୁ ନିଆଯାଇପାରେ । ବାହାରୁ ସାଧାରଣତଃ ମନେହୁଏ, ବିଲାତରେ ସବୁ କଳାଲୋକଙ୍କର ସମସ୍ୟା ଏକ । ତେଣୁ ସେମାନଙ୍କ ମଧ୍ୟରେ ଯଥେଷ୍ଟ ଏକତା ଓ ବୁଝାମଣା ଥିବ । ଆମେ ଭାରତୀୟମାନେ କଳ୍ପନା କରିବା ସ୍ୱାଭାବିକ ଯେ ସବୁ ନିଗ୍ରୋ ଗୋଟିଏ ପରିବାର ଭଳି । ସେହିପରି ଉପମହାଦେଶରୁ ଆସିଥିବା ସମସ୍ତଙ୍କ ମଧ୍ୟରେ ଅଖଣ୍ଡ ଭ୍ରାତୃବନ୍ଧନ ଥିବ ବୋଲି ନିଗ୍ରୋ ଓ ଇଂରେଜମାନେ ବିଶ୍ୱାସ କରିବାରେ ଆଶ୍ଚର୍ଯ୍ୟଜନକ କିଛି ନାହିଁ ।

ଆଫ୍ରିକାର ବିଭିନ୍ନ ଦେଶ ଓ ୱେଷ୍ଟଇଣ୍ଡିଜ୍‌ରୁ ଆସି ବିଲାତରେ ରହୁଥିବା ନିଗ୍ରୋମାନଙ୍କର ପରସ୍ପର ସହିତ ସମ୍ପର୍କ କେତେଦୂର ବନ୍ଧୁତ୍ୱପର୍ଣ୍ଣ, ତାହା ମୁଁ ଭଲ ଭାବେ ଜାଣେ ନାହିଁ; କିନ୍ତୁ ଉପମହାଦେଶର ଲୋକମାନଙ୍କ ମଧ୍ୟରେ ଅନେକ ସମୟରେ ତିକ୍ତ ସମ୍ପର୍କ ଥିବା ମୁଁ ଲକ୍ଷ୍ୟ କରିଛି । ଏଇ ତିକ୍ତତା ଆକସ୍ମିକ ବା ବ୍ୟକ୍ତିଗତ ଘଟନା ହୋଇଥିଲେ ସେଥିରେ ବିଶେଷ ଗୁରୁତ୍ୱ ଆରୋପ ଆବଶ୍ୟକ ହୁଅନ୍ତା ନାହିଁ; କିନ୍ତୁ ଅଧିକାଂଶ ସମୟରେ ଧର୍ମ ଓ ଜାତୀୟତା ଏଭଳି ତିକ୍ତତାର କାରଣ । ବିଲାତରେ ରହୁଥିବା ଉପମହାଦେଶର ଲୋକେ ସେମାନଙ୍କ ଉପସ୍ଥିତ ସମସ୍ୟା ଅର୍ଥାତ୍ ଇଂରେଜ ସମାଜରେ ସମ୍ମାନଜନକ ଜୀବନଯାପନ ବିଷୟରେ ଚିନ୍ତା ନ କରି ଅନେକ ସମୟରେ ଗୋଷ୍ଠୀବିବାଦରେ ସେମାନଙ୍କ ସମୟ ଓ ଶକ୍ତିର ଅପଚୟ କରନ୍ତି ।

କ୍ୟାଣ୍ଟର୍‌ବରୀରେ ମୋର ଜଣେ ଭାରତୀୟ ବନ୍ଧୁ ଗୋଟିଏ ସ୍ଥାନୀୟ ପାକିସ୍ତାନୀ ହୋଟେଲ୍‌ରେ କାମ କରୁଥିଲେ । ମୋର ବନ୍ଧୁ ଥିଲେ ବଙ୍ଗାଳୀ । ପୁଣି ପାକିସ୍ତାନୀ ହୋଟେଲ୍‌ର ମାଲିକ ଓ କର୍ମଚାରୀମାନେ ମଧ୍ୟ ଥିଲେ ବଙ୍ଗାଳୀ । (ହୁଏତ ବାଂଲାଦେଶ ସୃଷ୍ଟି ହେବା ପୂର୍ବରୁ ସେ ହୋଟେଲ୍‌ଟି ସ୍ଥାପିତ ହୋଇଥିବାରୁ ତାହାର 'ପାକିସ୍ତାନୀ' ପରିଚୟଟା ବଦଳି

ନ ଥିଲା ।) ସାଧାରଣତଃ ଶିକ୍ଷା ବା ଗବେଷଣାପାଇଁ ବିଲାତ ଯାଇଥିବା ଭାରତୀୟମାନଙ୍କୁ Work Permit ଅର୍ଥାତ୍ ଚାକିରି କରିବା ପାଇଁ ଅନୁମତି ମିଳେ ନାହିଁ; କିନ୍ତୁ ମୋର ବଙ୍ଗାଳୀ ବନ୍ଧୁ ବଙ୍ଗାଳୀ ମାଲିକଙ୍କ ହୋଟେଲରେ କାମଟିଏ ପାଇଯିବାରେ ମୁଁ ଆଶ୍ଚର୍ଯ୍ୟ ହୋଇ ନ ଥିଲି । ସମଭାଷାଭାଷୀ ହୋଇଥିବାରୁ ସେମାନଙ୍କ ମଧ୍ୟରେ ବୁଝାମଣା ଓ ଏକତା ସ୍ୱାଭାବିକ ବୋଲି ମୁଁ ମନେ କରିଥିଲି ।

କିନ୍ତୁ ଦିନେ ମୋର ବନ୍ଧୁ ଅତି ଦୁଃଖରେ ମୋତେ ତାଙ୍କ ହୋଟେଲ୍ ଚାକିରିର ତିକ୍ତ ଅନୁଭୂତି ସମ୍ପର୍କରେ ଯାହା କହିଲେ, ସେଥିରୁ ମୋର ପୂର୍ବଧାରଣା ଅନେକଟା ବଦଳିଗଲା । ବନ୍ଧୁ କହିଲେ, ନିହାତି ଆର୍ଥିକ ଅସୁବିଧାରେ ପଡ଼ି ସେ ସେଠାରେ ଚାକିରି କରୁଛନ୍ତି; କିନ୍ତୁ ପ୍ରାୟ ପ୍ରତିଦିନ ତାଙ୍କୁ ସେଠାରେ ଅତି କୁତ୍ସିତ ଭାବରେ ଅପମାନ ଦିଆଯାଏ । ହୋଟେଲ୍‌ର ଅନ୍ୟ କର୍ମଚାରୀମାନେ ଅଶ୍ଳୀଳ ଭାଷାରେ ହିନ୍ଦୁମାନଙ୍କ ଦେବଦେବୀଙ୍କୁ ଗାଳି ଦିଅନ୍ତି । ଭାରତର ପ୍ରଧାନମନ୍ତ୍ରୀ ଇନ୍ଦିରାଗାନ୍ଧିଙ୍କ ସମ୍ପର୍କରେ ମଧ୍ୟ ଅଶ୍ଳୀଳ ମନ୍ତବ୍ୟ ଦିଅନ୍ତି । ମୋର ବନ୍ଧୁ ସେ ହୋଟେଲ୍‌ରେ କାମ ଛାଡ଼ିଦେଲେ, କିନ୍ତୁ କାମ ଛାଡ଼ିବା ପରେ ଗୋଟିଏ ପାହାଡ଼ରୁ ପଡ଼ି ଗୋଡ଼ ଭାଙ୍ଗି ସେ କିଛିଦିନ ଡାକ୍ତରଖାନାରେ ପଡ଼ିଲେ ଓ ସେତେବେଳେ ତାଙ୍କର ସେବାଶୁଶ୍ରୂଷା କରିଥିଲେ ସେଇ ପାକିସ୍ତାନୀ ହୋଟେଲ୍‌ର କେତେଜଣ ବଙ୍ଗାଳୀ !

ଏଇ କ୍ଷୁଦ୍ର ଘଟନାଟିରୁ ତୃତୀୟ ପୃଥିବୀର ଲୋକମାନଙ୍କ ମଧ୍ୟରେ ଥିବା ସମ୍ପର୍କ ବୁଝିହେବ । ଏ ସମ୍ପର୍କ ଉଭୟ ପ୍ରେମ ଓ ଘୃଣା ଉପରେ ପ୍ରତିଷ୍ଠିତ । ବଙ୍ଗାଳୀ ନ ହୋଇଥିଲେ ମୋର ବନ୍ଧୁ ପାକିସ୍ତାନୀ ହୋଟେଲରେ ଚାକିରି ପାଇ ନ ଥାନ୍ତେ କିମ୍ବା ଅସୁସ୍ଥ ଅବସ୍ଥାରେ ସେବା ଶୁଶ୍ରୂଷା ପାଇ ନ ଥାନ୍ତେ, ଅଥଚ ହିନ୍ଦୁ ଓ ଭାରତୀୟ ହୋଇଥିବାରୁ ବନ୍ଧୁ କୁତ୍ସିତ ଅପମାନ ମଧ୍ୟ ତାଙ୍କର ପ୍ରାପ୍ୟ । ମୋଟ ଉପରେ ହୋଟେଲର କର୍ମଚାରୀ ଓ ମୋ ବନ୍ଧୁଙ୍କ ମଧ୍ୟରେ ଥିବା ସମ୍ପର୍କ ବୁଝିବା ବା ବୁଝାଇବା କଠିନ । ଏହା ଠିକ୍ ବନ୍ଧୁତା ନୁହେଁ; ଶତ୍ରୁତା ମଧ୍ୟ ନୁହେଁ ।

ରାଦାର୍‌ଫୋର୍ଡ୍ କଲେଜରେ ଭାରତ ଉପମହାଦେଶରୁ ଆମେ ଯେଉଁ ଛାତ୍ରମାନେ ଥିଲୁ, ଆମ ମଧ୍ୟରେ ସେହିପରି ପ୍ରେମ–ଘୃଣାର ସମ୍ପର୍କ ଥିଲା ବୋଲି କୁହାଯାଇପାରେ । ସବ୍‌ଜୱାର୍ ଥିଲେ ମୋର ଜଣେ ପାକିସ୍ତାନୀ ବନ୍ଧୁ । ଆଉ ଜଣେ ଭାରତୀୟ ବନ୍ଧୁ ଯୋଗୀନ୍ଦ୍ର ସିଂ ପ୍ରାୟ ପ୍ରତି ସନ୍ଧ୍ୟାରେ ସବ୍‌ଜୱାର୍‌ଙ୍କ ରୁମ୍‌କୁ ଆସନ୍ତି । ସେମାନେ ଉଭୟେ ହିନ୍ଦୁସ୍ତାନୀରେ କଥା କହନ୍ତି । ସେମାନଙ୍କ ଖାଦ୍ୟପେୟ, ରୀତିନୀତି ପ୍ରାୟ ସମାନ । ଅଥଚ ସମୟେ ସମୟେ ଦେଶ ଓ ଧର୍ମ ବିଷୟ ଆଲୋଚନା କଲାବେଳେ ମନେହୁଏ ସେମାନେ ହାତାହାତି ହୋଇଯିବେ । ଥରେ କିଛିଦିନପାଇଁ ସବ୍‌ଜୱାର୍ ସିଂଙ୍କ ମଧ୍ୟରେ କଥାଭାଷା ନ ଥିଲା । ଅଥଚ ସବ୍‌ଜୱାର୍ ଇଂଲାଣ୍ଡ ଛାଡ଼ିବା ପୂର୍ବରୁ ପୁଣି ଦୁହିଁଙ୍କ ମଧ୍ୟରେ ମିଳାମିଶା ହୋଇଗଲା ଓ ସବ୍‌ଜୱାର୍ ଇଂଲାଣ୍ଡରେ ତାଙ୍କର ଶେଷ କେତେଦିନ ଯୋଗୀନ୍ଦ୍ର ସିଂଙ୍କ ରୁମ୍‌ରେ ହିଁ ରହିଲେ ।

ଭାରତୀୟ ଉପମହାଦେଶ ତଥା ତୃତୀୟ ପୃଥିବୀର ଲୋକମାନଙ୍କ ଐତିହାସିକ ଓ ସାଂସ୍କୃତିକ ପୃଷ୍ଠଭୂମି ଅନେକାଂଶରେ ସମାନ । ତେଣୁ ଭାଲ୍ ଓ ମୋ ମଧ୍ୟରେ ଅକ୍ଳେଶରେ ବନ୍ଧୁତା ପ୍ରତିଷ୍ଠିତ ହେଲାଭଳି, ଭାରତୀୟ ଓ ଶ୍ରୀଲଙ୍କାର ଅଧିବାସୀ ବା ନାଇଜେରିଆ ଓ କେନିଆର ଅଧିବାସୀଙ୍କ ମଧ୍ୟରେ ବନ୍ଧୁତା ଓ ସମ୍ପର୍କ ସହଜ ଓ ସ୍ୱାଭାବିକ । ପୁଣି ଆର୍ଥିକ ସ୍ଥିତି ଓ ଚମତ୍କାର ରଙ୍ଗ ତୃତୀୟ ପୃଥିବୀର ଲୋକମାନଙ୍କୁ ପରସ୍ପରର ନିକଟତର କରିବାରେ ଯଥେଷ୍ଟ ସାହାଯ୍ୟ କରିଛି । ତେଣୁ ଇଂରେଜ ଲୋକମାନଙ୍କ ସହିତ ସମାନ ଅଧିକାର ଦାବି କରିବାବେଳେ କିମ୍ବା ଉପନିବେଶବାଦ ବିରୋଧରେ ସ୍ୱର ଉତ୍ତୋଳନ କଲାବେଳେ, ଭାରତୀୟ, ପାକିସ୍ତାନୀ, ବାଂଲାଦେଶୀ, ନାଇଜେରିଆନ୍ ବା କେନିଆନ୍ ଗୋଟିଏ ଜାତିର ମଣିଷଭଳି ବ୍ୟବହାର କରନ୍ତି; କିନ୍ତୁ ଯେତେବେଳେ ଧର୍ମ, ନିଜ ଦେଶର ସୀମାରେଖା ବା ଜାତୀୟତାର ପ୍ରଶ୍ନ ଉଠେ, ସେତେବେଳେ ସେମାନେ ପରସ୍ପର ବିରୋଧରେ ବିଷୋଦ୍‌ଗାର କରି ପରସ୍ପରର ଶତ୍ରୁରେ ପରିଣତ ହୋଇଯା'ନ୍ତି ।

ଉପମହାଦେଶର ଅଧିବାସୀମାନେ ନିଜ ଦେଶ ଅପେକ୍ଷା ନିଜ ଧର୍ମ ପ୍ରତି ଅଧିକ ଅନୁଗତ ବୋଲି ମୋର ଧାରଣା ହୋଇଛି । ଭାରତର ବାହାରେ ଚଳୁଥିବା ବେଳେ ଭାରତର ମୁସଲମାନ ସ୍ୱାଭାବିକ ଭାବେ ପାକିସ୍ତାନୀକୁ ନିଜ ବନ୍ଧୁ ରୂପେ ବାଛିନିଏ । ସେହିପରି ବାଂଲାଦେଶର ହିନ୍ଦୁ ଭାରତୀୟ ହିନ୍ଦୁକୁ ଅକ୍ଳେଶରେ ନିଜର ବନ୍ଧୁ ରୂପେ ଗ୍ରହଣ କରେ । ଉପମହାଦେଶର ଜଣେ ହିନ୍ଦୁ ଓ ଜଣେ ମୁସଲମାନ ମଧ୍ୟରେ ଆନ୍ତରିକତା କ୍ୱଚିତ୍ ଦେଖିବାକୁ ମିଳେ । ସାଧାରଣତଃ ସେମାନଙ୍କ ସମ୍ପର୍କ ସବ୍‌ଇଓ୍ୱାର୍-ସିଂଙ୍କ ସମ୍ପର୍କଠାରୁ ଭିନ୍ନ ନୁହେଁ । ଭାରତର ଅତୀତ ଇତିହାସ ବିଶେଷତଃ ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ଘଟିଥିବା ସାମ୍ପ୍ରଦାୟିକ ସଂଘର୍ଷ ଏବଂ ଦେଶ ବିଭାଗ, ହିନ୍ଦୁ ଓ ମୁସଲମାନମାନଙ୍କ ବ୍ୟକ୍ତିଗତ ସମ୍ପର୍କକୁ ଖୁବ୍ ବେଶି ପ୍ରଭାବିତ କରେ । ବାଂଲାଦେଶ ସୃଷ୍ଟି ପରେ ବାଂଲାଦେଶର ଲୋକମାନଙ୍କ ମଧ୍ୟରେ ବି ହିନ୍ଦୁ-ବିରୋଧୀ ମନୋଭାବ ପ୍ରଚଣ୍ଡ ଭାବରେ ପ୍ରକାଶ ପାଉଛି । ବାଂଲାଦେଶର ସୃଷ୍ଟିରେ ଭାରତର ଭୂମିକାକୁ ବାଂଲାଦେଶର ଅନେକେ ସନ୍ଦେହ ଦୃଷ୍ଟିରେ ଦେଖନ୍ତି । ଥରେ ବାଂଲାଦେଶର ଜଣେ ମୁସଲମାନ ଛାତ୍ର, ଜଣେ ଭାରତୀୟ ହିନ୍ଦୁଛାତ୍ରଙ୍କ ସହିତ କୌଣସି ବିଷୟରେ ଯୁକ୍ତିତର୍କ କରୁଥିବା ସମୟରେ ଉତ୍ୟକ୍ତ ହୋଇ କହିଲେ, ହିନ୍ଦୁମାନଙ୍କ ସହିତ ସାଧାରଣତଃ ମୁଁ ବନ୍ଧୁତା କରେ ନାହିଁ । ଅଥଚ ଏହି ଛାତ୍ରଙ୍କୁ ବହୁ ସମୟରେ ହିନ୍ଦୁ ବନ୍ଧୁମାନଙ୍କ ସହିତ ବୁଲାବୁଲି ବା ଆଲୋଚନା କରିବାର ମୁଁ ଦେଖିଛି । × × ×

ଦିନେ କ୍ୟାଣ୍ଟର୍‌ବରୀରେ ମୋ ଘର ସାମନାରେ ଠିଆ ହୋଇଛି, ଗୋଟିଏ ଶିଶୁ ମୋ ନିକଟକୁ ଆସି ମୋ ଆଡ଼କୁ ହାତ ଦେଖାଇ କହିଲା, Ugly Indian, Ugly Indian (କୁତ୍ସିତ ଭାରତୀୟ, କୁତ୍ସିତ ଭାରତୀୟ) ।

ଶିଶୁଟିକୁ ମୁଁ ଚିହ୍ନେ, ମୋ ଘରଠାରୁ ସ୍ୱଳ୍ପ ଦୂରରେ ତା'ର ଘର । ଚମତ୍କାର ସ୍ୱାସ୍ଥ୍ୟବାନ୍ ଶିଶୁ ବେଳେ ବେଳେ ଲୋହିତ ଭାରତୀୟଙ୍କ ଭଳି ରଙ୍ଗିନ୍ ପୋଷାକ ଓ ପକ୍ଷୀପର ଖଞ୍ଜା

ଟୋପି ପିନ୍ଧି, ହାତରେ ଧନୁଶର ଧରି ସେ ତା’ ଘର ସାମନାରେ ଉଇଫଡ଼ଉଇଲୋ ଛେଚି ତଳେ ଏକୁଟିଆ ଖେଳୁଥାଏ । ମୋତେ ଦେଖି କେତେଥର ଶର ମାରିବାକୁ ଧମକାଇଛି । ରାସ୍ତାରେ ଯାଉଥିବା ଅନେକଙ୍କୁ ମଧ୍ୟ ସେହିପରି ଧମକାଇଛି । ତେବେ ମୋତେ Ugly Indian ବୋଲି ଗାଳିଦେବା, ଶର ମାରିବାକୁ ଧମକାଇବା ଭଳି ଏକ ନିରୀହ ଶିଶୁସୁଲଭ କ୍ରିୟା ନୁହେଁ । ମୁଁ ଜଣେ ଭାରତୀୟ ବୋଲି ସେ ଜାଣିଲା କିପରି ? ପୁଣି ଭାରତୀୟମାନେ କୁତ୍ସିତ, ଏଇ ଧାରଣାଟି ତା’ ମନକୁ ଆସିଲା କେଉଁଠୁ ?

କଳାଲୋକଙ୍କ ପ୍ରତି ଇଂରେଜ ଲୋକଙ୍କ ମନୋଭାବ ଆପାତତଃ ଏଇ କ୍ଷୁଦ୍ର ଘଟନାଟିରୁ ହିଁ ବୁଝିହେବ । ଶିଶୁଟିର ବାପା ମାଆ କିମ୍ବା ପରିବାରର କେହି ନିଶ୍ଚୟ ମୋ ସମ୍ପର୍କରେ କିମ୍ବା ଭାରତୀୟମାନଙ୍କ ସମ୍ପର୍କରେ କିଛି ଆଲୋଚନା କରିଛନ୍ତି ଏବଂ ଶିଶୁଟି ସେଇ ଆଲୋଚନା ଶୁଣି ମୁଁ ଜଣେ କୁତ୍ସିତ ଭାରତୀୟ ବୋଲି ବୁଝିପାରିଛି । ମୁଁ ରହୁଥିବା ଅଞ୍ଚଳରେ ଜଣେ ମାଲୟେସିଆ ଭଦ୍ରବ୍ୟକ୍ତିଙ୍କୁ ବାଦ୍‌ଦେଲେ ମୁଁ ହିଁ କେବଳ କଳା ଲୋକ । ତେଣୁ ମୋର ନିକଟସ୍ଥ କୌଣସି କୌଣସି ପରିବାରରେ ମୋ ବିଷୟ କେବେ ଆଲୋଚନା ହେବାରେ ଅସ୍ୱାଭାବିକତା କିଛି ନାହିଁ ।

ଯେଉଁ ପରିବାରର ଶିଶୁଟି ମୋତେ କୁତ୍ସିତ ଭାରତୀୟ କହିଲା, ସେହି ପରିବାରର କେହି ବୟସ୍କ ବ୍ୟକ୍ତି କେବେ ମୋ ପ୍ରତି କୌଣସି ଅସୌଜନ୍ୟ ବ୍ୟବହାର କରି ନ ଥିଲେ । ସେମାନଙ୍କ ଅଞ୍ଚଳରେ ମୁଁ ପ୍ରାୟ ଦୁଇ ବର୍ଷ ରହିଥିଲେ ସୁଦ୍ଧା କେବେ ସେମାନଙ୍କ ସଙ୍ଗେ ମୋର ଆଲୋଚନା ହୋଇ ନ ଥିଲା । କେବେ କୌଣସି କାରଣରୁ ସେମାନଙ୍କ ଦ୍ୱାରସ୍ଥ ହୋଇଥିଲେ ସେମାନେ ଯେ ମୋ ପ୍ରତି ଭଦ୍ର ବ୍ୟବହାର କରି ନ ଥା’ନ୍ତେ, ତା’ ନୁହେଁ । ତେବେ ମୋଟ ଉପରେ ଆମର ଦୁଇଟି ପରିବାର ମଧ୍ୟରେ କୌଣସି ସମ୍ପର୍କ ନ ଥିଲା । ମାଟିତଳେ ଲୁଚି ରହିଥିବା ପାଣି ପରି ସେ ପରିବାରର ସମସ୍ତଙ୍କ ମନତଳେ ଆମ ପ୍ରତି ହୁଏତ କେବଳ ଘୃଣା ହିଁ ଥିଲା । ଆମେ ତାହା ଅନୁମାନ କରି ସେମାନଙ୍କ ସଙ୍ଗେ ସମ୍ପର୍କ ନ ରଖିବା ଭଲ ବୋଲି ଭାବୁଥିଲୁ ।

ଗୋଟିଏ ଇଂରେଜ ବ୍ୟକ୍ତି ବା ପରିବାରର କଳା ଲୋକଙ୍କ ପ୍ରତି ମନୋଭାବ କ’ଣ, ତାହା ବୁଝିବା ସହଜ ନୁହେଁ । ଅକସ୍ମାତ୍ ଜଣେ ଶିଶୁର କଥାଭାଷାରୁ ମୁଁ ତା’ ବାପା ମାଆଙ୍କର କଳାଲୋକଙ୍କ ପ୍ରତି ମନୋଭାବ ସମ୍ପର୍କରେ କିଛି ଧାରଣା କରିପାରିଲି । ଶିଶୁଟି ମୋତେ ଗାଳି ଦେଇ ନ ଥିଲେ ତା’ ବାପାମାଆ ବା ପରିବାର ସମ୍ପର୍କରେ ମୋର କୌଣସି ଧାରଣା ହୋଇପାରି ନ ଥା’ନ୍ତା ।

ବିଲାତରେ କୌଣସି ଇଂରେଜ ଲୋକ କେବେ ମୋ ପ୍ରତି ମନ୍ଦ ବ୍ୟବହାର କରିଛି କି ବୋଲି ବିଲାତରୁ ଫେରିବା ପରେ ମୋତେ କେହି କେହି ପଚାରୁଛନ୍ତି । ମୋତେ ପଚାରୁଥିବା

ବନ୍ଧୁମାନେ ହୁଏତ ଆଶା କରୁଛନ୍ତି, ସେମାନେ ଖବରକାଗଜରେ ବିଲାତରେ କଳା-ଗୋରା ସଂଘର୍ଷ ସମ୍ପର୍କରେ ଯାହା ସମ୍ବାଦ ପାଉଛନ୍ତି, ମୋ ବ୍ୟକ୍ତିଗତ ଅନୁଭୂତି ତାହାରି ଅନୁରୂପ ହେବ; କିନ୍ତୁ ମୋର ସାଢ଼େ ତିନିବର୍ଷ ରହଣି ଭିତରେ ବ୍ୟକ୍ତିଗତ ଭାବରେ କଳା-ଗୋରା ସଂଘର୍ଷ ବା ବିବାଦ ମୋତେ ପ୍ରାୟ ସ୍ପର୍ଶ କରି ନ ଥିଲା । ମୋଟାମୋଟି ଭାବରେ ମୁଁ ଓ ମୋର ପରିବାର ଆମ ଚାରିପାଖରେ ରହୁଥିବା ଇଂରେଜ ଲୋକଙ୍କ ଭଳି ସୁବିଧା ଓ ସୁଯୋଗ ପାଉଥିଲୁ । ଆଇନ୍ ଦୃଷ୍ଟିରେ ବିଲାତରେ କଳା ଓ ଗୋରାଙ୍କ ମଧ୍ୟରେ କୌଣସି ତଫାତ୍ ନାହିଁ । ପୁଣି ଇଂରେଜ ଲୋକଙ୍କ ଭଦ୍ରତା ଓ ସୌଜନ୍ୟବୋଧ ଏତେ ବେଶି ଯେ ସେମାନେ ମନରେ ଯେତେ ଘୃଣାଭାବ ପୋଷଣ କଲେ ମଧ୍ୟ ସହଜରେ ଜଣେ କଳା ଲୋକକୁ ବ୍ୟକ୍ତିଗତ ଭାବରେ କୌଣସି ଅପମାନ ବା ଆଘାତ ଦେବେ ନାହିଁ ।

ତେବେ ମୋ ଭଳି ଯେଉଁ କଳାଲୋକମାନେ ଅଳ୍ପ କେତେ ମାସ ବା ବର୍ଷ ପାଇଁ ବିଲାତ ଯା'ନ୍ତି, ସେମାନଙ୍କ ଅନୁଭୂତି-ସ୍ଥାୟୀ ଭାବରେ ବିଲାତରେ ରହୁଥିବା କଳାଲୋକଙ୍କ ଅନୁଭୂତିଠାରୁ କେତେକାଂଶରେ ଭିନ୍ନ ହେବାକୁ ବାଧ୍ୟ । ବିଲାତରେ ରହିଲେ ମଧ୍ୟ ମୋ ଭଳି ବ୍ୟକ୍ତିମାନେ ଇଂରେଜ ଲୋକଙ୍କ ସହିତ ଚାକିରିରେ ପ୍ରତିଦ୍ୱନ୍ଦ୍ୱିତା କରନ୍ତି ନାହିଁ । ପୁଣି British Council ବା ଅନ୍ୟ କୌଣସି ସଂସ୍ଥା ଆମର ସୁବିଧା ଅସୁବିଧାର ପର୍ଯ୍ୟବେକ୍ଷଣ କରନ୍ତି; କିନ୍ତୁ ଯେଉଁ କଳାଲୋକେ ବିଲାତରେ ସ୍ଥାୟୀ ଭାବରେ ରହନ୍ତି ଏବଂ ଇଂରେଜ ଲୋକଙ୍କ ସହିତ ପ୍ରତି କ୍ଷେତ୍ରରେ ବିଶେଷତଃ ଚାକିରି କ୍ଷେତ୍ରରେ ପ୍ରତିଦ୍ୱନ୍ଦ୍ୱିତା କରନ୍ତି, ସେମାନେ ଅନେକ ସମୟରେ ତିକ୍ତତାର ସମ୍ମୁଖୀନ ହୁଅନ୍ତି ।

ମୋର ଦୁଇଜଣ ବନ୍ଧୁ ମରିସସ୍‌ର ମାରିମୁତ୍ତୁ ଭାଲ୍ ସନ୍ୟାସୀ ଏବଂ ବାଂଲାଦେଶର ମେହେମୁଦ୍ ନୋମାନ୍ ଯଥାକ୍ରମେ କ୍ୟାଣ୍ଟର୍‌ବରୀ କଲେଜ ଅଫ୍ ଟେକ୍‌ନୋଲଜି ଏବଂ କେଣ୍ଟ ବିଶ୍ୱବିଦ୍ୟାଳୟରେ ଚାକିରି କରୁଥିଲେ । ନୋମନ୍ କହୁଥିଲେ, ତାଙ୍କୁ କେତେଥର ତାଙ୍କ ସହକର୍ମୀଙ୍କ ମଧ୍ୟରୁ କେହି କେହି ଅପମାନିତ କରିବାକୁ 'ଆପଣ କେବେ ଯାଉଛନ୍ତି' ଭଳି ଅପ୍ରୀତିକର ପ୍ରଶ୍ନ ପଚାରୁଥିଲେ । ପରେ ସେ ଅବଶ୍ୟ ତାଙ୍କ ଚାକିରି ଛାଡ଼ିଦେଲେ । ଭାଲ୍ ବ୍ୟକ୍ତିଗତ ଭାବେ ଏତେ ମେଳାପୀ ଓ ମିଷ୍ଟଭାଷୀ ଯେ କେହି ତାଙ୍କର ଶତ୍ରୁରେ ପରିଣତ ହେବା ସହଜ ନୁହେଁ । ତେବେ ପ୍ରଥମେ ଚାକିରି ଆରମ୍ଭ କଲାବେଳେ କେହି 'ଏ କଳା ଲୋକଟିକୁ କ'ଣ କାମ ଆସିବ' – ଭଳି ମନ୍ତବ୍ୟ ଦେଉଥିଲେ ।

କେଣ୍ଟ ବିଶ୍ୱବିଦ୍ୟାଳୟର କଳା ଅର୍ଥାତ୍ ତୃତୀୟ ପୃଥିବୀରୁ ଆସିଥିବା ଛାତ୍ରଛାତ୍ରୀ-ମାନଙ୍କଠାରୁ ମୁଁ ଏକାଧିକବାର ଶୁଣିଛି, ସେମାନେ ଗୋରା ଛାତ୍ରଛାତ୍ରୀମାନଙ୍କଠାରୁ ନିକୃଷ୍ଟ ବୋଲି ଅଧ୍ୟାପକମାନେ ଏକ ବଦ୍ଧମୂଳ ଧାରଣା ପୋଷଣ କରିଛନ୍ତି । ବ୍ୟକ୍ତିଗତ ଭାବରେ ମୋର ସେଭଳି କୌଣସି ବିଶ୍ୱାସ ହେବାର କାରଣ ନ ଥିଲେ ମଧ୍ୟ କଳା ଛାତ୍ରଛାତ୍ରୀମାନଙ୍କ ଅଭିଯୋଗରେ କିଛି ସତ୍ୟତା ଥିବ ବୋଲି ମୋର ମନେହୁଏ ।

କଳା ଓ ଗୋରାଲୋକଙ୍କ ସଂଘର୍ଷ ସମ୍ପର୍କରେ ବିଲାତରେ ମୁଁ ଯାହା ଜାଣିଥିଲି, ତାହା ମୋଟାମୋଟି ଟେଲିଭିଜନ୍ ଓ ସମ୍ବାଦପତ୍ରମାନଙ୍କରୁ । ମୁଁ ରହୁଥିବା ଅଞ୍ଚଳ ଅର୍ଥାତ୍ ଦକ୍ଷିଣପୂର୍ବ ଇଂଲାଣ୍ଡରେ ସ୍ଥାୟୀଭାବରେ ରହୁଥିବା କଳାଲୋକଙ୍କ ସଂଖ୍ୟା ବେଶି ନୁହେଁ । ଏ ଅଞ୍ଚଳର ଅଧିକାଂଶ କଳାଲୋକ କେଣ୍ଟ ବିଶ୍ୱବିଦ୍ୟାଳୟର ଛାତ୍ରଛାତ୍ରୀ । ତେଣୁ ସେମାନେ ସେମାନଙ୍କ ଶିକ୍ଷା ପରେ ସ୍ୱଦେଶକୁ ଫେରିଯିବା ନିଶ୍ଚିତ; କିନ୍ତୁ ଲଣ୍ଡନ୍, ବର୍ମିଂହାମ୍, ମ୍ୟାଞ୍ଚେଷ୍ଟର୍ ଓ କୋଭେଣ୍ଟ୍ରି ପରି ଶିଳ୍ପକେନ୍ଦ୍ରମାନଙ୍କରେ କଳାଲୋକଙ୍କ ସଂଖ୍ୟା ଅଧିକ । ଲଣ୍ଡନ୍‌ର ଉପକଣ୍ଠରେ ଇଷ୍ଟହାମ୍ ପ୍ରଭୃତି ଅଞ୍ଚଳରେ କଳାଲୋକଙ୍କ ସଂଖ୍ୟା ଗୋରାମାନଙ୍କ ସଂଖ୍ୟାର ପ୍ରାୟ ନିକଟବର୍ତ୍ତୀ । ତେଣୁ ଏଭଳି ଅଞ୍ଚଳରେ କଳା ଓ ଗୋରାମାନଙ୍କ ମଧ୍ୟରେ କେତେକ ସମୟରେ ସଂଘର୍ଷ ହୋଇଥାଏ । ଏହି ସଂଘର୍ଷ ସମୟେ ସମୟେ ହିଂସାତ୍ମକ ରୂପ ନିଏ । ହତ୍ୟାଠାରୁ ଆରମ୍ଭ କରି ଭଙ୍ଗାରୁଜା କାମ ପର୍ଯ୍ୟନ୍ତ ସବୁ ଏହାର ଅନ୍ତର୍ଭୁକ୍ତ ।

୧୯୭୬ ଜୁନ୍ ମାସରେ ଲଣ୍ଡନ୍‌ରେ ଗୁର୍‌ଦୀପ୍ ସିଂ ନାମରେ ଜଣେ ଶିଖ ଯୁବକକୁ କେହି ଇଂରେଜ ବ୍ୟକ୍ତି ଛୁରା ଭୁଷି ହତ୍ୟା କରିବାରେ ବିଲାତରେ କଳାଲୋକଙ୍କ ମଧ୍ୟରେ ଭୟଙ୍କର ଆଲୋଡ଼ନ ସୃଷ୍ଟି ହୋଇଥିଲା । ଖବରକାଗଜ ଓ ଟେଲିଭିଜନ୍‌ରେ ଏ ସମ୍ବାଦଟି ବ୍ୟାପକ ଭାବରେ ପ୍ରଚାର କରାଯାଇଥିଲା ଓ ସରକାରୀ ଭାବରେ ଏଇ ହତ୍ୟାର ତଦନ୍ତ କରାଯାଇଥିଲା । ଭାରତରେ ଯେପରି ହିନ୍ଦୁ–ମୁସଲମାନ ବା ସବର୍ଣ୍ଣ–ହରିଜନ ସଂଘର୍ଷର ସମ୍ବାଦକୁ ସରକାରୀ ଭାବରେ ଚାପି ଦିଆଯାଏ ଏବଂ ଖବରକାଗଜମାନେ ଏଭଳି ସମ୍ବାଦକୁ ଲଘୁ ଭାବରେ ପ୍ରକାଶ କରନ୍ତି । ବିଲାତରେ ସେଭଳି ହୁଏ ନାହିଁ । ବିଲାତରେ ସମ୍ବାଦ ସରବରାହ ସଂସ୍ଥା ଓ ସରକାର ଖୋଲାଖୋଲି ଭାବରେ ସମସ୍ୟାଟି ସ୍ୱୀକାର କରନ୍ତି ଓ ସେ ସମ୍ପର୍କରେ ଆଲୋଚନା କରନ୍ତି ।

ବିଲାତରେ କଳା–ଗୋରା ସମସ୍ୟାର ସମାଧାନ ପାଇଁ ଉଭୟ ସରକାରୀ ଓ ବେସରକାରୀ ସ୍ତରରେ ବହୁ ଉଦ୍ୟମ ହୋଇଛି । ଚମଡ଼ାର ରଙ୍ଗ ପାଇଁ କୌଣସି ନାଗରିକ ଯେପରି ତା'ର ନ୍ୟାଯ୍ୟ ଅଧିକାରରୁ ବଞ୍ଚିତ ନ ହୁଏ, ସେଥିପ୍ରତି ଦୃଷ୍ଟି ଦେବାକୁ ଏକ ଉଚ୍ଚ କ୍ଷମତାସମ୍ପନ୍ନ (Race Relations Board) ଗଠିତ ହୋଇଛି ଏବଂ କଳାଲୋକଙ୍କ ସ୍ୱାର୍ଥ ଓ ସମ୍ମାନ ରକ୍ଷା ପାଇଁ ଗୁଡ଼ିଏ ଆଇନ୍ କରାଯାଇଛି; କିନ୍ତୁ ଗୋରାଲୋକମାନଙ୍କ ମନରେ କଳା ଲୋକଙ୍କ ପ୍ରତି ଘୃଣା ଓ ହେୟଭାବ ଥିବାଯାଏଁ ବିଲାତରେ ଦୁଇସମ୍ପ୍ରଦାୟ ମଧ୍ୟରେ ସୌହାର୍ଦ୍ଦ୍ୟ ଓ ବୁଝାମଣା ପ୍ରତିଷ୍ଠିତ ହୋଇପାରିବ ବୋଲି କୁହାଯାଇ ନ ପାରେ । ମଜାର କଥା ହେଉଛି, ଅନେକ ସମୟରେ ଦେଶର ନେତୃସ୍ଥାନୀୟ ବ୍ୟକ୍ତିମାନେ ଅସତର୍କ ମୁହୂର୍ତ୍ତରେ କଳାଲୋକଙ୍କ ପ୍ରତି ସେମାନଙ୍କ ହେୟଭାବ ଥିବା ପ୍ରକାଶ କରିପକାନ୍ତି । ଥରେ ବିଲାତରେ ବିରୋଧୀଦଳର ନେତ୍ରୀ ଶ୍ରୀମତୀ ମାର୍ଗାରେଟ୍ ଥ୍ୟାଚର୍ କଳାଲୋକଙ୍କ ସମ୍ପର୍କରେ ଅପ୍ରୀତିକର ମନ୍ତବ୍ୟ କରିଥିଲେ ଓ ଏହା ଫଳରେ ବିଲାତରେ ଓ ଭାରତରେ ବହୁ ଆଲୋଡ଼ନ ସୃଷ୍ଟି ହୋଇଥିଲା । ଆଉଥରେ ଜଣେ ବିଶିଷ୍ଟ ବିଚାରକ ଜଣେ

ବ୍ୟକ୍ତିଙ୍କୁ ବିଚାରାଳୟରେ ଗାଳିଦେବାବେଳେ 'ନିଗର୍' ଅର୍ଥାତ୍ ନିଗ୍ରୋ ଶବ୍ଦଟି ବ୍ୟବହାର କରିଥିଲେ । ବିଲାତର ସରକାର ଓ ନେତୃସ୍ଥାନୀୟ ଲୋକେ କଳାଲୋକଙ୍କ ସ୍ୱାର୍ଥ ଓ ସମ୍ମାନ ପାଇଁ ଯେତେ ଉଦ୍ୟମ କଲେ ମଧ୍ୟ କଳାଲୋକେ ସେମାନଙ୍କ କାର୍ଯ୍ୟକଳାପର ଆନ୍ତରିକତା ସମ୍ପର୍କରେ ଆସ୍ଥାବାନ୍ ନୁହନ୍ତି ।

ଇଂରେଜମାନଙ୍କର କଳାଲୋକଙ୍କ ପ୍ରତି ଘୃଣାଭାବ ଭଳି କଳାଲୋକଙ୍କର ଇଂରେଜମାନଙ୍କ ନିକଟରେ ହୀନମ୍ମନ୍ୟତା କଳା-ଗୋରା ସମସ୍ୟାର ସମାଧାନକୁ ଅଧିକ ଜଟିଳ କରିଛି । କଳାଲୋକଙ୍କର ଏହି ହୀନମ୍ମନ୍ୟତା ପାଇଁ ଅବଶ୍ୟ ସବୁଠାରୁ ବେଶି ଦାୟୀ । ଗତ ଦୁଇ ଶତାବ୍ଦୀର ଇତିହାସ । ବିଗତ ଦୁଇ ଶତାବ୍ଦୀର ଇତିହାସ ମୋଟ ଉପରେ ଗୋରାମାନଙ୍କ କଳାଲୋକଙ୍କ ଉପରେ ରାଜନୀତିକ, ଆର୍ଥିକ ଓ ସାଂସ୍କୃତିକ ଆଧିପତ୍ୟରହିଁ ବିବରଣୀ । ତେଣୁ ବିଲାତରେ ରହୁଥିବା କଳାଲୋକେ ଗୋରାଲୋକଙ୍କ ନିକଟରେ ନ୍ୟୁନ ଭାବିବାରେ ଅସ୍ୱାଭାବିକତା କିଛି ନାହିଁ ।

କଳାଲୋକଙ୍କର ଏହି ହୀନମ୍ମନ୍ୟତା ବହୁ ଭାବରେ ଆତ୍ମପ୍ରକାଶ କରେ ଏବଂ ଏହି ବ୍ୟାଧିର ନିରାକରଣ କଠିନ ଓ ସମୟସାପେକ୍ଷ । ପ୍ରଥମତଃ କଳାଲୋକେ ଅନେକ ସମୟରେ ଗୋରାଲୋକଙ୍କୁ ଅଯଥା ସନ୍ଦେହ କରନ୍ତି ଏବଂ ଆପାତତଃ କାରଣ ନ ଥିବା ସ୍ଥଳେ ନିଜକୁ ନିରାପଦ ମନେକରନ୍ତି ନାହିଁ । ଏହି ନିରାପତ୍ତାବୋଧ ଅଭାବର ପରିଣତି ହୁଏ ଅନାବଶ୍ୟକ ଉଗ୍ରତା ଓ ହିଂସା ଆଚରଣ । କଳା-ଗୋରା ସମସ୍ୟାର କୌଣସି ଆଲୋଚନା ହେଲେ ଭାରତୀୟ ଛାତ୍ର ହଠାତ୍ ଉତ୍ତେଜିତ ହୋଇପଡ଼ିବା ମୁଁ ଲକ୍ଷ୍ୟ କରିଛି । ଏହି ହୀନମ୍ମନ୍ୟତାର ଅନ୍ୟ ଏକ ପରିପ୍ରକାଶ ହେଲା ବିଚ୍ଛିନ୍ନ ମନୋବୃତ୍ତି ଅର୍ଥାତ୍ ଇଂଲାଣ୍ଡ ଓ ଇଂରେଜ ସମାଜ ପ୍ରତି ସ୍ନେହ ଓ ଆନୁଗତ୍ୟର ଅଭାବ । କେବଳ ଯେଉଁମାନେ ଅଳ୍ପ କେତେ ମାସ ବା ବର୍ଷ ପାଇଁ କୌଣସି କାରଣରୁ ବିଲାତରେ ରହନ୍ତି, ସେମାନେ ନୁହନ୍ତି; ବିଲାତରେ ଜନ୍ମ ହୋଇଥିବା ଓ ବହୁବର୍ଷ ରହି ଆସିଥିବା ଭାରତୀୟମାନେ ମଧ୍ୟ ଦିନେ ଭାରତ ଫେରିଆସିବେ ବୋଲି ଅହରହ ସ୍ୱପ୍ନ ଦେଖୁଥାନ୍ତି । ନିଜକୁ ବିଦେଶୀ ବୋଲି ମନେ କରୁଥିବାଯାଏଁ କଳାଲୋକେ ବିଲାତର ସାମାଜିକ ଜୀବନର ଏକ ଅଭିନ୍ନ ଅଂଶରେ ପରିଣତ ହେବା ସହଜ ନୁହେଁ ।

କ୍ୟାଣ୍ଟରବରୀର ଯେଉଁ ବୁଧବାର ହାଟରୁ ମୁଁ ସଉଦା କିଣେ ସେଠାରେ ଜଣେ ପଞ୍ଜାବୀ ଲୁଗାଦୋକାନୀକୁ ମୁଁ ଚିହ୍ନିଥିଲି । ଲୋକଟି ମଧ୍ୟବୟସ୍କ । କେବେ ପିଲାଦିନେ ଦେଶ ବିଭାଜନ ପୂର୍ବରୁ ସେ ବିଲାତ ଆସିଥିଲା; କିନ୍ତୁ ମୋତେ ଦେଖିଲେ ସେ ହସେ ଓ ହିନ୍ଦୁସ୍ତାନୀରେ କହେ, 'ଏଠି ଭଲ ଲାଗୁ ନାହିଁ ! ଆସନ୍ତା ବର୍ଷ ମୁଁ ଭାରତ ଫେରିଯିବି ।' ମୁଁ ମୋର ସାଢ଼େ ତିନିବର୍ଷ ରହିବା ଭିତରେ ସେ ଏପରି ଅନେକଥର କହିବା ଶୁଣିଥିଲି ।

●

# ଏ ଦେଶ ଭଲ ନୁହେଁ

ସେଦିନ ଟେବୁଲ୍ ଉପରେ ସକାଳର ବ୍ରେକ୍‌ଫାଷ୍ଟ ପାଇଁ ପାଉଁରୁଟି, ବଟର୍, ମାର୍ମାଲେଡ୍ ପ୍ରଭୃତି ରଖୁଥିବା ସମୟରେ ହଠାତ୍ ନୀରବତା ଭଙ୍ଗ କରି ଶ୍ରୀମତୀ ବିଜୟରତ୍ନେ କହିଲେ, 'ଏ ଦେଶ ମୋତେ ଭଲ ନୁହେଁ । ଘରକୁ ଫେରିଯିବାକୁ ଇଚ୍ଛା ହେଉଛି ।'

ମୁଁ ଟିକିଏ ଆଶ୍ଚର୍ଯ୍ୟ ହେଲି । ଏଇ ମାତ୍ର ଅଳ୍ପ କେତେ ମାସ ହେଲା ସେ ବିଲାତ ଆସିଛନ୍ତି । ସାଙ୍ଗରେ ପୁଣି ସ୍ୱାମୀ ଓ ଚାରି ବର୍ଷର ପୁଅ ଅର୍ଥାତ୍ ସମଗ୍ର ପରିବାର, ସ୍ୱାମୀ ସ୍ଥାନୀୟ କେଣ୍ଟ୍ ବିଶ୍ୱବିଦ୍ୟାଳୟରେ ଅର୍ଥନୀତିରେ ଏମ୍. ଏ. ପଢ଼ିବାକୁ ଶ୍ରୀଲଙ୍କା ସରକାରଙ୍କଦ୍ୱାରା ପ୍ରେରିତ ହୋଇଛନ୍ତି । ସେମାନେ ମୋଟ ଉପରେ ବିଲାତରେ ଦୁଇ ବର୍ଷ ରହିବାର କଥା । ଏତେ ଶୀଘ୍ର ସେ ଘରକୁ ଫେରିବାକୁ ଭାବୁଛନ୍ତି କାହିଁକି ?

ମୁଁ ଅଭିଭାବକ-ସୁଲଭ-ଭଙ୍ଗୀରେ କହିଲି, 'ହଁ ନିଜ ଦେଶକୁ ଫେରିଯିବାକୁ କାହାର ଇଚ୍ଛା ନ ହୁଏ ?'

ଶ୍ରୀମତୀ ବିଜୟରତ୍ନେ ବିଶେଷ କଥନପ୍ରିୟା ମହିଳା ନୁହନ୍ତି । ସେ ନୀରବରେ କିଚେନ୍‌ରୁ ଟି ପଟ୍‌ଟି ଆଣି ଟେବୁଲ୍ ଉପରେ ରଖୁଥିଲେ । ସେତେବେଳକୁ ଆମ ଡର୍ମିଟରୀର ଅନ୍ୟାନ୍ୟ ବାସିନ୍ଦାମାନେ ବ୍ରେକ୍‌ଫାଷ୍ଟ ପାଇଁ ବେସ୍‌ମେଣ୍ଟ୍ ରୁମ୍‌ରେ ଜଣକ ପରେ ଜଣେ ପହଞ୍ଚିବା ଆରମ୍ଭ କରି ଦେଇଥା'ନ୍ତି ।

ମାତ୍ର ଅଳ୍ପ କେତେ ସପ୍ତାହ ତଳେ ଶ୍ରୀ ଓ ଶ୍ରୀମତୀ ବିଜୟରତ୍ନେଙ୍କ ସହିତ ମୋର ଆକସ୍ମିକ ଭାବେ ପରିଚୟ ହୋଇଥାଏ । ସେମାନେ ସ୍ଥାନୀୟ ଗୋଟିଏ ଛୋଟ ଦୋକାନକୁ ଯାଇଥାନ୍ତି ସପିଂ କରିବାକୁ । ସେମାନେ ଭାରତରୁ ଆସିଛନ୍ତି କି ବୋଲି ମୁଁ ପଚାରିଦେଲି । ତା'ପରେ ଆମର ଆଳାପ । ସେମାନେ ମୋତେ ତାଙ୍କ ଘରକୁ ଲଞ୍ଚ୍ ପାଇଁ ନିମନ୍ତ୍ରଣ ଜଣାଇଲେ । ଗଲି, ଗୋଟିଏ ଅତି ସଂକୀର୍ଣ୍ଣ ଅନ୍ଧାରୁଆ କୋଠରିରେ ସେମାନେ ରହୁଥାନ୍ତି । ନୂଆ ବିଲାତ ଆସିଥିବା ଲୋକ ପକ୍ଷରେ ଭଲ ଭଡ଼ାଘରଟିଏ ଯୋଗାଡ଼ କରିବା ସତରେ କଠିନ । ମୁଁ ଆଶ୍ଚର୍ଯ୍ୟ ହେଲି ନାହିଁ । ସେମାନଙ୍କୁ କେତୋଟି ଭଲ ଘରର ସନ୍ଧାନ ଦେଲି । ସେମାନେ କିନ୍ତୁ ସେଥିରେ ଉତ୍ସାହିତ ହେଲେ ନାହିଁ ।

'ଘରଭଡ଼ାରେ ଗୁଡ଼ାଏ ପଇସା ଖର୍ଚ୍ଚ କରିବା ବୋକାମି' ଶ୍ରୀଯୁକ୍ତ ବିଜୟରତ୍ନେ କହିଲେ, 'ବିଲାତରେ ରହୁଥିବା ସମୟଟା କୌଣସିମତେ ଚଳିଗଲେ ଗଲା ।'

ସେଇ ଅନ୍ଧାରୁଆ କୋଠରିଟିକୁ ସେମାନେ ଗୋଟିଏ 'କ୍ଷୁଦ୍ର ଶ୍ରୀଲଙ୍କା'ରେ ପରିଣତ କରିପାରିଥିବା ଲକ୍ଷ୍ୟ କଲି । ସେଲ୍‌ଫ୍‌ରେ ଉପବୀତଧାରୀ ବୁଦ୍ଧଙ୍କର କ୍ଷୁଦ୍ର ଧାତୁ ନିର୍ମିତ ମୂର୍ତ୍ତିଟିଏ । ମୂର୍ତ୍ତି ସମ୍ମୁଖରେ ପ୍ଲେଟ୍‌ରେ କିଛି ଖାଦ୍ୟପଦାର୍ଥ । କୋଠରିର ଗୋଟିଏ କୋଣରେ ଷ୍ଟୋଭ୍ ଓ କେତୋଟି ଶିଶି ଓ ଡବା; ଶିଶି ଓ ଡବାମାନଙ୍କରେ ତେଲ, ଚାଉଳ, ମସଲା ଇତ୍ୟାଦି । ଚାରିବର୍ଷର ପୁଅଟି ଖଟ ଉପରେ ଶୋଇଥାଏ । ତା' ପାଖରେ ଶସ୍ତା ଦାମ୍‌ରେ କିଣା ହୋଇଥିବା

ପ୍ଲାଷ୍ଟିକ୍‌ର ଗୋଟିଏ ପୁଲିସ୍ ଭ୍ୟାନ୍ । ଶ୍ରୀମତୀ ବିଜୟରତ୍ନେ ଲଞ୍ଚ୍ ପାଇଁ ଭାତରେ ଶୁଖୁଆ ଓ ଲହୁଣୀ ମିଶାଇ ପଲାଉ ତିଆରି କରୁଥିବାବେଳେ ମୁଁ ଓ ଶ୍ରୀଯୁକ୍ତ ବିଜୟରତ୍ନେ ଶ୍ରୀଲଙ୍କା ଓ ଭାରତର ସଂସ୍କୃତି ଏବଂ ବିଲାତରେ କଳାଲୋକଙ୍କ ଦୁର୍ଦ୍ଦଶା ସମ୍ପର୍କରେ ଆଲୋଚନା କଲୁ । ପରସ୍ପରର ପରିବାର ସମ୍ପର୍କରେ ମଧ । ସେ ଓ ତାଙ୍କ ସ୍ତ୍ରୀ ଶ୍ରୀଲଙ୍କା ସରକାରଙ୍କ ଅଧୀନରେ ଚାକିରି କରନ୍ତି । କଲମ୍ବୋରେ ସେମାନେ ଚମତ୍କାର ଘରଟିଏ ବନାଇଛନ୍ତି । (ସେ ମୋତେ ତାଙ୍କ ଆଲବମ୍‌ରୁ ନିଜ ଘରର ରଙ୍ଗିନ୍ ଫଟୋ ଦେଖାଇଲେ । ସୁରୁଚିସମ୍ପନ୍ନ ବାଂଲୋ ଟାଇପ୍ ଘର । ସମ୍ମୁଖରେ ଲନ୍ ଓ କେତୋଟି ଫୁଲଗଛ) ।

ସେମାନଙ୍କ ଆତିଥ୍ୟରେ ଆପ୍ୟାୟିତ ହୋଇ ଅପରାହ୍ଣରେ ମୁଁ ଫେରିଲି ମୋ ଡର୍ମିଟରୀକୁ । × × ×

ଏଇ ଘଟନାର ଅଳ୍ପ କେତେଦିନ ପରେ ଶ୍ରୀମତୀ ବିଜୟରତ୍ନେ ଯୋଗଦେଲେ ଆମ ଡର୍ମିଟରୀରେ – 'ହାଉସ୍–କିପର୍' ଭାବେ । ବେସ୍‌ମେଣ୍ଟରେ ଗୋଟିଏ ସନ୍ତସନ୍ତିଆ କାର୍‌ପେଟ୍ – ଶୂନ୍ୟ କୋଠରିରେ ସେ ଆସି ରହିଲେ – ସ୍ୱାମୀ ଓ ଚାରିବର୍ଷର ପୁଅ ସହିତ । ଏଣିକି ପ୍ରତିଦିନ ସକାଳେ ତାଙ୍କ ସହିତ ମୋର ଦେଖାହେଲା । ଡର୍ମିଟରୀର ବାସିନ୍ଦାମାନଙ୍କୁ ବ୍ରେକ୍‌ଫାଷ୍ଟ ଯୋଗାଇବା ତାଙ୍କ ଦାୟିତ୍ୱ । ବ୍ୟାବସାୟିକ ରୀତିରେ ଗୁଡ୍‌ମର୍ଣ୍ଣିଂ ଜଣାଇ ସେ ଟେବୁଲ ଉପରେ ବ୍ରେକ୍‌ଫାଷ୍ଟ ସରଞ୍ଜାମ ରଖନ୍ତି ଓ ବ୍ରେକ୍‌ଫାଷ୍ଟ ପରେ ଟେବୁଲ୍ ସଫା କରନ୍ତି । ଶ୍ରୀଲଙ୍କାର ବାଂଲୋ ଟାଇପ୍ ଗୃହଟିରେ ରହୁଥିବା ଏବଂ ଉଚ୍ଚପଦରେ ଚାକିରି କରୁଥିବା ଶ୍ରୀମତୀ ବିଜୟରତ୍ନେ ଏଠି ଆମ ଡର୍ମିଟରୀରେ 'ହାଉସ୍–କିପର୍' ଭାବେ କାର୍ଯ୍ୟ କରିବାରେ ମୁଁ କିନ୍ତୁ ବିସ୍ମିତ ହେଲି ନାହିଁ । କାରଣ ଲଞ୍ଚ୍ ପାଇଁ ମୋତେ ନିମନ୍ତ୍ରଣ କରିଥିବା ଅବସରରେ ଶ୍ରୀଯୁକ୍ତ ବିଜୟରତ୍ନେ ମୋତେ କହିପାରିଥିଲେ, ବିଲାତରେ ରହିବା ସମୟରେ ତାଙ୍କର ଯୋଜନା ଯେ ସେ କିଛି ଅର୍ଥ ସଞ୍ଚୟ କରିବାକୁ ବ୍ୟାକୁଳ । କାରଣ ଫେରିବାବେଳେ ସେ ସାଙ୍ଗରେ ନେଇଯିବାକୁ ଚାହାନ୍ତି ଗୋଟିଏ ଟେଲିଭିଜନ୍, ଗୋଟିଏ ଫ୍ରିଜ୍, ଗୋଟିଏ ୱାଶିଂ ମେସିନ୍ ଓ ହଳେ ସୁଟ୍ । ସନ୍ଧ୍ୟାରେ ବିଶ୍ୱବିଦ୍ୟାଳୟରୁ ଫେରିବା ପରେ ବହୁ ସମୟରେ ଶ୍ରୀଯୁକ୍ତ ବିଜୟରତ୍ନେ ଦୋକାନମାନଙ୍କରେ ବୁଲି ବୁଲି ବିଭିନ୍ନ ଜିନିଷର ଦରଦାମ୍ ବୁଝନ୍ତି ଓ ତାହା ତାଙ୍କ ଟିପାଖାତାରେ ଲେଖିରଖନ୍ତି । ଜିନିଷପତ୍ରଗୁଡ଼ିକ କିପରି ପ୍ୟାକିଂ କରି ଜାହାଜରେ ଶ୍ରୀଲଙ୍କା ପଠାଇବାକୁ ହେବ, ସେ ସମ୍ପର୍କରେ ମଧ କୌଣସି କୌଣସି ସଂସ୍ଥା ସହିତ ବେଳେ ବେଳେ ସେ ଆଲୋଚନା କରନ୍ତି ।

ଶ୍ରୀଯୁକ୍ତ ବିଜୟରତ୍ନେ ଦିନ ସାରା ବ୍ୟସ୍ତ ରହନ୍ତି ବିଶ୍ୱବିଦ୍ୟାଳୟରେ । ଶ୍ରୀମତୀ ଓ ପୁଅ ବେସ୍‌ମେଣ୍ଟ ରୁମ୍‌ରେ ତାଙ୍କୁ ଅପେକ୍ଷା କରନ୍ତି । ଛୋଟ ବ୍ଲାକ୍ ଆଣ୍ଡ ହ୍ୱାଇଟ୍ ଟି.ଭି.ଟିଏ ଭଡ଼ାରେ ଆଣିଥା'ନ୍ତି ଶ୍ରୀମତୀ ବିଜୟରତ୍ନେ । ଚୁପ୍‌ଚାପ୍ ବସି ଘଣ୍ଟା ଘଣ୍ଟା ଟେଲିଭିଜନ୍ ଦେଖନ୍ତି । ସକାଳେ ବ୍ରେକ୍‌ଫାଷ୍ଟ ଯୋଗାଇବା ସମୟଟା ବାଦ୍‌ଦେଲେ ଦିନସାରା ତାଙ୍କ ହାତରେ ଆଉ କ'ଣ ବା କାମ ଥାଏ ! × × ×

କେବଳ ଶ୍ରୀଯୁକ୍ତ ଓ ଶ୍ରୀମତୀ ବିଜୟରତ୍ନେ ନୁହନ୍ତି, ଏସିଆ ମହାଦେଶରୁ ବିଲାତ ଆସିଥିବା ବହୁ ପରିବାରଙ୍କ ସ୍ୱପ୍ନ-ବିଲାତରେ ଅର୍ଥ ସଞ୍ଚୟ କରିବା ଓ ଦେଶକୁ ଫେରିଯିବାବେଳେ ଦାମିକା ବିଲାତି ଜିନିଷ କିଛି ସାଙ୍ଗରେ ନେଇଯିବା । ଏଇ ସ୍ୱପ୍ନରେ ସେମାନେ ବିଲାତରେ ଦାରିଦ୍ର୍ୟକୁ ବରଣ କରିନିଅନ୍ତି । ସେମାନେ ଥିଏଟର ଦେଖନ୍ତି ନାହିଁ, ପବ୍‌କୁ ଯାଆନ୍ତି ନାହିଁ ବା ଦେଶର ବିଭିନ୍ନ ସ୍ଥାନ ବୁଲନ୍ତି ନାହିଁ । ବିପୁଳ ସମୃଦ୍ଧି ଓ ସୌନ୍ଦର୍ଯ୍ୟର ଦେଶରେ ରହି ମଧ ସେମାନେ ଯାପନ କରନ୍ତି, ଏକ ସଂକୁଚିତ ବିମର୍ଷ ଜୀବନ । ବିଲାତରେ ସମସ୍ୟା ଓ ସଂସ୍କୃତି ପ୍ରତି ସେମାନେ ରହନ୍ତି ବୀତସ୍ପୃହ । ବିଲାତରୁ ଫେରିଗଲା ପରେ ନିଜ ଦେଶରେ ସେମାନେ କିଭଳି ଅଧିକ ସମ୍ମାନ ଓ ସମ୍ପଦର ଅଧିକାରୀ ହୋଇପାରିବେ - ଏହାହିଁ ଥାଏ ଅହରହ ସେମାନଙ୍କ ସ୍ୱପ୍ନ ଓ କଳ୍ପନା ।

କିନ୍ତୁ ସ୍ୱଦେଶକୁ ଫେରିଯିବା ପରେ ସେମାନେ ସେମାନଙ୍କ ବନ୍ଧୁ ଓ ସମ୍ପର୍କୀୟମାନଙ୍କୁ ବିଲାତ ସମ୍ପର୍କରେ କେବଳ ଗୋଲାପୀ ଓ ରଙ୍ଗିନ୍ ଚିତ୍ରମାନ ଦେଉଥା'ନ୍ତି । ବିଲାତରେ ସେମାନେ ଯେଭଳି ନିଃସଙ୍ଗତା ଓ ନିରାନନ୍ଦ ଅନୁଭବ କରିଆସିଲେ, ତାହା ସେମାନଙ୍କ ଆଲୋଚନା ବା କଥାଭାଷାରୁ ବୁଝା ପଡ଼େ ନାହିଁ । ଅଥଚ ବିଲାତରେ ରହୁଥିବା ସମୟରେ ସେମାନେ ବହୁବାର ଆପତ୍ତି କରୁଥିବାର ଶୁଣାଯାଏ - ଏ ଦେଶ ମୋଟେ ଭଲ ନୁହେଁ... ।



# କୋରୟେ

କେଣ୍ଟ୍ ବିଶ୍ୱବିଦ୍ୟାଳୟରେ ଆମେ ଗବେଷଣା କରିଥିଲୁ ତିନିବର୍ଷ । ଅନେକ ଦିନ ରହିଥିଲୁ ରାଦାର୍‌ଫୋର୍ଡ୍ କଲେଜର ପାଖାପାଖି ଦୁଇଟି କୋଠରିରେ । ସକାଳେ ବ୍ରେକ୍‌ଫାଷ୍ଟ ଖାଇବାକୁ କଲେଜ ଡାଇନିଂ ହଲ୍‌କୁ ଆସିବାବେଳେ ଆମର ପରିଚୟ ହୋଇଥିଲା ଓ ସେ ପରିଚୟକୁ ବନ୍ଧୁତ୍ୱରେ ପରିଣତ କରିବାରେ ସାହାଯ୍ୟ କରିଥିଲା ଆମେ ଦୁହେଁ ବ୍ୟବହାର କରୁଥିବା କିଚେନ୍ - ସେଇଠି ଆମେ ସନ୍ଧ୍ୟାରେ ଏକାଠି ରାନ୍ଧିବାବେଳେ ଅନେକ ବିଷୟ ଗପିବାର ସୁଯୋଗ ପାଉଥିଲୁ ।

ତା' ଘର ନାଇଜେରିଆରେ - ବଣ, ଜଙ୍ଗଲ ଆଦିବାସୀପୂର୍ଣ୍ଣ ନାଇଜର୍ ଉପତ୍ୟକାରେ । ସବୁ ନିଗ୍ରୋଙ୍କ ପରି ତା'ର ଅନ୍ଧାର କିଟିକିଟି ଚମଡ଼ା, ସ୍ପ୍ରିଙ୍ଗ୍ ପରି ଗୋଲ୍ ମୁଣ୍ଡବାଳ, ସୁଗଠିତ ସୁଦୃଢ଼ ଦେହ ଓ କଳା ଦେହର ପୃଷ୍ଠଭୂମିରେ ଶକ୍ତ, ଅସ୍ୱାଭାବିକ ଭାବରେ ଧଳା ଦିଶୁଥିବା ଦାନ୍ତ । ହୁଏତ ଶୈଶବରୁ ଅସଂଖ୍ୟ କଥା ଓ କାହାଣୀରେ କଳ୍ପନାରେ ଦେଖିଆସିଥିବା ଅସୁରର ଚେହେରା ହିଁ ସ୍ମରଣ କରାଇ ଦେଉଥିଲା କୋରୟେ । ଦୂରରୁ ଦିଶୁଥିଲା, ଯେମିତି ସେ ଆଉ କେଉଁ ପୃଥିବୀର ମଣିଷ, ତା' ଓ ମୋ ଭିତରେ କୌଣସିଠାରେ

କିଛି ମେଳ ନାହିଁ କିନ୍ତୁ କଥା କହିଲେ ଲାଗୁଥିଲା, ମୋ ଦେଶର ହଜାର ହଜାର ମାଇଲ୍ ଦୂରରେ ସେ ମଣିଷଟି ଯେମିତି ବେଶ୍ ଆପଣାର ! ମୁଁ ଥଟ୍ଟା କଲେ ସେ ହସୁଥିଲା; ପୁଣି ଶହଶହ ବର୍ଷ ଧରି ମୋ ଦେଶ ବିଦେଶୀମାନଙ୍କଦ୍ୱାରା ଅତ୍ୟାଚାରିତ ହେବାର କାହାଣୀ କହିଲେ ସେ ବି ସେଇ କାହାଣୀର ପୁନରାବୃତ୍ତି କରୁଥିଲା ଆଫ୍ରିକାର ପୃଷ୍ଠଭୂମିରେ । ଅସଂଖ୍ୟ ରାଜ୍ୟ ଓ ଗୋଷ୍ଠୀରେ ବିଭକ୍ତ ଏସିଆ ଓ ଆଫ୍ରିକାର ଦେଶମାନଙ୍କରେ ୟୁରୋପୀୟ ଶକ୍ତିଙ୍କ ଅନୁପ୍ରବେଶ ଓ ଉପନିବେଶ ସ୍ଥାପନ; ଉପନିବେଶବାଦର ପରିଣତି ୟୁରୋପୀୟମାନଙ୍କ ଦ୍ୱାରା ଅଣୟୁରୋପୀୟମାନଙ୍କ ଶୋଷଣ; ଅଣୟୁରୋପୀୟ ଦେଶ ଉପରେ ୟୁରୋପୀୟ ଭାଷା, ଧର୍ମ ଓ ସଂସ୍କୃତିର ପ୍ରଚଣ୍ଡ ପ୍ରଭାବ; ସ୍ୱାଧୀନତା ସଂଗ୍ରାମ ଓ ସ୍ୱାଧୀନତା ଲାଭ ପରେ ମଧ୍ୟ ଅଣୟୁରୋପୀୟ ଦେଶମାନଙ୍କରେ ରାଜନୀତିକ ଅସ୍ଥିରତା, ଦୁର୍ନୀତି ଓ ନୂତନ ଶୋଷକ ଶ୍ରେଣୀର ଅଭ୍ୟୁଦୟ – ଭାରତ ଓ ଆଫ୍ରିକାର ଜନସାଧାରଣଙ୍କର ଏହାହିଁ ସାଧାରଣ ଅନୁଭୂତି । ତେଣୁ କୋରୟେ ଓ ମୋର ବିଚାର ଓ ଦୃଷ୍ଟିଭଙ୍ଗୀରେ ବିପୁଳ ସାମଞ୍ଜସ୍ୟ ରହିବା ସ୍ୱାଭାବିକ । ସେଇ ସାମଞ୍ଜସ୍ୟର ପରିଣତି ବନ୍ଧୁତା ।

ସନ୍ଧ୍ୟାରେ କଲେଜ୍ କିଚେନ୍‌ରେ କୋରୟେ ତା'ର 'ସପର୍' ରାନ୍ଧୁଥାଏ ଓ ପାଖରେ ରଖିଥିବା ପ୍ରକାଣ୍ଡ କାଚ ଗିଲାସ୍‌ରୁ ଅଳ୍ପ ଅଳ୍ପ 'ଲାଗା' ବିୟର୍ ପିଉଥାଏ । ତା'ର ସପର୍ ଅତି ସାଧାସିଧା – ବେକନ୍ (ଘୁଷୁରି ମାଂସ ଭଜା), ସିଝା ଆଳୁ ଓ ମଟର, ରୁଟି ଓ ଲହୁଣୀ । ବେଳେ ବେଳେ ଅବଶ୍ୟ ଟିନ୍‌ଡ୍ ପୁଡ଼ିଂ ବା ସପୁରୀ । ତା'ର ଖାଦ୍ୟ, ପୋଷାକ, ରୁଚି ସବୁ ୟୁରୋପୀୟ । ରୁମ୍‌ରେ ରେକର୍ଡ଼୍ ପ୍ଲେୟାର୍‌ର ପପ୍‌ମ୍ୟୁଜିକ୍ ବାଜିଲାବେଳେ ସେ ପାଳି ଧରେ, ବେଳେ ବେଳେ ଖୁସୀରେ ଟିକିଏ ନାଚିଯାଏ । ମୁଁ କିନ୍ତୁ ଇଂରେଜ ଖାଦ୍ୟରେ ସନ୍ତୁଷ୍ଟ ନ ହୋଇ ଭାତ ଓ ତରକାରି ରାନ୍ଧି ଖାଏ, (ଏଥିପାଇଁ ମୋର ପଡ଼ୋସିୟାନ୍ ବନ୍ଧୁ ମହମ୍ମଦ କର୍‌ମିଆନ୍ ମୋତେ ଥଟ୍ଟା କରେ; କଲେଜ୍ କରିଡର୍‌ରେ ମସଲା ବାସ୍ନା ହେଲେ ଭାରତୀୟ 'ମିଶ୍ର' ରାନ୍ଧୁଛି ବୋଲି ସମସ୍ତେ ଜାଣନ୍ତି) । ମୁଁ ଇଂରାଜୀ ସଙ୍ଗୀତ ଅଳ୍ପ ବୁଝେ – ତେଣୁ ବି. ବି. ସି.ରେ ରବିବାର ଦିନ ପ୍ରଚାରିତ ହେଉଥିବା ହିନ୍ଦୀ–ଚଳଚ୍ଚିତ୍ର ସଙ୍ଗୀତ ଶୁଣେ ଓ ଟେପ୍ ରେକର୍ଡ଼ରେ ରେକର୍ଡ଼ କରି ରଖେ ।

ବିଗତ ଦୁଇଶହ ବର୍ଷରେ ପାଶ୍ଚାତ୍ୟ ପ୍ରଭାବ ସତ୍ତ୍ୱେ ଭାରତୀୟ ଯେପରି ଅନେକାଂଶରେ ତା'ର ମୌଳିକତା ଓ ନିଜସ୍ୱ ରକ୍ଷା କରିପାରିଛି, ଆଫ୍ରିକାର ଅଧିବାସୀ ସେପରି କରିପାରିଛି ବୋଲି ମନେହୁଏ ନାହିଁ । ଭାରତୀୟର ଧର୍ମ, ଖାଦ୍ୟ, ସଙ୍ଗୀତ, ଭାଷା ଓ ସାହିତ୍ୟ ତାକୁ ଅକ୍ଳେଶରେ ଇଂରେଜ ଓ ପାଶ୍ଚାତ୍ୟ ଅଧିବାସୀଠାରୁ ସ୍ୱତନ୍ତ୍ର କରି ରଖିଛି । ଇଂଲାଣ୍ଡରେ ତିନି ପୁରୁଷ ଧରି ରହିଆସୁଥିବା ଭାରତୀୟମାନେ ସୁଦ୍ଧା ଖାଦ୍ୟ ଓ ସଙ୍ଗୀତ ରୁଚିରେ ଅନେକାଂଶରେ ଭାରତୀୟ ହୋଇ ରହିଛନ୍ତି, କିନ୍ତୁ ଆଫ୍ରିକାରେ ପାଶ୍ଚାତ୍ୟ ସଭ୍ୟତାର ଅନୁପ୍ରବେଶ ଆଫ୍ରିକାର ଭାଷା, ସାହିତ୍ୟ, ସଂସ୍କୃତି ଓ ପରମ୍ପରାର ମୂଳଦୁଆକୁ ଦୋହଲାଇ ଦେଇଛି । ପାଶ୍ଚାତ୍ୟ ସଭ୍ୟତାଠାରୁ ଦୂରରେ ରହିଥିବା ଆଫ୍ରିକାର ଅନୁନ୍ନତ ମଣିଷମାନଙ୍କ

କଥା ଅଲଗା; କିନ୍ତୁ ପାଶ୍ଚାତ୍ୟ ଶିକ୍ଷା ଲାଭ କରିଥିବା ଅଧିକାଂଶ ଆଫ୍ରିକୀୟ ନିଜ ପାରମ୍ପରିକ ଧର୍ମ ଛାଡ଼ି ଖ୍ରୀଷ୍ଟିୟାନ୍ ହୋଇଛନ୍ତି, ନିଜ ଭାଷା ଛାଡ଼ି ଇଂରାଜୀ ବା ଅନ୍ୟ କୌଣସି ୟୁରୋପୀୟ ଭାଷାକୁ ସେମାନଙ୍କ ସାହିତ୍ୟର ମାଧମ ରୂପେ ଗ୍ରହଣ କରିଛନ୍ତି, ଖାଦ୍ୟ, ସଙ୍ଗୀତ, ରୀତିନୀତିରେ ୟୁରୋପକୁ ଅନୁକରଣ କରି ଆସିଛନ୍ତି ।

ସେ ବିଷୟରେ ଅନେକଥର କୋରୟେ ସଙ୍ଗେ ମୋର ଆଲୋଚନା ହୋଇଛି । ତାକୁ ମୁଁ ପଚାରିଛି – ତୁମେ ନିଜ ଭାଷାରେ କାହିଁକି ସରକାରୀ କାର୍ଯ୍ୟ କରୁ ନାହଁ । ସାହିତ୍ୟ ସୃଷ୍ଟି ପାଇଁ ତୁମେ କାହିଁକି ଇଂରାଜୀ ବା ଅନ୍ୟ କୌଣସି ୟୁରୋପୀୟ ଭାଷା ବ୍ୟବହାର କରୁଛ ? ତୁମ ପାରମ୍ପରିକ ଧର୍ମ କାହିଁକି ଛାଡୁଛ ? ପାଶ୍ଚାତ୍ୟ ସଭ୍ୟତାକୁ ତୁମେ ଅନ୍ଧଭଳି ଅନୁକରଣ କରୁଛ କାହିଁକି ?

ସେ ଦୁଃଖ କରିଛି ଓ ଉତ୍ତର ଦେଇଛି – ବେଶ୍ ଗମ୍ଭୀର, ଚିନ୍ତାଶୀଳ ଉତ୍ତର । ସେ କହିଛି, ତା' ମାତୃଭାଷା ବ୍ୟବହାର କରନ୍ତି ଅଳ୍ପ କେତେ ହଜାର ମଣିଷ । ସେ ଭାଷାର ଲିପି ନାହିଁ, ଲିଖିତ ସାହିତ୍ୟ ନାହିଁ, ଅଛି କେବଳ କେତୋଟି ଲୋକଗଳ୍ପ, ଲୋକଗୀତ, ଢଗଢମାଳି । ତେଣୁ ତା ' ଭାଷାରେ ବହି ଲେଖିଲେ କିଏ ଛାପିବ, କିଏ କିଣିବ ? କେତେଜଣ ବା ସେ ବହି ପଢ଼ିବେ ? ଆଫ୍ରିକାର ଅଧିକାଂଶ ମଣିଷଙ୍କ ମାତୃଭାଷାର ଅବସ୍ଥା ସେହିପରି । ସ୍ୱାହିଲି ବା ଇବୋ ଭଳି କେତୋଟି ଭାଷା ଆଫ୍ରିକାର ବହୁ ଲେଖକ ବ୍ୟବହାର କରନ୍ତି । ତେଣୁ ସେ ଭାଷାରେ ଲିଖିତ ସାହିତ୍ୟ ସୃଷ୍ଟି ହୁଏ । ସମଗ୍ର ଆଫ୍ରିକାରେ ସ୍ୱାହିଲିକୁ 'ରାଷ୍ଟ୍ରଭାଷା' ରୂପେ ଚଳାଇ ନେବାକୁ ଉଦ୍ୟମ ମଧ ହୋଇଥିଲା; କିନ୍ତୁ ଅଣ-ସ୍ୱାହିଲିଭାଷୀମାନେ ତାହାର ବିରୋଧ କଲେ । ଇଂରାଜୀ, ଫରାସୀ, ଡଚ୍ ଭାଷାକୁ ଛାଡ଼ି ସ୍ୱାହିଲି ଗ୍ରହଣ କରିବା ଅଣସ୍ୱାହିଲିମାନେ ସହଜ ମନେକଲେ ନାହିଁ । ଭାରତରେ ଇଂରାଜୀ ବଦଳରେ ହିନ୍ଦୀ ଚଳାଇବାର ଉଦ୍ୟମ ସଙ୍ଗେ ଆଫ୍ରିକାରେ ଏକ ଆଫ୍ରିକୀୟ ଭାଷା ଚଳାଇବା ଉଦ୍ୟମର ତୁଳନା କରାଯାଇପାରେ ।

ତେଣୁ କୋରୟେ ଇଂରାଜୀରେ ଗଳ୍ପ, କବିତା ଲେଖେ, ଇଂରାଜୀ ଭାଷାରେ ଲେଖକ ହେବାର ସ୍ୱପ୍ନ ଦେଖେ । ଆଫ୍ରିକାର ଦୁଇଜଣ ଏକାଠି ହେଲେ ଇଂରାଜୀ ବା ଫରାସୀ ଭାଷାରେ ହିଁ କଥାବାର୍ତ୍ତା ହୁଅନ୍ତି । ଆଫ୍ରିକାରେ ଦୁଇଶହ ବର୍ଷ ୟୁରୋପୀୟ ଔପନିବେଶିକ ଆଧିପତ୍ୟର ଏହା ସାଂସ୍କୃତିକ ପରିଣତି ।

କୋରୟେ ୟୁରୋପର ଭାଷାକୁ ଗ୍ରହଣ କରିଛି, କିନ୍ତୁ ୟୁରୋପର ଧର୍ମକୁ ନୁହେଁ । ଆଫ୍ରିକାର ବହୁ ଅଧିବାସୀ ବିଗତ ଓ ଚଳିତ ଶତାବ୍ଦୀରେ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ ହୋଇଛନ୍ତି । ୟୁରୋପୀୟ ଅନୁପ୍ରବେଶ ପୂର୍ବରୁ ଆଫ୍ରିକାରେ ଆରବମାନେ ଆଧିପତ୍ୟ ବିସ୍ତାର କରିଥିବା ସମୟରେ ବହୁ ଲୋକ ଇସ୍‌ଲାମ୍‌କୁ ଗ୍ରହଣ କରିଥିଲେ । ତଥାପି ପାରମ୍ପରିକ ଧର୍ମ ବଞ୍ଚି ରହିଛି ଏଯାଏଁ । କୋରୟେର ପୂରା ନାଆଁ – ସେପିୟେ କୋରୟେ । ସେ ଖ୍ରୀଷ୍ଟିୟାନ୍ ହୋଇଥିଲେ ହୁଏତ ତା ନାଆଁ ହୋଇଥା'ନ୍ତା ଜେମ୍‌ସ ବା ପଲ୍ ବା ହେନ୍‌ରୀ । ତା' ହୋଇ ନାହିଁ ।

ସେ କହେ, 'ନାଇଜେରିଆରେ ଅଣଖ୍ରୀଷ୍ଟିୟାନ୍‌ମାନେ ବି ଚର୍ଚ୍ଚରେ ବାହାଘର କରନ୍ତି । ଏମିତି ବାହାଘର ଏକ ଫ୍ୟାସନ୍‌ରେ ପରିଣତ ହୋଇଛି । ମିସ୍‌ନାରୀମାନେ ସ୍କୁଲରେ ଅଣଖ୍ରୀଷ୍ଟିୟାନ୍ ପିଲାମାନଙ୍କୁ ଅନେକ ସମୟରେ ଖ୍ରୀଷ୍ଟିୟାନ୍ ନାଆଁ ଦେଇଥା'ନ୍ତି । ମୋର ସ୍କୁଲ ନାଆଁ ଥିଲା ଫ୍ରାନ୍‌ସିସ୍ ।'

ବହୁବର୍ଷ ଅନ୍ଧଭାବରେ ପାଶ୍ଚାତ୍ୟ ସଭ୍ୟତା ଓ ସଂସ୍କୃତିକୁ ଅନୁକରଣ କରିବା ପରେ, ଏବେ କେତେ ବର୍ଷ ହେଲା ନିଜର ପରମ୍ପରା ଓ ସଂସ୍କୃତିର ମୌଳିକତା ରକ୍ଷାକରିବା ପାଇଁ ଆଫ୍ରିକାର ବୁଦ୍ଧିଜୀବୀମାନେ ସଚେତନ ହୋଇଛନ୍ତି । ଅନେକ ନିଜର ବିଦେଶୀ ନାମ 'ଜେମ୍‌ସ', 'ପଲ୍' ପ୍ରଭୃତି ପରିତ୍ୟାଗ କରି ପୁଣି ଆଫ୍ରିକୀୟ ନାମ ସବୁ ବ୍ୟବହାର କରୁଛନ୍ତି । ଉତ୍ସବ ଓ ଗୁରୁତ୍ୱପୂର୍ଣ୍ଣ ଦିନମାନଙ୍କରେ ବିଦେଶୀ ପୋଷାକ ନ ପିନ୍ଧି ଜାତୀୟ ପୋଷାକ ପରିଧାନ କରୁଛନ୍ତି । ଲେଖକମାନେ ଇଂରାଜୀ ଓ ଅନ୍ୟାନ୍ୟ ୟୁରୋପୀୟ ଭାଷା ବ୍ୟବହାର କଲେ ବି ସେ ଭାଷାମାନଙ୍କରେ ଆଫ୍ରିକୀୟ ଜୀବନର ସ୍ପନ୍ଦନ ଫୁଟାଇବା ପାଇଁ ସେ ଭାଷାମାନଙ୍କୁ ଭିନ୍ନ ଭାବରେ ବ୍ୟବହାର କରୁଛନ୍ତି । ଭାଷାମାନଙ୍କରେ ପ୍ରଚଳିତ ଢଗଢମାଳି, ବାକ୍ୟଗଠନ ରୀତି ପ୍ରଭୃତି ଇଂରାଜୀ ଓ ଅନ୍ୟାନ୍ୟ ୟୁରୋପୀୟ ଭାଷାମାନଙ୍କରେ ପ୍ରୟୋଗ କରାଯାଉଛି । × × ×

ଦିନେ ସନ୍ଧ୍ୟାରେ ଆମ ଘରେ ରାତ୍ରିଭୋଜନ ପାଇଁ କୋରୟେକୁ ନିମନ୍ତ୍ରଣ ଜଣାଇବାକୁ ଗଲି । କୋରୟେ ଖୁସିହୋଇ କହିଲା, 'ମୁଁ ତ ନିଶ୍ଚୟ ଆସିବି । ସାଙ୍ଗରେ ମୋ ଗାର୍ଲ୍‌ଫ୍ରେଣ୍ଡକୁ ମଧ୍ୟ ଆଣିବି ।' ମୋର ଅବଶ୍ୟ ସେଥିରେ ଆପତ୍ତି ନ ଥିଲା ।

ସନ୍ଧ୍ୟାରେ ସେମାନେ ପହଞ୍ଚିଲେ – କୋରୟେ ଓ ତା'ର ଇଂରେଜ ଗାର୍ଲ୍‌ଫ୍ରେଣ୍ଡ । କେଜାଣି କାହିଁକି ସେମାନଙ୍କୁ ଦେଖି ସେକ୍ସପିୟରଙ୍କ ଅଥେଲୋ ନାଟକର ଅଥେଲୋ ଓ ଡେସ୍‌ଡେମୋନା ଚରିତ୍ର ମନେପଡ଼ିଲା । ଅଥେଲୋ କଳା ଓ କୁତ୍ସିତ, ଡେସ୍‌ଡେମୋନା ଗୋରୀ ଓ ସୁନ୍ଦରୀ । ପରସ୍ପରକୁ ସେମାନେ ଖୁବ୍ ଭଲ ପାଉଥିଲେ; କିନ୍ତୁ ସାମାନ୍ୟ କାରଣରୁ ସନ୍ଦେହରେ ଅଥେଲୋ ହତ୍ୟାକଲା ଡେସ୍‌ଡେମୋନାକୁ । ପରିଶେଷରେ ନିଜ ଭୁଲ ବୁଝି ନିଜେ ବି ଆତ୍ମହତ୍ୟା କଲା । କରୁଣ ବିୟୋଗାନ୍ତକ ନାଟକ !

ସାଇଡର୍ (ଆପଲ ରସର ଏକ ପାନୀୟ) ଦେଇ ଆମେ କୋରୟେ ଓ ତା'ର ଗାର୍ଲ୍‌ଫ୍ରେଣ୍ଡକୁ ସ୍ୱାଗତ କଲୁ । ଭାରତୀୟ ରୀତିରେ ରନ୍ଧାଭାତ, କୁକୁଡ଼ାମାଂସ ତରକାରି ଓ ସାଲାଡ୍ । ଖାଦ୍ୟ ସେମାନଙ୍କର ଖୁବ୍ ପସନ୍ଦ ହେଲା ।

ତା'ପରେ କଫି ଓ ଟେଲିଭିଜନ୍ । ଯୋଗକୁ ସେଦିନ ଟେଲିଭିଜନ୍‌ରେ ଥାଏ ଆଫ୍ରିକାର ଆଦିମ ଅଧିବାସୀମାନଙ୍କ ସମ୍ପର୍କରେ ଚିତ୍ରଟିଏ । ସେମାନଙ୍କ ଦୈନନ୍ଦିନ ଜୀବନ ଟିକିନିଖି ଭାବରେ ଦେଖାହେଉଥାଏ । ସେମାନେ ଦେହରେ ଚିତା କୁଟାଇ , କାନ ଓ ନାକରେ ଫୋଡ଼ା ଛିଦ୍ରମାନଙ୍କରେ ଓଜନିଆ ଅଳଙ୍କାରସବୁ ଓହଳାଇ, ସୁଧୁ ଲଙ୍ଗଳା ହୋଇ ବାଜା

ପିଟିପିଟି ଗୀତ ଗାଇ ଗାଇ ନାଚୁଥା'ନ୍ତି । ଡେଙ୍ଗା କଳା ଲଙ୍ଗଳା ପୁରୁଷ ଓ ସ୍ତ୍ରୀସବୁ ପାଗଳ ପରି ନାଚିବାର ଆମୋଦକର ଦୃଶ୍ୟ ଦେଖାହେଉଥାଏ ଅନେକବେଳେ ।

ଆମେ ସମସ୍ତେ ଚୁପ୍‌ଚାପ୍ ବସି ସେଇ ଦୃଶ୍ୟ ଦେଖୁଥାଉ – କେହି କିଛି ମନ୍ତବ୍ୟ ଦେଉ ନ ଥାନ୍ତି । ମୁଁ ସନ୍ତର୍ପଣରେ ଚାହୁଁଥାଏ କୋରୟେ ମୁହଁକୁ – ପୁଣି ତା'ର ଗାର୍ଲ୍‌ଫ୍ରେଣ୍ଡ୍ ମୁହଁକୁ । କାହାରି ମୁହଁରେ ଯେମିତି କିଛି ପ୍ରତିକ୍ରିୟା ନ ଥାଏ । ସେମାନେ ଯେମିତି ଖାଲି ଟେଲିଭିଜନ୍ ପର୍ଦ୍ଦାକୁ ଅନାଇଥାନ୍ତି, କିଛି ଦେଖୁ ନ ଥା'ନ୍ତି ।

କ'ଣ ଭାବୁଥିବ କୋରୟେ ଏ ଦୃଶ୍ୟ ଦେଖି ? ଟେଲିଭିଜନ୍ ମାଲିକମାନଙ୍କୁ ଗାଳି ଦେଉଥିବ ମନେ ମନେ – ତା' ଦେଶର ଏଭଳି ଚିତ୍ର ସଭ୍ୟ ସଂସ୍କୃତ ଇଂରେଜ ଦର୍ଶକମାନଙ୍କ ଆଗରେ ପରିବେଷଣ କଲେ ବୋଲି ? ନା ଭାବୁଥିବ ତା' ଗାର୍ଲ୍‌ଫ୍ରେଣ୍ଡ୍ ଆଫ୍ରିକା ଓ ତା' ସମ୍ପର୍କରେ କ'ଣ ଧାରଣା କରୁଥିବ ବୋଲି ?

ଆଉ କୋରୟେର ଗାର୍ଲ୍‌ଫ୍ରେଣ୍ଡ୍ କ'ଣ ଭାବୁଥିବ ତା' ପ୍ରେମିକ ସମ୍ପର୍କରେ ? ତା' ପ୍ରେମିକ ତେବେ ଏଇୟା – ଚିତାକୁଟା, ନାକ କାନରେ ଅଳଙ୍କାର ଓହଳା ଲଙ୍ଗଳା ମଣିଷମାନଙ୍କ ଭିତରୁ ଜଣେ ?

ଟେଲିଭିଜନ୍ ପ୍ରୋଗ୍ରାମ୍ ପରେ ସେମାନେ ବିଦାୟ ନେଲେ । ସେମାନେ ଯିବା ପରେ ଅନେକ ସମୟ ମୁଁ ଭାବୁଥାଏ – ସେ ଦୁହେଁ ଆଫ୍ରିକା ଓ ୟୁରୋପ୍‌ର ତରୁଣତମ ପ୍ରତିନିଧି । ସେମାନଙ୍କ ବନ୍ଧୁତା ଅଥେଲୋ – ଡେସ୍‌ଡେମୋନାଙ୍କ ସମ୍ପର୍କ ଭଳି ଏକ ବିୟୋଗାନ୍ତକ ନାଟକରେ ପରିଣତ ହେବ ନାହିଁ ତ !



## ହାରଲ୍‌ଡ୍ ଉଇଲ୍‌ସନ୍‌ଙ୍କ କୁକୁର

୧୯୭୬ ମାର୍ଚ୍ଚ୍ ୧୬ ତାରିଖରେ ବିଲାତର ପ୍ରଧାନମନ୍ତ୍ରୀ ହ୍ୟାରଲ୍‌ଡ୍ ଉଇଲ୍‌ସନ୍ ଇସ୍ତଫା ଦେଲେ । ଟେଲିଭିଜନ୍ ଓ ରେଡ଼ିଓରେ ଅନ୍ୟାନ୍ୟ କାର୍ଯ୍ୟକ୍ରମ ସ୍ଥଗିତ ରଖାଯାଇ ଏଇ ଗୁରୁତ୍ୱପୂର୍ଣ୍ଣ ସମ୍ବାଦଟି ବାରମ୍ବାର ଘୋଷଣା କରାଗଲା । ତା' ସଙ୍ଗେ ସଙ୍ଗେ ତାଙ୍କ ପ୍ରଧାନମନ୍ତ୍ରୀଙ୍କ ସମ୍ପର୍କରେ ଟିକିନିଖି ତଥ୍ୟ ସବୁ; ଯେ ସେ ମୋଟ ଉପରେ ୭ବର୍ଷ ୨୬୨ ଦିନ ପ୍ରଧାନମନ୍ତ୍ରୀ ହେଲେ, ଯେ ସେ ୪୭୨ ଥର ମନ୍ତ୍ରିପରିଷଦରେ ଅଧ୍ୟକ୍ଷତା କରିଥିଲେ; ଯେ ସେ ମୋଟ ଉପରେ ୧୨୦୦୦ ପ୍ରଶ୍ନର ଉତ୍ତର ଦେଇଥିଲେ ଇତ୍ୟାଦି । ତାଙ୍କ ଜୀବନୀ, ବିଲାତର ରାଜନୀତି କ୍ଷେତ୍ରରେ ତାଙ୍କର ଅବଦାନ, ତାଙ୍କର ଭବିଷ୍ୟତ ପ୍ରଭୃତି ସମ୍ପର୍କରେ ଆଲୋଚନାମାନ ଶୁଣିବାକୁ ମିଳିଲା ।

ଭାରତରେ କୌଣସି ପ୍ରଧାନମନ୍ତ୍ରୀ ଇସ୍ତଫା ଦେଲେ, ସେଥିରେ ଅନୁରୂପ ଗୁରୁତ୍ୱ ଆରୋପ କରାଯାଇଥା'ନ୍ତା, ଅନୁରୂପ ଆଲୋଚନାମାନ ଶୁଣିବାକୁ ମିଳିଥା'ନ୍ତା, ସନ୍ଦେହ ନାହିଁ; କିନ୍ତୁ ହାରଲ୍ଡ୍ ଉଇଲ୍ସନ୍ଙ୍କ ଇସ୍ତଫା ଭଳି ଏକ ଗୁରୁତ୍ୱପୂର୍ଣ୍ଣ ସମ୍ବାଦ ସଙ୍ଗରେ ଆଉ ଗୋଟିଏ ମଜା ଖବର ପ୍ରଚାରିତ ହେବାରେ ଲାଗିଲା । ସେ ଖବରଟି ହାରଲ୍ଡ୍ ଉଇଲ୍ସନ୍ଙ୍କ କୁକୁର ସମ୍ପର୍କରେ । ହାର୍ଲଡ୍ ଉଇଲସନ୍ଙ୍କ ହଠାତ୍ ଇସ୍ତଫା ଦେବା ସମ୍ପର୍କରେ ସାମ୍ବାଦିକମାନେ ତାଙ୍କୁ ଲ୍ୟୁକେଆମି, ଦୃଷ୍ଟିହୀନତା ଓ ଫୁସ୍ଫୁସ୍ କ୍ୟାନ୍ସର୍ ଆକ୍ରମଣ କରିଥାଇପାରେ ବୋଲି କଳ୍ପନାମାନ କରୁଥିଲାବେଳେ ସେ ଘୋଷଣା କଲେ, 'ମୋ ଇସ୍ତଫା ଦେବାର ଗୋଟିଏ ପ୍ରଧାନ କାରଣ ହେଲା ମୋ କୁକୁର ପ୍ୟାଡ଼ିକୁ ଅଧିକ ସମୟ ପଡ଼ିଆରେ ବୁଲାଇ ପାରିବି ଓ ତାକୁ ମୋ ସାଙ୍ଗରେ ପବ୍‌କୁ ନେଇପାରିବି ।' ପ୍ରଧାନମନ୍ତ୍ରୀଙ୍କ ବାସଭବନ ଦଶନମ୍ବର ଡାଉନିଂ ଷ୍ଟ୍ରିଟ୍ ଛାଡ଼ିବା ସନ୍ଧ୍ୟାରେ ଉଇଲ୍ସନ୍ ଗୋଟିଏ ଅନାମଧେୟ ପବ୍‌ରେ ବିୟର୍ ପିଉଥିବାର ଚିତ୍ର ଆମେ ଟେଲିଭିଜନ୍‌ରେ ଦେଖିଲୁ । ତାଙ୍କ ପାଖରେ ଲାଗି ବସିଥିଲା ପ୍ୟାଡ଼ି – ଆପାତତଃ ଦାୟିତ୍ୱମୁକ୍ତ ଓ ପ୍ରସନ୍ନ ।

ଯେକୌଣସି ପରିସ୍ଥିତିରେ ନିଜେ ହସିପାରିବା ଓ ଅନ୍ୟକୁ ହସାଇପାରିବା ଇଂରେଜ ଚରିତ୍ରର ଏକ ବିଶେଷତ୍ୱ । ଅଧିକାଂଶ କ୍ଷେତ୍ରରେ ନିଜକୁ ଥଟ୍ଟା କରି, ଅନ୍ୟ କାହା ମନରେ ଆଘାତ ନ ଦେଇ ଇଂରେଜମାନେ ହସନ୍ତି ଓ ହସାନ୍ତି । ଏପରି ହସି ହସାଇପାରିବାର ଶକ୍ତି ମାନସିକ ସ୍ୱାସ୍ଥ୍ୟ ଓ ଭାବଗତ ସ୍ଥିରତାର ଲକ୍ଷଣ । କୌଣସି ପରିସ୍ଥିତିରେ ଅତ୍ୟଧିକ ବିଚଳିତ ହୋଇପଡ଼ିବା, ଖୁବ୍ ଆନନ୍ଦିତ ବା ଖୁବ୍ ବିଷାଦଗ୍ରସ୍ତ ହେବା, ଆପାତତଃ ଇଂରେଜ ଚରିତ୍ରରେ ଦେଖିବାକୁ ମିଳେନା । ଜାତୀୟ ଚରିତ୍ର ବ୍ୟକ୍ତି ଚରିତ୍ରର ଏକ ବିସ୍ତାରିତ ରୂପମାତ୍ର । ତେଣୁ ଇଂରେଜ ଜାତିର ରାଜନୀତି, ଅର୍ଥନୀତି ଓ ସଂସ୍କୃତିରେ ଏକ ସ୍ଥିରତା ଓ ଖେଳୁଆଡ଼୍ ମନୋବୃତ୍ତି ଅହରହ ଉପସ୍ଥିତ ଥାଏ ।

ଇଂଲାଣ୍ଡରେ ପହଞ୍ଚିବା ପରେ ହିଁ ଇଂରେଜ ଲୋକଙ୍କ କଥାବାର୍ତ୍ତାରେ, ଭାଷଣରେ, ଟେଲିଭିଜନ୍ କାର୍ଯ୍ୟକ୍ରମରେ ଇଂରେଜ ଲୋକଙ୍କର ଏଇ ହସିବା ଓ ହସାଇବା ଗୁଣଟି ମୋତେ କେତେକାଂଶରେ ନୂତନ ବୋଧ ହୋଇଥିଲା । ଭାରତରେ ସାଧାରଣତଃ କଥାବାର୍ତ୍ତା, ଭାଷଣ, ରେଡ଼ିଓ କାର୍ଯ୍ୟକ୍ରମରେ ହାସ୍ୟରସଟି ଅନୁପସ୍ଥିତ । ରେଡ଼ିଓରେ ଈଶ୍ୱର ଭକ୍ତିମୂଳକ ଦେଶାତ୍ମବୋଧକ ଗୀତର ପ୍ରଚାର ଯଥେଷ୍ଟ; ବକ୍ତାମାନଙ୍କ ଭାଷଣରେ ଗମ୍ଭୀର ପାଣ୍ଡିତ୍ୟ ବା ଅଗ୍ନିବର୍ଷଣ ବିପୁଳ; କଥାବାର୍ତ୍ତାରେ ପରକୁତ୍ସା ବା ଲୋତକବର୍ଷଣ ଅସୀମ; କିନ୍ତୁ ନିରୋଳା ହସ, ଯେକୌଣସି ପରିସ୍ଥିତିକୁ ଲଘୁ ଭାବରେ ଗ୍ରହଣ କରିବାର ମନୋବୃତ୍ତି ଭାରତରେ ଦୁର୍ଲଭ ।

କମନ୍‌ୱେଲ୍ଥ ଇନ୍‌ଷ୍ଟିଚ୍ୟୁଟ୍ ହଲ୍‌ରେ ମୋ ଭଳି ବିଦେଶୀ ଛାତ୍ରମାନଙ୍କୁ ଇଂରେଜ ଲୋକଙ୍କ ଚରିତ୍ର ସମ୍ପର୍କରେ ବୁଝାଇବାକୁ ଯାଇ କମନ୍‌ୱେଲ୍ଥ ସ୍କଲାର୍‌ସିପ୍ କମିସନ୍‌ର ସଭାପତି ଲର୍ଡ୍ ଗାର୍ଡନର୍ ମଜା ଗପଟିଏ କହିଥିଲେ ।

ଇଂଲାଣ୍ଡର ଜଣେ ଲ୍ୟାଣ୍ଡ୍ ଲେଡ଼ି ଘରଭଡ଼ା ଦେବାରେ କଳାଗୋରା ଭିତରେ ଭେଦଭାବ ଦେଖୁ ନ ଥିଲେ, କିନ୍ତୁ କଳାଲୋକମାନଙ୍କୁ ତାଙ୍କର ଗୋଟିଏ ସାମାନ୍ୟ ପ୍ରଶ୍ନ ପଚାରିବାର ଥାଏ । ଥରେ ୱେଷ୍ଟଇଣ୍ଡିଜ୍‌ର ଜଣେ କଳା ଯୁବକ ତାଙ୍କ ଘରେ ଭଡ଼ା ରହିବାକୁ ଇଚ୍ଛାକରି ତାଙ୍କ ନିକଟକୁ ଗଲେ । ଇଂରେଜ ଲ୍ୟାଣ୍ଡଲେଡି ପଚାରିଲେ, 'ଆପଣମାନେ କ'ଣ ତଥାପି ମଣିଷ ମାଂସ ଖା'ନ୍ତି ?' ଯୁବକ ଉତ୍ତର ଦେଲେ, 'ହଁ ଆଜ୍ଞା, କିନ୍ତୁ ଇଂରେଜ ଜାତି ଦୟାରୁ ଆମେ ଆଜିକାଲି କଣ୍ଟା ଚାମୁଚ ବ୍ୟବହାର କରୁଛୁ ।'

ଇଂଲାଣ୍ଡରେ ବହୁ ଲୋକ ଯେ କଳା ଲୋକମାନଙ୍କୁ ଘୃଣା ଓ ସନ୍ଦେହ ଦୃଷ୍ଟିରେ ଦେଖନ୍ତି, ଲର୍ଡ୍ ଗାର୍‌ନର୍ ସେଇ କଥା ବୁଝାଉଥିଲେ । ଇଂଲାଣ୍ଡରେ ପହଞ୍ଚିବାର ସପ୍ତାହଟିଏ ବି ହୋଇ ନ ଥାଏ । ଲର୍ଡ୍ ଗାର୍‌ନର୍ ଇଂଲାଣ୍ଡ ଓ ଇଂରେଜ ଜାତି ସମ୍ପର୍କରେ ଏକ ଗୋଲାପୀ ଚିତ୍ର ଆମକୁ ଦେଉ ନ ଥିଲେ । ମଜା ଓ ହସ ଭିତରେ ସେ କହୁଥିଲେ, ତାଙ୍କ ଜାତି ଭିତରେ ଅଜ୍ଞତା ଓ କୁସଂସ୍କାରର ଅଭାବ ନାହିଁ । ଏହା ସେ କହୁଥିଲେ ଏସିଆ, ଆଫ୍ରିକା ଓ ଅନ୍ୟ ଦେଶମାନଙ୍କରୁ ଆସିଥିବା ଯୁବକ-ଯୁବତୀମାନଙ୍କ ଆଗରେ, ଯେଉଁମାନଙ୍କ ଦେଶ ଶହ ଶହ ବର୍ଷ ଧରି ଇଂରେଜ ଜାତିଦ୍ୱାରା ଶାସିତ ହୋଇଥିଲା ବା ହୋଇଆସୁଛି ।

ସହଜ ଓ ସ୍ୱାଭାବିକ ଭାବରେ ଇଂରେଜ ଲୋକଟି ଯେପରି ନିଜ ଜାତି ବା ଅନୁଷ୍ଠାନର ଦୋଷ ଦୁର୍ବଳତା ସ୍ୱୀକାର କରିପାରେ, ଭାରତୀୟଟି ତାହା କରିପାରେ ନାହିଁ । ସଧାରଣତଃ ଜଣେ ଭାରତୀୟକୁ ଅଣଭାରତୀୟମାନଙ୍କ ଆଗରେ ନିଜ ଦେଶ ସମ୍ପର୍କରେ କହିବାକୁ ସୁଯୋଗ ମିଳିଲେ, ହୁଏତ ସେ ନିଜ ଦେଶର ଗୌରବମୟ ଅତୀତ ସମ୍ପର୍କରେ ପ୍ରଗଳ୍‌ଭ ହୋଇଉଠେ କିମ୍ବା ସାମ୍ପ୍ରତିକ ପରିସ୍ଥିତିର ଶୋଚନୀୟତା ସମ୍ପର୍କରେ ବାହୁନିବସେ । ଭାରସାମ୍ୟ ରଖି ଭାରତର ଗୌରବ ଓ ଦାରିଦ୍ର୍ୟ ଉଭୟ ସମ୍ପର୍କରେ ଠିକ୍ ଚିତ୍ରଟିଏ ଦେବାକୁ ସେ ପ୍ରାୟଶଃ ଅକ୍ଷମ ହୁଏ । ଯେକୌଣସି କଥାକୁ ଅତିରଞ୍ଜିତ କରିବା ଭାରତୀୟ ଚରିତ୍ରର ଏକ ବିଶେଷତ୍ୱ ବୋଲି ବହୁ ଅଣଭାରତୀୟ ଯଥାର୍ଥରେ ଦର୍ଶାଇଛନ୍ତି । ଅଧିକ ହାସ୍ୟରସବୋଧ ଥିଲେ ଭାରତୀୟମାନେ ହୁଏତ ନିଜ ସମ୍ପର୍କରେ ଅଧିକ ଅନାସକ୍ତ ହୋଇ ପାରୁଥା'ନ୍ତେ ଓ ସହଜ ସ୍ୱାଭାବିକ ଭାବରେ ନିଜ ଚରିତ୍ରର ନିରପେକ୍ଷ ସମାଲୋଚନା କରିପାରୁଥା'ନ୍ତେ ।

ଇଂରେଜ ଲୋକଟି ତା'ର ହାସ୍ୟରସବୋଧ ଯୋଗୁଁ ଯେକୌଣସି ପରିସ୍ଥିତିକୁ ଉପଭୋଗ କରିପାରେ ଯେପରି, ଅବିଚଳିତ ଭାବରେ ଯେକୌଣସି ସମସ୍ୟାର ସମ୍ମୁଖୀନ ହୋଇପାରେ ସେହିପରି । ହାରଲ୍ଡ୍ ଉଇଲ୍‌ସନ୍ ପ୍ରଧାନମନ୍ତ୍ରୀ ପଦ ତ୍ୟାଗ କଲାପରେ ଅତି ସାଧାରଣ ନାଗରିକ ଭଳି ଦଶ ନମ୍ବର ଡାଉନିଂ ଷ୍ଟ୍ରିଟ୍‌ରୁ ବ୍ୟକ୍ତିଗତ ଘରକୁ ଚାଲିଗଲେ । ତାଙ୍କ ଜିନିଷପତ୍ର ସବୁ ଭ୍ୟାନ୍‌ରେ ଲଦାହେବାର ଚିତ୍ର ଟେଲିଭିଜନ୍‌ରେ ଦେଖାଇ ଦିଆଗଲା । ଜିନିଷପତ୍ର ବିଶେଷ ନ ଥିଲା । ଉଇଲ୍‌ସନ୍ ଦିନ ଦୁଇଟାରେ ପ୍ରଧାନମନ୍ତ୍ରୀ ବାସଭବନ ଛାଡ଼ିଲେ ।

ନୂତନ ପ୍ରଧାନମନ୍ତ୍ରୀ ଜେମ୍‌ସ୍ କାଲାହାନ୍ ସେଇ ଘରକୁ ଆସିଲେ ଦିନ ଚାରିଟାରେ; ମାତ୍ର ଦୁଇଘଣ୍ଟା ପରେ । ଦେଶର ପ୍ରଧାନମନ୍ତ୍ରୀ ପରିବର୍ତ୍ତନ ଅତି ସାଧାରଣ ଘଟଣା ଯେପରି ଓ ଏଇ ଘଟଣାରୁ ହାସ୍ୟରସ କରିବାକୁ ଭୁଲି ନ ଥିଲେ ଟେଲିଭିଜନର କଳାକାରମାନେ । ଟେଲିଭିଜନରେ ଆମେ ଦେଖିଲୁ, ଜେମ୍‌ସ କାଲାହାନ୍ ରୂପଧାରୀ ଚରିତ୍ରଟିକୁ ଘେରିଯାଇ କୃତ୍ରିମ ସାମ୍ବାଦିକମାନେ ପଚାରୁଛନ୍ତି, 'ଆପଣ ପୂର୍ବତନ ପ୍ରଧାନମନ୍ତ୍ରୀଙ୍କଠାରୁ ଉତ୍ତରାଧିକାର ସୂତ୍ରରେ କ'ଣ ପାଇଛନ୍ତି ?' ନୂତନ ପ୍ରଧାନମନ୍ତ୍ରୀ ତାଙ୍କ ଘର ଭିତରୁ ଆଣି ଦେଖାଉଛନ୍ତି ଗୁଡ଼ିଏ ଚୁରୁଟ୍ । ସାମ୍ବାଦିକମାନେ ପଚାରୁଛନ୍ତି, 'ପ୍ରଧାନମନ୍ତ୍ରୀ ହେବା ପରେ ଆପଣଙ୍କ ପ୍ରଥମ କର୍ତ୍ତବ୍ୟ କ'ଣ ?' ସେ ଉତ୍ତର ଦେଉଛନ୍ତି, 'ଦଶ ନମ୍ବର ଡାଉନିଂଷ୍ଟ୍ରିଟ୍ ଘରେ ଭର୍ତ୍ତି ହୋଇଥିବା ସିଗାରେଟ୍ ଧୂଆଁ ଛାଡ଼ିବାପାଇଁ ଝରକା ଓ କବାଟସବୁ ଅବିଳମ୍ବେ ଖୋଲିଦେବା ।' ପ୍ରଧାନମନ୍ତ୍ରୀ ଉଇଲ୍‌ସନ୍ ଯେ ପ୍ରଚଣ୍ଡ ଧୂମପାନ କରନ୍ତି ଓ ଅହରହ ଚୁରୁଟ୍‌ଟିଏ ଧରିଥାନ୍ତି, ତାହାର ଏ ଏକ ବ୍ୟଙ୍ଗ ସମାଲୋଚନା ।

୧୯୭୫ ଜାନୁଆରୀରେ ଇଂଲାଣ୍ଡ ଓ ଆଇସ୍‌ଲାଣ୍ଡ ମଧ୍ୟରେ ଭୟଙ୍କର ବିବାଦ ଉପସ୍ଥିତ ହେଲା । ଆନ୍ତର୍ଜାତିକ ଆଇନ୍ ଅନୁସାରେ ସମୁଦ୍ର କୂଳବର୍ତ୍ତୀ ଦେଶମାନଙ୍କ ସୀମାରେଖା ସମୁଦ୍ର ମଧ୍ୟକୁ ନିର୍ଦ୍ଦିଷ୍ଟ କେତେ ମାଇଲଯାଏଁ ବିସ୍ତୃତ । ଆଇସ୍‌ଲାଣ୍ଡ କିନ୍ତୁ ଆଇନ୍ ଖୋଲାଖୋଲି ଲଙ୍ଘନ କରି ଇଂଲାଣ୍ଡର ଅଧିକାରଭୁକ୍ତ ଜଳଭାଗରୁ କଡ୍ ମାଛ ସଂଗ୍ରହ କରିବାକୁ ଲାଗିଲା । ଆଇସ୍‌ଲାଣ୍ଡର ଅର୍ଥନୀତି ମତ୍ସ୍ୟ-ସମ୍ପଦ ଉପରେ ସମ୍ପୂର୍ଣ୍ଣ ନିର୍ଭରଶୀଳ । ବୈଜ୍ଞାନିକ ରୀତିରେ ମତ୍ସ୍ୟ ସଂଗ୍ରହ କରିବା ଫଳରେ ଆଇସ୍‌ଲାଣ୍ଡର ଅଧିବାସୀମାନେ ସେମାନଙ୍କର ଅଧିକାରଭୁକ୍ତ ଜଳଭାଗରୁ ସମସ୍ତ କଡ୍ ମାଛ ସଂଗ୍ରହ କରି ନେଇସାରିବା ପରେ ଇଂଲାଣ୍ଡର ଜଳଭାଗରେ ପ୍ରବେଶ କରିଥିଲେ । ଆର୍ଥନୀତିକ ଆବଶ୍ୟକତା ସେମାନଙ୍କୁ ଏଭଳି ବେଆଇନ କାର୍ଯ୍ୟ କରିବାକୁ ବାଧ୍ୟ କରୁଥିଲା ବୋଲି ଆଇସ୍‌ଲାଣ୍ଡର ଧୀବର ଓ ନେତାମାନେ ଯୁକ୍ତି କରୁଥିଲେ ।

ଏଇ ଆନ୍ତର୍ଜାତିକ ବିବାଦରେ କିନ୍ତୁ ଇଂଲାଣ୍ଡ ପକ୍ଷରୁ ବିଶେଷ ଭାବପ୍ରବଣତା ବା କ୍ରୋଧ ପ୍ରକାଶ ନ ପାଇ ନ ଥିଲା । ଇଂଲାଣ୍ଡ ତୁଳନାରେ ଆଇସ୍‌ଲାଣ୍ଡ ଏକ କ୍ଷୁଦ୍ର, ସାମରିକ ଶକ୍ତି ଦୃଷ୍ଟିରୁ ନଗଣ୍ୟ ଦେଶ; କିନ୍ତୁ ଇଂଲାଣ୍ଡର ନେତାମାନେ କେବଳ ଯୁକ୍ତି ଓ ଆଲୋଚନାଦ୍ୱାରା ସମସ୍ୟାଟିର ସମାଧାନ କରିବାକୁ ଚେଷ୍ଟା କରିଥିଲେ । ଏପରିକି କେତେକ ଇଂରେଜ ବ୍ୟକ୍ତି ଯୁକ୍ତି କରିଥିଲେ ଯେ ଆଇସ୍‌ଲାଣ୍ଡର ଆର୍ଥନୀତିକ ଆବଶ୍ୟକତା ଦୃଷ୍ଟିରୁ ସେ ଦେଶ ଇଂଲାଣ୍ଡର ଜଳଭାଗରୁ କଡ୍ ମାଛ ସଂଗ୍ରହ କରିନେବା ଯଥାର୍ଥ ।

ଟେଲିଭିଜନ୍‌ରେ ଇଂଲାଣ୍ଡ-ଆଇସ୍‌ଲାଣ୍ଡ ବିବାଦ ସମ୍ପର୍କରେ ବହୁ ତାତ୍ତ୍ୱିକ ଆଲୋଚନା ଚାଲିଥିଲାବେଳେ ଏଇ ବିବାଦର ଲଘୁ ଓ ଆମୋଦଦାୟକ ଦିଗଟି ପ୍ରତି କଳାକାରମାନେ ଉଚିତ ଧ୍ୟାନ ଦେଇଥିଲେ । ଗୋଟିଏ କାର୍ଯ୍ୟକ୍ରମରେ ଆମେ ଦେଖିଲୁ, ଖୁବ୍ ଡେଙ୍ଗା ଓ ଖୁବ୍ ଗେଡ଼ା ଦୁଇଜଣ ଲୋକ ଦୁଇଟି ମାଛକୁ ପରସ୍ପର ଦେହରେ ବାଡ଼େଇବାରେ ଲାଗିଛନ୍ତି

ଓ ମଝିରେ ମଝିରେ ଚିତ୍କାର କରୁଛନ୍ତି – 'କଡ୍ ଯୁଦ୍ଧ ।' ଇଂଲାଣ୍ଡ ଓ ଆଇସ୍‌ଲାଣ୍ଡ ମଧ୍ୟରେ ଚାଲିଥିବା ବିବାଦକୁ ସମ୍ବାଦପତ୍ର ଓ ଅନ୍ୟାନ୍ୟ 'ମାସ୍ ମେଡ଼ିଆ'ରେ କୁହାଯାଉଥିଲା 'କଡ୍-ଯୁଦ୍ଧ' । x x x

କୌଣସି ପରିସ୍ଥିତିରେ ବିଶେଷ ବିଚଳିତ ନ ହେବା ଇଂରେଜ ଜାତିର ଏକ ପ୍ରଶଂସନୀୟ ଗୁଣ ହେଲେହେଁ ଉତ୍ତେଜନା ଆଲୋଡ଼ନହୀନ ସେମାନଙ୍କ ଜୀବନଯାତ୍ରା ବେଳେ ବେଳେ ମନୋଟନସ୍ ବା ବିରକ୍ତିକର ମନେହୁଏ । ୧୯୭୬ରେ ଇଂଲାଣ୍ଡର କାଉଣ୍ଟି କାଉନ୍‌ସିଲ୍ ଅର୍ଥାତ୍ ମ୍ୟୁନିସିପାଲିଟିମାନଙ୍କ ପାଇଁ ନିର୍ବାଚନ ହେଲା । ଏଭଳି ନିର୍ବାଚନରୁ ବିଭିନ୍ନ ଦଳର ଜନପ୍ରିୟତା ସୂଚିତ ହେଉଥିବାରୁ ଉଭୟ ସରକାରୀ ଓ ବିରୋଧୀଦଳ ଏଥିରେ ଯଥେଷ୍ଟ ଗୁରୁତ୍ୱ ଦିଅନ୍ତି । ମୋର ଜଣେ ପଡ଼ୋଶୀ ମାଇକ୍ ଫୁଲର୍ ଏଇ ନିର୍ବାଚନରେ ପ୍ରାର୍ଥୀ ଥିଲେ । ଦିନେ ମୋ କବାଟ ଛିଦ୍ରରେ ତାଙ୍କର ପ୍ରଚାର ପତ୍ରଟି କେହି ଗଳାଇ ଦେଇଗଲା । ସେଥିରେ ଫୁଲର୍‌ଙ୍କ ଶିକ୍ଷାଗତ ଯୋଗ୍ୟତା ଓ ସାଧାରଣ ଜୀବନରେ ଅଭିଜ୍ଞତା ସହିତ ଲେଖାଥିଲା, 'ଫୁଲର୍ ଦମ୍ପତି ଆସନ୍ତା ଜୁଲାଇରେ ସେମାନଙ୍କ ଦ୍ୱିତୀୟ ସନ୍ତାନଟି ଆଶା କରୁଛନ୍ତି ।' ଆମେ ଅବଶ୍ୟ ଏ ସମ୍ବାଦଟି ଆଗରୁ ଜାଣିଥିଲୁ । କ୍ଷୁଦ୍ର ଓ ଲୋହିତ କେଶଧାରିଣୀ ଆସନ୍ନପ୍ରସବା ଶ୍ରୀମତୀ ଫୁଲର୍ ଏକ ପ୍ରକାଣ୍ଡ ଧଳା ଭ୍ୟାନ୍ ଚଳାଇବା ଆମ ଅଞ୍ଚଳରେ ଥିଲା ଏକ ପରିଚିତ ଦୃଶ୍ୟ ।

ଆଉ ଦିନେ ଜଣେ ବୃଦ୍ଧା ଆମ କବାଟରେ ଖଡ଼୍ ଖଡ଼୍ କଲେ । ସ୍ଥାନୀୟ ନିର୍ବାଚନ ତାଲିକାରେ ମୋ ନାମଟି ଅଛି କି ନାହିଁ, ତାହା ମିଳାଇବାକୁ ସେ ଆସିଥିଲେ । ନିର୍ବାଚନ ତାଲିକାରେ ମୋ ନାମ ନ ଥିଲା 'କିଛି ମନେକରିବେ ନାହିଁ' କହି ସେ ଚାଲିଗଲେ ।

ନିର୍ବାଚନ ସମୟ ପାଖେଇ ଆସିବାରୁ କାହାରି କାହାରି ଘର କାଚ ଝରକାରେ ପ୍ରାର୍ଥୀମାନଙ୍କ ନାମ ଓ ନିର୍ବାଚନ ତାରିଖ ଲେଖାଥିବା ପ୍ରଚାରପତ୍ର ମରାଯାଇଥିବା ଦେଖିବାକୁ ମିଳିଲା । ଦିନେ ଟେଲିଭିଜନ୍‌ରେ ରକ୍ଷଣଶୀଳ ଦଳର ନେତ୍ରୀ ଶ୍ରୀମତୀ ଥ୍ୟାଚର୍ ତାଙ୍କ ଦଳର ପ୍ରାର୍ଥୀଙ୍କୁ ଭୋଟ ଦେବାପାଇଁ ନିବେଦନ କଲେ । ଆଉଦିନେ ଶ୍ରମିକ ଦଳର କେହି ଜଣେ ଶ୍ରମିକ ଦଳକୁ ଭୋଟ ଦେବାପାଇଁ ଅନୁରୋଧ କଲେ । ଉଭୟେ ତଥ୍ୟ ଓ ପରିସଂଖ୍ୟାନ ସହ ସେମାନଙ୍କ ଯୁକ୍ତିର ବଳିଷ୍ଠତା ପ୍ରମାଣ କରିବାକୁ ଚେଷ୍ଟା କଲେ । ଅବସରପ୍ରାପ୍ତ ବୃଦ୍ଧମାନେ କିପରି ଅଧିକ ସ୍ୱଚ୍ଛନ୍ଦରେ ରହିବେ, ସାଧାରଣ ଲୋକଙ୍କପାଇଁ କିପରି ଉନ୍ନତତର ବାସଗୃହ ଯୋଗାଇ ଦିଆଯିବ – ଏହାହିଁ ଥିଲା ନିର୍ବାଚନର ମୁଖ୍ୟ ଆଲୋଚ୍ୟ ବିଷୟ ।

ତା'ପରେ ନିର୍ବାଚନର ପରିସମାପ୍ତି ଓ ଟେଲିଭିଜନ୍‌ରେ ନିର୍ବାଚନର ଫଳାଫଳ ଘୋଷଣା । ବିଶେଷ ଆଲୋଚନା, ଯୁକ୍ତିତର୍କ, ସଭାସମିତି, ଭାବପ୍ରବଣତା ନାହିଁ – ଦେଶର ସ୍ଥାନୀୟ ନିର୍ବାଚନ (Local election) ସରିଗଲା । ଏତେ ବଡ଼ ଜାତୀୟ ଘଟଣା ଇଂରେଜମାନଙ୍କ ପାଇଁ ଯେପରି ଏକ ସାଧାରଣ ରୁଟିନ୍‌ବନ୍ଧା କର୍ତ୍ତବ୍ୟ ଛଡ଼ା ଆଉ କିଛି ନୁହେଁ !

ହାସ୍ୟରସବୋଧ ଜୀବନକୁ ଉପଭୋଗ କରିବାରେ ଇଂରେଜ ଜାତିକୁ ଯଥେଷ୍ଟ ସାହାଯ୍ୟ କଲେହେଁ ବହୁ ସମୟରେ ଏହା ଅଶ୍ଳୀଳତା ଅନୁସାରୀ ହୋଇପଡ଼େ । ବିଶେଷତଃ ଟେଲିଭିଜନ୍‌ର ହାସ୍ୟରସମୂଳକ କାର୍ଯ୍ୟକ୍ରମଗୁଡ଼ିକ ଅନେକ ସମୟରେ ଭାରତୀୟମାନଙ୍କୁ ଅଶ୍ଳୀଳ ବୋଧହେବା ସ୍ୱାଭାବିକ । ପାମ୍ ଆୟାର୍ସ ନାମ୍ନୀ ଜଣେ ଭଦ୍ରମହିଳା ଏବେ ଟେଲିଭିଜନ୍‌ରେ ହାସ୍ୟ–ରସାତ୍ମକ କବିତା ଆବୃତ୍ତି କରି ବିଶେଷ ଜନପ୍ରିୟତା ଲାଭ କରିଛନ୍ତି । ଅନେକ ସମୟରେ ତାଙ୍କ କବିତାଗୁଡ଼ିକ ଅଶ୍ଳୀଳତାର ସୂଚନା ଦିଏ । ଯେକୌଣସି ଉପାୟରେ ଦର୍ଶକମାନଙ୍କୁ ହସାଇବାର ଉଦ୍ୟମ କରି କଳାକାରମାନେ ବହୁ ସମୟରେ ରୁଚିହୀନତାର ପରିଚୟ ଦିଅନ୍ତି । ପରସ୍ପର ଉପରକୁ ପୁଡ଼ିଂ ଫୋପାଡ଼ିବା, ମୁଖ ବିକୃତ କରିବା, ସ୍ତ୍ରୀଲୋକମାନଙ୍କର ଶରୀରର କୌଣସି ଅଂଶକୁ ଅତି ବର୍ଦ୍ଧିତ ଆକାରରେ ଦେଖାଇବା – ଏଗୁଡ଼ିକୁ ହାସ୍ୟରସ ପରିବେଷଣର ସହଜ ଉପାୟ ଭାବରେ ବ୍ୟବହାର କରାଯାଏ । ଥରେ କ୍ୟାଣ୍ଟରବରୀର ବାର୍ଷିକ ମେଳା (Carnival)ରେ ଜଣେ ସ୍ତ୍ରୀଲୋକ ତାଙ୍କ ବକ୍ଷ ଉପରେ ରବର ନିର୍ମିତ ଏକ ପ୍ରକାଣ୍ଡ ସ୍ତନ ସ୍ଥାପନ କରି ଫ୍ୟାନ୍ସି ଡ୍ରେସ୍ ପ୍ୟାରେଡ୍‌ରେ ଚାଲିଥିଲେ । ଦର୍ଶକମାନଙ୍କର ସେ ହିଁ ହୋଇଥିଲେ ମୁଖ୍ୟ ଆକର୍ଷଣ ! × × ×

ହାସ୍ୟରସବୋଧ ଓ ଖେଳୁଆଡ଼୍ ମନୋବୃତ୍ତି ବହୁ ଦୁର୍ଦ୍ଦିନ ଓ ବିପର୍ଯ୍ୟୟର ସମ୍ମୁଖୀନ ହେବାରେ ଇଂରେଜ ଜାତିକୁ ସାହାଯ୍ୟ କରିଛି ଯଥେଷ୍ଟ । ଖେଳୁଆଡ଼୍ ମନୋବୃତ୍ତି ନେଇ ଇଂରେଜ ଲୋକଟି ନିଜର କ୍ଷୁଦ୍ର ଦ୍ୱୀପ ଛାଡ଼ି ଶତାବ୍ଦୀ ଶତାବ୍ଦୀ ଧରି ପୃଥିବୀର ପ୍ରତି କୋଣରେ ସୁଖ, ସମୃଦ୍ଧି ଓ ନୂତନ ଅନୁଭୂତିର ସନ୍ଧାନ କରିଛି । ଦୁଇଦୁଇଟା ମହାଯୁଦ୍ଧରେ ଇଂଲାଣ୍ଡର ଅର୍ଥନୀତି ଧ୍ୱସ୍ତବିଧ୍ୱସ୍ତ ହୋଇ ପଡ଼ିଥିଲେ ବି ଇଂରେଜ ଅତୀତ ପାଇଁ ଅଶ୍ରୁପାତ କରି ନାହିଁ, ସହଜ ସ୍ୱାଭାବିକ ଭାବରେ ଭବିଷ୍ୟତ୍‌କୁ ହିଁ ଚାହିଁ ରହିଛି । ଦୁଇଶହ ବର୍ଷର ଉପନିବେଶବାଦ ଲୋପ ହୋଇ ଇଂଲାଣ୍ଡ ଆଜି ତା'ର ରାଜନୀତିକ, ସାମାଜିକ ଓ ଅର୍ଥନୀତିକ ପ୍ରାଧାନ୍ୟ ଅନେକାଂଶରେ ହରାଇଛି; କିନ୍ତୁ ସେଥିପାଇଁ ସାଧାରଣ ଇଂରେଜ ଲୋକଟି ଅତୀତକୁ ବିଶେଷ ଝୁରିହୁଏ ନାହିଁ । ଆମେ ଭାରତୀୟମାନେ ସୁଦୂର ଅତୀତରେ କେବେ ଦକ୍ଷିଣ ପୂର୍ବ ଏସିଆର କୌଣସି କୌଣସି ଦେଶରେ ଉପନିବେଶ ସ୍ଥାପନ କରିଥିଲୁ । ସେଥିପାଇଁ ଆମେ କେତେ ଗର୍ବ ଅନୁଭବ ନ କରୁ । ଏଇ ମାତ୍ର ଅଳ୍ପ କେତେ ବର୍ଷ ତଳେ ହରାଇଥିବା ପୃଥିବୀବ୍ୟାପୀ ସାମ୍ରାଜ୍ୟ ପାଇଁ ଇଂରେଜ ଲୋକଟି ସେତିକି ଗର୍ବ ଅନୁଭବ କରେ କି ନା, ସନ୍ଦେହଜନକ ।

ଇଂରେଜମାନେ ହରାଇଥିବା ସାମ୍ରାଜ୍ୟ ପାଇଁ କାହିଁକି ବିଶେଷ ଦୁଃଖ କରନ୍ତି ନାହିଁ ବୋଲି ମୁଁ ଏକାଧିକ ଇଂରେଜ ଲୋକଙ୍କୁ ପଚାରିଛି । ସେମାନେ ଉତ୍ତର ଦେଇଛନ୍ତି, 'ହୁଏତ ଇଂରେଜମାନଙ୍କର ଇତିହାସ ଜ୍ଞାନ ନାହିଁ ।' କିନ୍ତୁ ଇତିହାସ ଜ୍ଞାନର ଅଭାବ ନୁହେଁ, ଇତିହାସ ପ୍ରତି ଖେଳୁଆଡ଼୍‌ସୁଲଭ ମନୋବୃତ୍ତି ଇଂରେଜ ଜାତିକୁ ଅତୀତ ପ୍ରତି ଅତ୍ୟଧିକ ମୋହରୁ ରକ୍ଷା କରିଛି ।

ଦ୍ୱିତୀୟ ମହାଯୁଦ୍ଧ ସମୟରେ ପ୍ରବଳ ପ୍ରତାପୀ ହିଟ୍‌ଲର୍ ଲଣ୍ଡନ୍ ସହରର ଦୁଇ ତୃତୀୟାଂଶ ଧ୍ୱଂସ କରିଦେଇଥିଲେ । ସେଭଳି ଜୀବନ ମରଣ ସଂଗ୍ରାମରେ ସୁଦ୍ଧା ଇଂରେଜମାନେ ହିଟ୍‌ଲର୍ ଭୂମିକାରେ ଚାର୍ଲି ଚାପ୍‌ଲିନ୍‌ଙ୍କ ଅଭିନୟ ଉପଭୋଗ କରିବାକୁ କୁଣ୍ଠିତ ନ ଥିଲେ । ଆଜିର ଆର୍ଥନୀତିକ ପ୍ରତିଯୋଗିତାରେ ଇଂଲାଣ୍ଡ, ଜାପାନ, ପଶ୍ଚିମ ଜର୍ମାନୀ ସହିତ ସମକକ୍ଷ ହୋଇପାରୁ ନାହିଁ । ନିଜ ଦେଶର ପ୍ରାକୃତିକ ସମ୍ପଦ ସୀମିତ ହେତୁ ଇଂରେଜମାନେ ସେମାନଙ୍କ ଜୀବନଧାରଣର ମାନ ହ୍ରାସ ନ କରିବାକୁ ସଂଗ୍ରାମ କରି ଚାଲିଛନ୍ତି । ଉତ୍ତର ମହାସାଗର ଗର୍ଭରୁ ତୈଳ ଆହରଣ କରି ବିଶ୍ୱବ୍ୟାପୀ ଦେଖାଦେଇଥିବା 'ଶକ୍ତି ସମସ୍ୟା' (energy crisis)ର ସମାଧାନ କରିବାକୁ ଉଦ୍ୟମ କରୁଛନ୍ତି ।

କିନ୍ତୁ ଇଂରେଜମାନଙ୍କ ମୁହଁରେ ହସ ଓ ଖେଳୁଆଡ଼୍ ମନୋଭାବ ଅତୁଟ ରହିଛି । ପ୍ରଧାନମନ୍ତ୍ରୀ ପଦ ତ୍ୟାଗ କରିବାର ସଂକଟମୟ ମୁହୂର୍ତ୍ତରେ ନିଜ କୁକୁରର ଅସୁବିଧା ଉଲ୍ଲେଖ କରିବା ଓ ଅକ୍ଳେଶରେ ସାଧାରଣ ନାଗରିକର ଜୀବନକୁ ଫେରିଯିବା କେବଳ ହାରଲ୍ଡ୍ ଉଇଲ୍‌ସନ୍‌ଙ୍କ ଚରିତ୍ରର ବୈଶିଷ୍ଟ୍ୟ ନୁହେଁ, ଏହା ଇଂରେଜମାନଙ୍କ ଜାତୀୟ ଚରିତ୍ର ।



## ଶ୍ରୀମତୀ ନେଲ୍‌ସନ୍‌ଙ୍କୁ ଯେତେବେଳେ କାଳିଶି ଲାଗେ

ନଭେମ୍ବର ମାସର ଗୋଟିଏ ଖୁବ୍ ଥଣ୍ଡା ସନ୍ଧ୍ୟାରେ ମୋ ମରୀସସୀୟ ବନ୍ଧୁ ଭାଲ୍ ଆସି କହିଲା, 'ଚାଲ ଆଜି ତୁମକୁ ଗୋଟିଏ ଇଂଟରେଷ୍ଟିଂ ସ୍ଥାନକୁ ନେଇଯିବି ।' ସେଦିନ ସନ୍ଧ୍ୟାରେ ମୋର ଅନ୍ୟ କୌଣସି ପ୍ରୋଗ୍ରାମ୍ ନ ଥିଲା । ତେଣୁ ଅବିଳମ୍ବେ ମୁଁ ଭାଲ୍ ସଙ୍ଗେ ବାହାରିଲି । କ୍ୟାଣ୍ଟରବରୀର ମେନ୍ ରାସ୍ତା ଛାଡ଼ି ଆମେ ପ୍ରାୟ ଜନଶୂନ୍ୟ ସଂକୀର୍ଣ୍ଣ ଗଳି ରାସ୍ତାରେ ଚାଲିବାକୁ ଲାଗିଲୁ । ଆମେ କୁଆଡ଼େ ଯାଉଛୁ ବୋଲି ମୁଁ ବାରମ୍ବାର ପଚାରିଲାରୁ ଭାଲ୍ କହିଲା, 'ତୁମେ ଯେତେବେଳେ ଭାରତରୁ ଆସିଛ , ଇଂଲାଣ୍ଡର କାଳିଶିମାନଙ୍କୁ ତୁମର ସାକ୍ଷାତ୍ କରିବା ଉଚିତ । ତୁମ ଦେଶରେ ବହୁ କାଳିଶି ଅଛନ୍ତି ବୋଲି ଆମେ ଶୁଣିଛୁ; କିନ୍ତୁ ଇଂଲାଣ୍ଡରେ କାଳିଶି ଥିବା ତୁମେ ଶୁଣିଥିଲ ?'

ମୁଁ ଆଶ୍ଚର୍ଯ୍ୟ ହେଲି । ଇଂଲାଣ୍ଡରେ କାଳିଶି ! ଭାଲ୍ ନୂଆ କଳାରଙ୍ଗର ସୁଟ୍‌ଟିଏ ପିନ୍ଧିଥାଏ, ସେଲୁନ୍‌ରେ ମୁଣ୍ଡର ବାଳ ଡାଇଂ କରି ଦଶବର୍ଷ ପଛକୁ ଫେରିଯାଇଥାଏ । କାଳିଶିମାନଙ୍କୁ ସାକ୍ଷାତ୍ କରିବା ପାଇଁ ଆପାତତଃ ସେ ପ୍ରସ୍ତୁତ ହୋଇ ଆସିଥାଏ !

ସେ କହିଲା, 'ତୁମେ ଏ କାଳିଶିମାନଙ୍କ କଥାରେ ବିଶ୍ୱାସ କରିପାର, ନ କରିପାର; କିନ୍ତୁ ମୋ ଅନୁଭୂତିରୁ ମୁଁ ଜାଣେ, ଏ କାଳିଶିମାନଙ୍କର କିଛି ଅସାଧାରଣ ଶକ୍ତି ଅଛି ।

ଯେଉଁ ସମୟତକ ସେମାନଙ୍କୁ କାଳିଶି ଲାଗେ, ଅଶରୀରୀ ଜଗତର ସମ୍ବାଦ ଏ ପୃଥିବୀକୁ ଆଣିବା ପାଇଁ ସେତେବେଳେ ସେମାନଙ୍କ ଶରୀର ଏକ ମିଡ଼ିୟମ୍ (ମାଧ୍ୟମରେ) ପରିଣତ ହୁଏ । ସେତେବେଳେ ସେମାନେ ତୁମ ଅତୀତ, ବର୍ତ୍ତମାନ, ଭବିଷ୍ୟତ ସମ୍ପର୍କରେ ଠିକ୍ ଠିକ୍ କହିପାରନ୍ତି ।'

ତା'ପରେ ସେ ଆରମ୍ଭ କଲା ଜଣେ କାଳିଶି ସହ ତା'ର ବ୍ୟକ୍ତିଗତ ଅନୁଭୂତି । 'ଆଜି ଆମେ ଯେଉଁଠାକୁ ଯାଉଛେ, ସେଠାକୁ ମୁଁ ଥରେ ମାତ୍ର ଯାଇଛି । ମାସର ଶେଷ ଶୁକ୍ରବାର ଦିନ ସେଠାରେ ଗୋଟିଏ ହଲ୍‌ରେ ଅନେକ ଲୋକ ଏକାଠି ହୁଅନ୍ତି । ସେଦିନ ଯାହାକୁ କାଳିଶି ଲାଗିବା କଥା, ତାଙ୍କ ନାମ ଆଗରୁ ଘୋଷଣା କରାଯାଇଥାଏ । ମୁଁ ପ୍ରଥମେ ଏହି କାଳିଶି ଲାଗିବାରେ ବିଶ୍ୱାସ କରୁ ନ ଥିଲି । ଖାଲି କୌତୂହଳରେ ଥରେ ସେଇ ହଲ୍ ଭିତରକୁ ପଶିଗଲି ।'

ଭାଲ୍‌ର ସ୍ୱର ଏହା ଭିତରେ ବଦଳି ଯାଇଥିଲା । ସେ ଯେ କିଛି ଗୋଟାଏ ଗୁରୁତର ବିଷୟ କହିବାକୁ ଯାଉଛି, ମୁଁ ତାହା ଠିକ୍ ଅନୁମାନ କରିସାରିଥିଲି । ସେ କହୁଥିଲା, ମୁଁ ହଲ୍ ଭିତରେ ଗୋଟିଏ କୋଣରେ ଚୁପ୍‌ଚାପ୍ ବସିଥାଏ । କାଳିଶି ମଝିରେ ମଝିରେ ସମବେତ ଲୋକମାନଙ୍କ ମଧ୍ୟରୁ କାହାକୁ ଠିଆ ହେବାକୁ କହୁଥାନ୍ତି ଏବଂ ତାଙ୍କ ପରଲୋକଗତ ବନ୍ଧୁ ବା ସମ୍ପର୍କୀୟମାନେ ତାଙ୍କ ନିକଟକୁ ପଠାଉଥିବା ବାର୍ତ୍ତା ଦେଉଥାନ୍ତି । ମୁଁ ଭାବୁଥାଏ, କାଳିଶିଙ୍କ ଦୃଷ୍ଟି ବା କାହିଁକି ମୋ ଉପରେ ପଡ଼ିବ ? ବହୁ ଲୋକ ନିୟମିତ ବୈଠକମାନଙ୍କରେ ଯୋଗଦେଇ ଚାଲିଯାନ୍ତି । କେତେକ କାଳିଶି କେବେ ସେମାନଙ୍କୁ କିଛି କହନ୍ତି ନାହିଁ । କାଳିଶି ତମକୁ କିଛି କହିବା ତୁମର ଭାଗ୍ୟର କଥା ।

'କି ଆଶ୍ଚର୍ଯ୍ୟ, କାଳିଶି ହଠାତ୍ ମୋତେ ହିଁ ଠିଆ ହେବାକୁ କହିଲେ । ମୁଁ ଠିଆ ହେଲି । ସେ କହିଲେ, 'ତୁମର ଜଣେ କେହି ଅତି ନିକଟତମ ବ୍ୟକ୍ତି ତୁମ ନିକଟକୁ ସମ୍ବାଦ ପଠାଉଛନ୍ତି । ତୁମର କେହି ନିକଟତମ ବ୍ୟକ୍ତିଙ୍କର ଅଳ୍ପ କେତେଦିନ ତଳେ ପରଲୋକ ହୋଇଛି । ହଁ କି ନାହିଁ ?'

'ମୁଁ ସମ୍ମତି ଜଣାଇଲି । ସେ କହିଲେ, ଡାକ୍ତରମାନଙ୍କ ଅବହେଳାରୁ ମୃତ୍ୟୁ ଘଟିଛି ।'

ଭାଲ୍ ମରିସସ୍‌ର ହସ୍‌ପିଟାଲ୍‌ରେ ତା'ର ସ୍ତ୍ରୀର ମୃତ୍ୟୁଦିନର ସମସ୍ତ ଘଟନା ବର୍ଣ୍ଣନା କଲା । କହିଲା, 'ଡାକ୍ତରମାନଙ୍କ ଅବହେଳାରୁ ମୋର ସ୍ତ୍ରୀର ଯେ ମୃତ୍ୟୁ ହେଲା, ଏହା ମୁଁ ମୂଳରୁ ସନ୍ଦେହ କରିଥିଲି, କାଳିଶିଙ୍କ କଥା ଶୁଣିବା ପରେ ମୋ ସନ୍ଦେହ ଯଥାର୍ଥ ବୋଲି ନିଶ୍ଚିତ ଭାବରେ ଜାଣିଲି ।

ଭାଲ୍‌ର କଥା ସରିଲାବେଳକୁ ଆମେ ଗୋଟିଏ ସଂକୀର୍ଣ୍ଣ ଗଳି ରାସ୍ତାରେ ଏକ ପୁରୁଣା ଘର ସମ୍ମୁଖରେ ପହଞ୍ଚି ସାରିଥିଲୁ । ତାହାହିଁ ଥିଲା ଆମର ଗନ୍ତବ୍ୟ ସ୍ଥଳ । × × ×

ଆମେ ପହଞ୍ଚିଲାବେଳକୁ ସେଇ ପୁରୁଣା ଘରର ଏକ ପ୍ରକାଣ୍ଡ ହଲ୍ ବହୁ ପୁରୁଷ ଓ ସ୍ତ୍ରୀଙ୍କ ଦ୍ୱାରା ପୂର୍ଣ୍ଣ ହୋଇ ସାରିଥିଲା । ସେମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ପରିଣତବୟସ୍କ । ସେମାନେ ହଲ୍‌ର ପ୍ରାୟ ସମସ୍ତ ଚେୟାର ଅଧିକାର କରି ନୀରବରେ ବସି ରହିଥିଲେ । ସେମାନଙ୍କ ସମ୍ମୁଖରେ ଏକ ଉଚ୍ଚ ପ୍ଲାଟ୍‌ଫର୍ମ୍ ଉପରେ ବସିଥିଲେ ଜଣେ ମଧ୍ୟବୟସ୍କା ମହିଳା । ମହିଳାଙ୍କ ନିକଟରେ ଟେବୁଲ ଉପରେ ଜିସସ୍ ଖ୍ରୀଷ୍ଟଙ୍କର ଏକ ପ୍ରକାଣ୍ଡ ତୈଳଚିତ୍ର – ଚିତ୍ରରେ ଖ୍ରୀଷ୍ଟ ହାତରେ ଗୋଟିଏ ଲଣ୍ଠନ ଧରି ଠିଆ ହୋଇଛନ୍ତି । ଅନ୍ଧାରରେ ପଥ ହରାଇଥିବା ମଣିଷ ଜାତିକୁ ସେ ଯେପରି ଆଶା ଓ ଆଲୋକର ସନ୍ଧାନ ଦେଉଛନ୍ତି ! ଫଟୋତଳେ କିଛି ପ୍ଲାଷ୍ଟିକ୍ ଫୁଲ । ସମଗ୍ର ହଲ୍‌ର ଚଟାଣଟି ଗାଢ଼ ଲାଲ୍ ରଙ୍ଗର ଗାଲିଚାରେ ଆବୃତ; ଝରକାର ପର୍ଦ୍ଦାସବୁ ହଳଦିଆ । ହଲ୍‌ର ଗୋଟିଏ କୋଣରେ ପିଆନୋଟିଏ ଓ ନିକଟରେ ତା'ର ବାଦକ । ହଲ୍‌ର ଅଭ୍ୟନ୍ତରରେ ସାଜସଜ୍ଜା ଓ ବାତାବରଣରେ ଯେପରି କିଛି ଗୋଟାଏ ଆଧିଭୌତିକତା ଓ ଅସ୍ୱାଭାବିକତାର ସୂଚନା ମିଳୁଥିଲା ।

ଆମେ ପହଞ୍ଚିବା ପରେ ପରେ ହିଁ ସଭାକାର୍ଯ୍ୟ ଆରମ୍ଭ ହେଲା । ପ୍ରଥମେ ପିଆନୋବାଦକ ସେଦିନ ବୋଲାହେବାକୁ ନିର୍ଦ୍ଦିଷ୍ଟ ପ୍ରାର୍ଥନା ସଙ୍ଗୀତଟିର ନାମ ଘୋଷଣା କଲେ ଓ ତା'ପରେ ସମସ୍ତେ ବୋଲିବାକୁ ଲାଗିଲେ – The shepherd is my angel guide (ଖ୍ରୀଷ୍ଟହିଁ ମୋର ଈଶ୍ୱରପ୍ରେରିତ ପଥପ୍ରଦର୍ଶକ) । ସମସ୍ତଙ୍କ ସମ୍ମୁଖରେ ସେଇ ଗୀତର ଗୋଟିଏ ଲେଖାଏଁ କପି ପୂର୍ବରୁ ରଖାଯାଇଥିଲା । ଗୀତଟି ବୋଲାସରିବା ପରେ ଗୋଟିଏ ଡବାରେ ପ୍ରତ୍ୟେକଙ୍କଠାରୁ କିଛି କିଛି ଅର୍ଥ ସଂଗ୍ରହ କରାଗଲା ।

ଯେଉଁ ମଧ୍ୟବୟସ୍କା ଭଦ୍ରମହିଳା ସମସ୍ତଙ୍କ ସମ୍ମୁଖରେ ପ୍ଲାଟ୍‌ଫର୍ମ୍‌ରେ ବସିଥିଲେ, ସେ ହିଁ ଥିଲେ ସେଦିନର କାଳିଣି । ତାଙ୍କର ନାଆଁ ଶ୍ରମତୀ ନେଲ୍‌ସନ୍, କ୍ୟାଣ୍ଟର୍‌ବରୀର ନିକଟବର୍ତ୍ତୀ ହ୍ୱାଇଟ୍ ଷ୍ଟେବ୍‌ଲ୍‌ରୁ ସେ ଆସିଥିଲେ । ପ୍ରାର୍ଥନା ଓ ଅର୍ଥସଂଗ୍ରହ ପରେ ସେ ଉଠି ଠିଆହେଲେ ଓ ଆଧୁନିକ ମଣିଷ ସମାଜରେ ଦେଖାଦେଉଥିବା ଅନୀତି, ଅନାଚାର ଲୋପ କରିବାକୁ ହେଲେ ଖ୍ରୀଷ୍ଟଙ୍କର ବାଣୀଗୁଡ଼ିକ ସମସ୍ତେ ପାଳନ କରିବା ଉଚିତ – ଏହି ମର୍ମରେ କ୍ଷୁଦ୍ର ଭାଷଣଟିଏ ଦେଲେ ।

ଭାଷଣ ପରେ ସେ ଉପସ୍ଥିତ ଶ୍ରୋତାମାନଙ୍କ ମଧ୍ୟରୁ କାହାକୁ ଅଙ୍ଗୁଳି ନିର୍ଦ୍ଦେଶ କରି ଠିଆ ହେବାକୁ କହିଲେ ।

ଶ୍ରୀମତୀ ନେଲ୍‌ସନ୍ ଓ ଉପସ୍ଥିତ କୌଣସି କୌଣସି ଶ୍ରୋତାଙ୍କ କଥୋପକଥନ ମୋଟାମୋଟି ଏହିପରି ଥିଲା :

ଶ୍ରୀମତୀ ନେଲ୍‌ସନ୍ – ହେଇ... ଆପଣ...

(ଜଣେ ବୃଦ୍ଧା ଠିଆହେଲେ)

ନେଲ୍‌ସନ୍ – ଆପଣଙ୍କର ଜଣେ ବନ୍ଧୁ ଆପଣଙ୍କୁ କିଛି ବାର୍ତ୍ତା ଦେବାକୁ ଚାହୁଁଛନ୍ତି । ଖ୍ରୀଷ୍ଟମାସ୍ ସମୟରେ ତାଙ୍କର ମୃତ୍ୟୁବାର୍ଷିକୀ ପଡ଼େ । ବୁଝିପାରିଲେ ?

ବୃଦ୍ଧା – (ଟିକିଏ ଭାବି) ହଁ, ବୁଝୁଛି ।

ନେଲ୍‌ସନ୍ – ସେ ଆପଣଙ୍କୁ ଗୋଟିଏ ଗୋଲାପଫୁଲ ଦେଉଛନ୍ତି । ଆପଣଙ୍କ ସ୍ୱାସ୍ଥ୍ୟ ସମ୍ପର୍କରେ ଆପଣ ଟିକିଏ ସତର୍କ ରହିବାକୁ ସେ କହୁଛନ୍ତି । ଆପଣଙ୍କ ସ୍ୱାସ୍ଥ୍ୟରେ କିଛି ସମସ୍ୟା ଅଛି କି ?

ବୃଦ୍ଧା – ହଁ, ନିଃଶ୍ୱାସ ପ୍ରଶ୍ୱାସରେ ମୋର କଷ୍ଟ ହୁଏ ।

ନେଲ୍‌ସନ୍ – ଆପଣଙ୍କ ବନ୍ଧୁ ସେଥିପାଇଁ ଆପଣଙ୍କୁ ସତର୍କ ରହିବାକୁ କହୁଛନ୍ତି ।

କିଛି ସମୟ ନୀରବତା । ଶ୍ରୀମତୀ ନେଲ୍‌ସନ୍ ଗମ୍ଭୀର ଓ ଚିନ୍ତିତ ଦିଶୁଥିଲେ, ଖୁବ୍ ଗୁରୁତର ତଥ୍ୟ କିଛି ଘୋଷଣା କଲାପରି ସତର୍କତାର ସହିତ ଧୀରେ ଧୀରେ କଥା କହୁଥିଲେ । ତାଙ୍କର ଅଙ୍ଗଭଙ୍ଗୀ, କଥାଭାଷାରେ ଅସ୍ଥିରତା ପ୍ରକାଶ ପାଉଥିଲା ।

ନେଲ୍‌ସନ୍ – ଆପଣ...

(ଜଣେ ବୃଦ୍ଧ ଠିଆ ହେଲେ)

ନେଲ୍‌ସନ୍ – ଆପଣଙ୍କର ଜଣେ ବନ୍ଧୁ ଖୁବ୍ ନିକଟତମ ନୁହନ୍ତି ହୁଏତ – ତାଙ୍କର ଯୁଦ୍ଧରେ ଗୋଟିଏ ହାତ କଟି ଯାଇଥିଲା । ଜାଣିପାରୁଛନ୍ତି ?

ବୃଦ୍ଧ – ହଁ ।

ନେଲ୍‌ସନ୍ – ସେ ଆପଣଙ୍କୁ ଶୁଭେଚ୍ଛା ଜଣାଉଛନ୍ତି । ... ଡରୋଥି କିଏ ?

ବୃଦ୍ଧ – ମୋ ମାଆ ।

ନେଲ୍‌ସନ୍ – ସେ ଆପଣଙ୍କୁ ସ୍ନେହ ଦେଉଛନ୍ତି । × × ×

ଶ୍ରୀମତୀ ନେଲସନ୍‌ଙ୍କୁ କାଳିଶି ଛାଡ଼ିବା ପରେ ସେ ଓ ସଭାର ଅନ୍ୟ ସମସ୍ତେ ଆଉ ଗୋଟିଏ ବଖରାକୁ ଆସିଲୁ । ସେଠାରେ ସମସ୍ତଙ୍କ ପାଇଁ ଚା', କଫି ଓ ବିସ୍କୁଟ୍ ଅପେକ୍ଷା କରିଥିଲା । ସେ କୋଠରିର ଗୋଟିଏ ସାଇନ୍ ବୋର୍ଡ୍‌ରେ କେଉଁ ମାସରେ କାହାକୁ କାଳିଶି ଲାଗିବ, ତାହାର ଗୋଟିଏ ତାଲିକା ଟଙ୍ଗା ହୋଇଥିଲା । କାଳିଶିମାନଙ୍କ ଦ୍ୱାରା ବ୍ୟାଧି ଉପସମ (Healing Service) ସମ୍ପର୍କରେ ମଧ୍ୟ କେତେକ ସମ୍ବାଦ ଘୋଷଣା କରାଯାଇଥିଲା । ଚା' ଓ କଫି ଶୋଷିବାବେଳେ କେହି କେହି ଶ୍ରୀମତୀ ନେଲ୍‌ସନ୍ ଓ ଅନ୍ୟାନ୍ୟ କାଳିଶିମାନଙ୍କ ସମ୍ପର୍କରେ ଆଲୋଚନା କରୁଥିଲେ । ମୋତେ କେହି କେହି 'ଆପଣ ଆଗରୁ ଆସିଥିଲେ ନା ଏଇ ପ୍ରଥମଥର ?' 'ଏଣିକି ଆପଣ ନିୟମିତ ଆସିବେ କି ?' ପ୍ରଭୃତି ପ୍ରଶ୍ନ ପଚାରିବାକୁ ଲାଗିଲେ । ଚମତ୍କାର ରଙ୍ଗ ହେତୁ ଯେକୌଣସି ଇଂରେଜ ସଭାରେ ମୋର ଉପସ୍ଥିତିର କିଛି ସ୍ୱାତନ୍ତ୍ର୍ୟ ଥିଲା ।

ଶ୍ରୀମତୀ ନେଲ୍‌ସନ୍ କାଳିଶି ଛାଡ଼ିବା ପରେ ଅନ୍ୟମାନଙ୍କ ସହ ମିଳାମିଶା ନ କରି ଗୋଟିଏ କ୍ଷୁଦ୍ର କୋଠରିରେ ଏକାକୀ ବସି ରହିଥିଲେ । ମୁଁ ତାଙ୍କ ନିକଟକୁ ଯାଇ କହିଲି, 'ଆଜ୍ଞା ମୁଁ ଏଠି ସ୍ଥାନୀୟ ବିଶ୍ୱବିଦ୍ୟାଳୟରେ ଗବେଷଣା କରେ । ମୋର କିଛି ସମସ୍ୟା ଅଛି । ଆପଣ ମୋତେ କିଛି କହିବେନି ?'

ସେ ପୂର୍ବାପେକ୍ଷା ଅଧିକ ସତେଜ ଓ ସ୍ୱାଭାବିକ ଦିଶୁଥିଲେ । କହିଲେ, 'ମୋର ବର୍ତ୍ତମାନ ଅଶରୀରୀ ଜଗତ ସହିତ ଯୋଗସୂତ୍ର (vibration) କଟିଗଲା । ତେଣୁ କିଛି କହିବା ବିପଦ୍‌ଜନକ । ତେବେ ଆପଣଙ୍କର ଭ୍ରମଣଜନିତ କିଛି ସମସ୍ୟା ଅଛି । ଆପଣ ଯେଉଁ ସିଦ୍ଧାନ୍ତ ନେବା କଥା ଭାବୁଛନ୍ତି, ତାହା ନିଅନ୍ତୁ ।'

ଶ୍ରୀମତୀ ନେଲ୍‌ସନ୍‌ଙ୍କ କଥାର ଅର୍ଥ ମୁଁ ଠିକ୍ ବୁଝିପାରିଲି ନାହିଁ । ସେ ପୁଣି କହିଲେ, 'ବର୍ତ୍ତମାନ ଆପଣ କିଛି ଆଶା କରୁଛନ୍ତି କି ? ଆପଣ ଯଦି କୌଣସି ପରୀକ୍ଷା ସମ୍ପର୍କରେ ଚିନ୍ତିତ ଥା'ନ୍ତି, ତେବେ ଆପଣ ସେଥିରେ ଯେତେ ଭଲ କରିବେ ବୋଲି ଭାବୁଛନ୍ତି, ତା'ଠାରୁ ଅଧିକ ଭଲ କରିବେ ।'

କିଛି ସମୟ ଚୁପ୍ ରହି ସେ ପୁଣି କହିଲେ, 'ବର୍ତ୍ତମାନ ଆପଣ ଜଡ଼ଜଗତ (materialism)ରେ ହିଁ ଆଗ୍ରହୀ; କିନ୍ତୁ ଆପଣଙ୍କୁ ଆଧ୍ୟାତ୍ମିକତା ପ୍ରତି ଆକୃଷ୍ଟ କରିବାପାଇଁ କେତେକ ଶକ୍ତି ସଚେଷ୍ଟ ହେଲେଣି । କେହି ଜଣେ ଆପଣଙ୍କ ଗତିବିଧି ଲକ୍ଷ୍ୟ କରୁଛନ୍ତି । ସେ ଶିଖ ନୁହନ୍ତି; କିନ୍ତୁ ତାଙ୍କର ଲମ୍ବା ଦାଢ଼ି ଅଛି ଓ ସେ ମୁଣ୍ଡରେ ପଗଡ଼ି ପିନ୍ଧିଛନ୍ତି ।'

ମୋର ପରଲୋକଗତ ବନ୍ଧୁ ଓ ସମ୍ପର୍କୀୟମାନଙ୍କ ମଧ୍ୟରେ କେହି ଲମ୍ବା ଦାଢ଼ି ରଖିଥିବା ଓ ପଗଡ଼ି ପିନ୍ଧୁଥିବା ମୋତେ ଜଣା ନାହିଁ । ତେବେ ଶ୍ରୀମତୀ ନେଲ୍‌ସନ୍‌ଙ୍କୁ ସାକ୍ଷାତ୍ କରିବାର ଅଳ୍ପଦିନ ପୂର୍ବରୁ ମୁଁ ମୋ ଗବେଷଣା ସମ୍ପର୍କରେ ଗୋଟିଏ ମୌଖିକ ପରୀକ୍ଷା ଦେଇଥିଲି ଏବଂ ଶ୍ରୀମତୀ ନେଲ୍‌ସନ୍‌ଙ୍କ ସହିତ ସାକ୍ଷାତ୍‌ର କିଛିଦିନ ପରେ ସେଥିରେ ସଫଳ ହୋଇଥିବାର ସମ୍ବାଦ ପାଇଥିଲି ।



## ବିଲାତରେ ଜଗନ୍ନାଥ

୧୯୭୭ ମସିହା ଜୁଲାଇ ମାସ ୧୧ ତାରିଖ, ସୋମବାର । ରାଦାର୍‌ଫୋର୍ଡ୍ କଲେଜ୍‌ର ସିନିୟର୍ କମନ୍‌ରୁମ୍‌ରେ ଏକାକୀ ବସି ପତ୍ରିକା ଓ ଖବରକାଗଜ ଓଲଟାଉଛି, ହଠାତ୍ The Guardian ପତ୍ରିକାର ଦ୍ୱିତୀୟ ପୃଷ୍ଠାରେ ଗୋଟିଏ ଛବି ଦେଖି ଚମକି ପଡ଼ିଲି । ଛବିରେ ଲଣ୍ଡିତମସ୍ତକ, ଧୋତି, ପଞ୍ଜାବି ଓ ରୁଦ୍ରାକ୍ଷ ମାଳା ପରିହିତ ଜଣେ ଇଂରେଜ ହିନ୍ଦୁ

ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର ତିନୋଟି ମୂର୍ତ୍ତି ଗୋଟିଏ କ୍ଷୁଦ୍ର ରଥରେ ବୋହି ନେଉଛନ୍ତି ଓ ତାଙ୍କ ଚାରିପାଖେ ବହୁ ଇଂରେଜ ଓ ଭାରତୀୟମାନଙ୍କର ସମାବେଶ । ଜଣେ ଇଂରେଜ ମହିଳା ଏକନିଷ୍ଠ ଭାବରେ ଶଙ୍ଖ ଫୁଙ୍କୁଛନ୍ତି, ଜଣେ ଭାରତୀୟ ମହିଳା ଜଗନ୍ନାଥଙ୍କ ମୂର୍ତ୍ତିକୁ ଦୁଇ ହାତରେ ସ୍ପର୍ଶ କରୁଛନ୍ତି । ଭକ୍ତି ଓ ଆନନ୍ଦର କ୍ଷୁଦ୍ର ଆଲୋକ ଚିତ୍ରଟିଏ । ଚିତ୍ର ତଳେ ପ୍ରଦତ୍ତ ସମ୍ବାଦର ଅବିକଳ ଅନୁବାଦ ଏହିପରି :

ଟ୍ରାଫଲ୍‌ଗାର୍‌ରେ ସ୍କୋୟାର୍ ଭଗବାନ୍

କୃଷ୍ଣଙ୍କର ଗୀତ ଓ ନୃତ୍ୟ ।

ବୁଢ଼ାଟି ବେଶ୍ ସନ୍ତୁଷ୍ଟ ମନେହେଉଥିଲା । ଗତକାଲି ସେ ଟ୍ରାଫାଲ୍‌ଗାର୍ ସ୍କୋୟାର୍‌ରେ ପ୍ରଚଣ୍ଡ ଖରାରେ ସେମିତି ଠିଆ ହୋଇଥାଏ । ମୁଣ୍ଡରେ ଦୁଇଟି ପର ଟୋପି (ନୀଳ ଓ ସବୁଜ) ଦେହରେ ମୋଟା କୋଟ୍ ପିନ୍ଧି ସେ 'ପ୍ରସାଦ' ଖାଉଥାଏ ।

ତା' ଚାରିପାଖେ ଠେଲାପେଲା ହେଉଥା'ନ୍ତି ବହୁ ଭାରତୀୟ, ଭଗବାନ୍ କୃଷ୍ଣଙ୍କର ୟୁରୋପୀୟ ଭକ୍ତଗଣ ଏବଂ କିଛି ବୁଝିପାରୁ ନ ଥିବା 'ଟୁରିଷ୍ଟ୍'ମାନେ । ମୁଣ୍ଡ ଉପରେ ପାରାମାନେ ଉଡୁଥାନ୍ତି – ନେଲ୍‌ସନ୍ ସ୍ତମ୍ଭ ପାଖରେ ଧୂପ–ଗନ୍ଧ, ନୃତ୍ୟ ଓ ଭଜନ ସେମାନଙ୍କୁ ବିଚଳିତ କରିଥାଏ । ନବମଥର ପାଇଁ ସମାରୋହରେ ଅନୁଷ୍ଠିତ ହେଉଥାଏ ରଥଯାତ୍ରା । ଭକ୍ତମାନଙ୍କ ଲଣ୍ଡିତ ମସ୍ତକ ସବୁ ସୂର୍ଯ୍ୟକିରଣରେ ଚିକ୍ ଚିକ୍ ଦିଶୁଥାଏ । ସେମାନେ କ୍ଷୁଧାର୍ତ୍ତ ଓ ଆଗ୍ରହୀ ବ୍ୟକ୍ତିମାନଙ୍କୁ ପ୍ରସାଦ ବାଣ୍ଟୁଥା'ନ୍ତି । ଏହି ପ୍ରସାଦ କେତେକ ନିରାମିଷ ଖାଦ୍ୟର ମିଶ୍ରଣ; ଶ୍ରଦ୍ଧା ଓ ଭକ୍ତିର ସହିତ ଏହା ପୂର୍ବରୁ କୃଷ୍ଣଙ୍କୁ ଅର୍ପିତ ହୋଇଥାଏ ।

ଭାରତର ଜଗନ୍ନାଥ ପୁରୀରେ ଅନୁଷ୍ଠିତ ହେଉଥିବା ରଥଯାତ୍ରାର ଏହା ଏକ କ୍ଷୁଦ୍ର ସଂସ୍କରଣ । ଭଗବାନ୍ ବଳରାମ (ଆଧ୍ୟାତ୍ମିକ ଶକ୍ତି ଓ ଆନନ୍ଦର ଉତ୍ସ), ଦେବୀ ସୁଭଦ୍ରା (ସମସ୍ତ ଶୁଭର କାରଣ) ଏବଂ ଭଗବାନ୍ ଜଗନ୍ନାଥ (ସମଗ୍ର ବିଶ୍ୱର ନାଥ) ପ୍ରଭୃତିଙ୍କ ମୂର୍ତ୍ତିସବୁ ଗୋଟିଏ କ୍ଷୁଦ୍ର ରଥରେ ମାର୍ବଲ୍ ଆର୍ଚ୍ଚରୁ ଟ୍ରାଫାଲ୍‌ଗାର୍ ସ୍କୋୟାର୍ ପର୍ଯ୍ୟନ୍ତ ଟଣା ହେଉଥାଏ ।

ଭାରତରେ ପ୍ରକାଣ୍ଡ ରଥମାନଙ୍କରେ ମୂର୍ତ୍ତିମାନଙ୍କୁ ବଡ଼ଦେଉଳରୁ ଗୁଣ୍ଡିଚାଘରକୁ ନିଆଯାଏ । ସେଠାରେ ସେମାନଙ୍କ ରଙ୍ଗବିନ୍ୟାସ କରାଯାଏ ଏବଂ ଗୋଟିଏ ବର୍ଷ ପାଇଁ ସେମାନଙ୍କୁ ବଡ଼ଦେଉଳକୁ ଫେରାଇ ଦିଆଯାଏ । ଯାତ୍ରାଟି ହଜାର ହଜାର ବର୍ଷର ପୁରୁଣା । ପାଶ୍ଚାତ୍ୟ ଦେଶମାନେ 'ଜଗନ୍ନାଥ' ଶବ୍ଦରୁ 'ଜଗର୍‌ନଟ୍' (ଏକ ପ୍ରକାଣ୍ଡ ବିକଟାଳ ଯାନ) ଶବ୍ଦଟି ସୃଷ୍ଟି କରିବାର ବିଚିତ୍ର ଆନନ୍ଦ ଅନୁଭବ କରନ୍ତି ।

ଏ ଦେଶରେ କୃଷ୍ଣ ଭକ୍ତମାନଙ୍କର ସମ୍ପର୍କ ମାଟି ସଙ୍ଗେ ଖୁବ୍ ନିବିଡ଼ । ସେମାନେ International Society for Krishna Consciousnessର ଅନ୍ତର୍ଭୁକ୍ତ ଏବଂ ହାଟ୍‌ଫୋର୍ଡ୍ ସାୟାର୍‌ରେ ଗୋଟିଏ ମଫସଲି ଘର ସେମାନଙ୍କ କାର୍ଯ୍ୟକଳାପର କେନ୍ଦ୍ର । ସେମାନେ ଏକ

ଦାତବ୍ୟ ଅନୁଷ୍ଠାନ ଭାବରେ ସରକାରୀ ସ୍ୱୀକୃତି ଲାଭ କରିଛନ୍ତି । କମଳାରଙ୍ଗର ପୋଷାକ ପିନ୍ଧି 'ହରେକୃଷ୍ଣ' ମନ୍ତ୍ର ବୋଲି ବୋଲି ସେମାନେ ପଟୁଆରରେ ଯିବା ବହୁ ଲୋକ ଜାଣନ୍ତି ।

ଗତକାଲିର ଯାତ୍ରାଟି ସାରା ଅପରାହ୍ନ ଧରି ଲାଗି ରହିଥିଲା । କେତେଜଣ ପୁଲିସ୍ ଏ ଦୃଶ୍ୟକୁ ଆନନ୍ଦରେ ଉପଭୋଗ କରୁଥିଲେ । ସାଧାରଣତଃ ନେଲ୍‌ସନ୍ ସ୍ତମ୍ଭ ନିକଟରେ ଯେଉଁ ଦୃଶ୍ୟ ଦେଖିବାକୁ ମିଳେ, ତାହାଠାରୁ ଏହା ଥିଲା ଭିନ୍ନ । ଯାତ୍ରା ମଝିରେ ବହୁ ପୁଲିସ୍ । National Federation of Self employedର ପ୍ରାୟ ଚାରିଶହ ସଭ୍ୟଙ୍କୁ ଡାଉନିଂ ଷ୍ଟ୍ରିଟ୍‌କୁ ଯିବାରେ ବାଧା ଦେଉଥିଲେ । ଟୁରିଷ୍ଟମାନେ ଆଗ୍ରହରେ ମଧ୍ୟ ଏ ଦୃଶ୍ୟ ଲକ୍ଷ୍ୟ କରୁଥିଲେ ।

ଗତକାଲି ଏହି ଯାତ୍ରା ଉପଭୋଗ କରୁଥିବା କେହି କଲିକତାର ମାୟାପୁରରେ ନିକଟ ଅତୀତରେ ଘଟିଥିବା ଗଣ୍ଡଗୋଳ ସମ୍ପର୍କରେ ଆଲୋଚନା କରିବାକୁ ପ୍ରସ୍ତୁତ ନ ଥିଲେ । ସେଠାରେ Krishna Consciousness ଅନୁଷ୍ଠାନର ପନ୍ଦର ଜଣ ଆମେରିକାନ୍ ସନ୍ନ୍ୟାସୀ ଗୋଟିଏ ଗ୍ରାମରେ ଗୁଳି ଚଳାଇ ପନ୍ଦରଜଣଙ୍କୁ କ୍ଷତବିକ୍ଷତ କରିଥିବା ଅଭିଯୋଗରେ ଗିରଫ ହୋଇଛନ୍ତି ।

ସମ୍ବାଦଟି ଏକନିଷ୍ଠ ଭାବରେ ପଢ଼ିସାରି ମୁଁ କିଛି ସମୟ ଚୁପ୍ ହୋଇ ବସି ରହିଲି । ଗତକାଲି ତେବେ ପୁରୀରେ ରଥଯାତ୍ରା ଅନୁଷ୍ଠିତ ହୋଇଯାଇଛି – ପୁରୀ ମୋର ଜନ୍ମ ସ୍ଥାନ ଓ ସେଇଠାରେ ବର୍ଷ ପରେ ବର୍ଷ ରଥଯାତ୍ରା ଆମ ପାଇଁ କେତେ ଉତ୍ସାହ, ଆନନ୍ଦ ଓ ଉତ୍ତେଜନା ନ ଯୋଗାଇଛି ! କିନ୍ତୁ ଆଜି ଭାରତଠାରୁ ଛଅହଜାର ମାଇଲ୍ ଦୂରରେ ନିଭୃତ କୋଠରିରେ ମୁଁ ବସି ରହିଛି ଓ ଗତକାଲି ଯେ ରଥଯାତ୍ରା ଥିଲା, ସେ ସମ୍ବାଦ ସୁଦ୍ଧା ମୋ ନିକଟରେ ପହଞ୍ଚିବା କଠିନ ହୋଇପଡ଼ିଛି !

ଜୁଲାଇରେ ବିଲାତର ପାଗ ମୋଟାମୋଟି ଉଷ୍ମ ଓ ସୂର୍ଯ୍ୟକିରଣରେ ଉଜ୍ଜ୍ୱଳ । ବୃକ୍ଷସବୁ ହରିତ ଓ ପକ୍ଷିକାକଳୀରେ ଉଚ୍ଛ୍ୱସିତ; କିନ୍ତୁ ଭାରତରେ ସେତେବେଳେ ଆଷାଢ଼ ମାସ– ନିବିଡ଼ ବର୍ଷାକାଳ । ଆକାଶ ମେଘାଚ୍ଛନ୍ନ, ନଦୀ, ପୁଷ୍କରିଣୀ ଜଳପୂର୍ଣ୍ଣ । ଭାରତରେ ରାଧା ଓ କୃଷ୍ଣଙ୍କର ମିଳନ ଋତୁ, କଦମ୍ବ ଫୁଲ ଫୁଟିବାର ଋତୁ, ଜୁଲାଇ । ସୁଦୂର ଅତୀତରୁ ଭାରତର କବି, ଚିତ୍ରକର, ସଙ୍ଗୀତଜ୍ଞମାନଙ୍କୁ ବର୍ଷାକାଳ ଯେପରି ଆମୋଦିତ, ଅନୁପ୍ରାଣିତ କରିଛି, ଆଉ କୌଣସି ଋତୁ ସେଭଳି କରିଛି ବୋଲି ମନେହୁଏ ନାହିଁ ।

ରାଦାର୍‌ଫୋର୍ଡ୍ କଲେଜ୍‌ର ନିଭୃତ ସିନିୟର୍ କମନ୍‌ରୁମ୍‌ରେ ବସି ମୁଁ ଅନୁଭବ କରୁଥିଲି ମୋ ଦେଶ, ଧର୍ମ, ପରମ୍ପରାଠାରୁ ବିଚ୍ଛିନ୍ନ ରହିବାର ଦାରୁଣ ବ୍ୟଥା ।

ଲୋହିତ ଧୂଳିପୂର୍ଣ୍ଣ ବଡ଼ଦାଣ୍ଡରେ ଆଜି ଲକ୍ଷ ଲକ୍ଷ ଦରିଦ୍ର ଅଶିକ୍ଷିତ ମଣିଷଙ୍କର ଯେଉଁ ଶୋଭାଯାତ୍ରା ଚାଲିଥିବ, ତାହାରି ଭିତରେ ନିଜକୁ ବିଲୀନ କରିଦେବାର ଆକାଂକ୍ଷାରେ ମୋ ହୃଦୟ ବ୍ୟାକୁଳ ହୋଇ ଉଠୁଥିଲା । × × ×

ବର୍ଷ ବର୍ଷ ଧରି ନିଜ ଦେଶ, ଭାଷା, ପର୍ବପର୍ବାଣି ଓ ଚଳଣିଠାରୁ ବିଚ୍ଛିନ୍ନ ରହି ଅନେକ ସମୟରେ ବିମର୍ଷ ଅନୁଭବ କରିବା ମୋ ପକ୍ଷରେ ଥିଲା ସ୍ୱାଭାବିକ । ବିଲାତରେ ପ୍ରଥମ ଦଶମାସ ମୁଁ ଏକାକୀ ରହିଥିଲି; ପରେ ଅବଶ୍ୟ ମୋର ସ୍ତ୍ରୀ ଓ ପିଲାମାନେ ମୋ ସଙ୍ଗେ ଯୋଗ ଦେଇଥିଲେ । ଏଇ ଦଶମାସ ମୋ ପାଇଁ ଥିଲା ଏକ ନୂତନ ପରିବେଶରେ ଅଭ୍ୟସ୍ତ ହେବାର କଠିନ ସମୟ । ବିଲାତି ଖାଦ୍ୟ ମୋତେ ଜଣାଗଲା ସ୍ୱାଦହୀନ, ବିଲାତି ଆଦବ କାଇଦା କୃତ୍ରିମ ଓ ପ୍ରାଣଶୂନ୍ୟ । ମାସ ମାସ ଧରି ଓଡ଼ିଆରେ କଥା କହିବା ପାଇଁ ଜଣେ ବନ୍ଧୁ ମିଳିଲେ ନାହିଁ । କେବଳ ଓଡ଼ିଆରେ କଥା କହିବାର ସୁଯୋଗ ମିଳିବ ବୋଲି ଜଣେ ଦୁଇଜଣ ପରିଚିତ ଓଡ଼ିଆ ବନ୍ଧୁଙ୍କୁ ବେଳେବେଳେ ଟେଲିଫୋନ୍ କରୁଥିଲି । ବିଲାତରେ ରହିବାର ଚାରିମାସ ପରେ ପ୍ରଥମଥର ପାଇଁ ଓଡ଼ିଆରେ କିଛି ସମୟପାଇଁ କଥାବାର୍ତ୍ତା ହେବାର ସୁଯୋଗ ମିଳିଥିଲା ଜଣେ ଓଡ଼ିଶାବାସୀ ଖୁବ୍ ଭଲ ଓଡ଼ିଆ କହି ପାରୁ ନ ଥିବା ବଙ୍ଗୀୟ ଭଦ୍ରମହିଳାଙ୍କ ସଙ୍ଗେ । ସେଦିନ ମୋତେ ଅନେକ ଆଶ୍ୱସ୍ତି ଲାଗିଥିଲା; କିନ୍ତୁ ସେଦିନ ମନରେ ପ୍ରଥମ କରି ସନ୍ଦେହ ମଧ ହୋଇଥିଲା – କଥା କହିବା ଅଭ୍ୟାସ ଅଭାବରୁ ମୋ ଓଡ଼ିଆ ସାମାନ୍ୟ ଅସ୍ୱାଭାବିକ ହୋଇଯାଉଛି କି ?

ମୋ ପରିବାର ମୋ ସଙ୍ଗେ ଯୋଗ ଦେବା ପରେ ଓ ବିଲାତରେ ଅନ୍ୟ କେତେଜଣ ଓଡ଼ିଆ ବନ୍ଧୁଙ୍କ ସଙ୍ଗେ ପରିଚୟ ହେବା ପରେ ଓଡ଼ିଆ କହିବାପାଇଁ ମୋତେ ଅବଶ୍ୟ ଅପେକ୍ଷାକୃତ ଅଧିକ ସୁଯୋଗ ମିଳିଲା; କିନ୍ତୁ ମୋଟାମୋଟି ମୁଁ ଓଡ଼ିଆ ଭାଷାଠାରୁ ନିଜକୁ ବିଚ୍ଛିନ୍ନ ଅନୁଭବ କରୁଥିଲି । ବିଲାତରୁ ଫେରିବା ପରେ ପରେ ମୋତେ ସାକ୍ଷାତ୍ କରିବା ପାଇଁ ଆସିଥିବା ମୋର ଜଣେ ପୂର୍ବତନ ଛାତ୍ର ମୋତେ କହିଲେ, 'ଆପଣ ଓଡ଼ିଆ କହିଲା ବେଳେ ମଝିରେ ମଝିରେ ଅଟକି ଯାଉଛନ୍ତି ।' ମୁଁ ଅବଶ୍ୟ ତାଙ୍କ କଥା ହସରେ ଉଡ଼ାଇଦେଲି; କିନ୍ତୁ ହୁଏତ ସେ ଠିକ୍ କହୁଥିଲେ ।

ଅନ୍ତତଃ ମୋର ଦୁଇଟି ପୁଅ ବିଲାତରେ ରହିବା ସମୟରେ ସେମାନଙ୍କ ଓଡ଼ିଆ କିପରି ବିକୃତ ହୋଇ ପଡୁଥିଲା, ତାହା ମୁଁ ଆମୋଦ ସହକାରେ ଲକ୍ଷ୍ୟ କରିଥିଲି । ବିଲାତକୁ ଯିବା ସମୟରେ ସେମାନଙ୍କ ବୟସ ହୋଇଥିଲା ସାତ ଓ ପାଞ୍ଚ । ଅର୍ଥାତ୍ ସେମାନେ ଖୁବ୍ ଭଲଭାବେ ଓଡ଼ିଆ ଶିଖି ସାରିଥିଲେ କିନ୍ତୁ ବିଲାତରେ ରହିବାର ଅଳ୍ପ କେତେ ମାସ ପରେ ସେମାନେ ଓଡ଼ିଆରେ କଥାବାର୍ତ୍ତା କରିବା ପ୍ରାୟ ବନ୍ଦ କରିଦେଲେ । ମୁଁ ଓଡ଼ିଆରେ ପ୍ରଶ୍ନ ପଚାରିଲେ ସେମାନେ ଉତ୍ତର ଦେଲେ ଇଂରାଜୀରେ । ମୋ ସାନପୁଅ କେବେ କେମିତି ଯେଉଁ ଓଡ଼ିଆ କହୁଥିଲା, ତାହାର ନମୁନା ଏହିପରି – 'ମାଆ, ମୁଁ hungry ହେଉଛି'; ମୁଁ ଟିକିଏ walk ନେଉଛି' ଇତ୍ୟାଦି । ମଣିଷ କେଉଁ ପରିସ୍ଥିତିରେ ଓ କିପରି ଭାବରେ ଗୋଟିଏ ଭାଷା ଭୁଲି ଆଉ ଗୋଟିଏ ଭାଷାକୁ ଗ୍ରହଣ କରେ, ତାହା ଅବଶ୍ୟ ମୁଁ ଏଠାରେ ଆଲୋଚନା କରୁ ନାହିଁ; କିନ୍ତୁ ମୋର ପୁଅ ଯେଉଁ ଓଡ଼ିଆ କହୁଥିଲା, ତାହା ଥିଲା ଇଂରାଜୀ ବାକ୍ୟ ସବୁର ଅନୁବାଦ ।

ବିଲାତର ବହୁ ଭାରତୀୟ ଓ ଭାରତ ଉପମହାଦେଶର ବ୍ୟକ୍ତିମାନଙ୍କ ସହିତ ବନ୍ଧୁତା ଅବଶ୍ୟ ମୋର ବିଚ୍ଛିନ୍ନତାବୋଧକୁ ନିଶ୍ଚିତ ଭାବରେ ଲଘୁ କରିଥିଲା; କିନ୍ତୁ ସେମାନଙ୍କ ମଧ୍ୟରୁ ପ୍ରାୟ ସମସ୍ତେ ଥିଲେ ଅଣଓଡ଼ିଆ । ଭାରତରେ ଥିବାଯାଏଁ ଆମେ ସାଧାରଣତଃ ନିଜକୁ ଓଡ଼ିଆ, ବଙ୍ଗାଳୀ, ପଞ୍ଜାବୀ, ହିନ୍ଦୀ ବୋଲି ଭାବୁ, ଭାରତୀୟ ବୋଲି ଭାବୁ ନାହିଁ । ଭାରତ ଏକ ଅତି ବିଶାଳ ଦେଶ । ଏଥିରେ ବହୁ ଧର୍ମ, ଭାଷା, ରୀତିନୀତି ପ୍ରଚଳିତ ଥିବାରୁ ନିଜକୁ ଭାରତୀୟ ବୋଲି ମନେକରିବା ଅନେକ ସମୟରେ ସହଜ ହୁଏ ନାହିଁ; କିନ୍ତୁ ଥରେ ଭାରତ ବାହାରକୁ ଗଲା ପରେ ଆଉ ରହେ ନାହିଁ 'ଓଡ଼ିଆ', 'ବଙ୍ଗାଳୀ ବା ଗୁଜୁରାଟୀ'ର ପରିଚୟ । ଆମେ ସମସ୍ତେ ନିଜକୁ ଭାରତୀୟ ବୋଲି ହିଁ ପରିଚୟ ଦେଉ: କିନ୍ତୁ ନିଜକୁ ଭାରତୀୟ ବୋଲି ପରିଚୟ ଦେବା ଯେତେ ସହଜ, ନିଜକୁ ଭାରତୀୟ ବୋଲି ଅନୁଭବ କରିବା ସେତେ ସହଜ ହୁଏ ନାହିଁ ।

ଦିନେ କ୍ୟାଣ୍ଟର୍‌ବରୀର ବୁଧବାର ହାଟରେ ଗୋଟିଏ ମାଛ ଦୋକାନ ଆଗରେ ଠିଆହୋଇଛି, ଜଣେ ଇଂରେଜ ଭଦ୍ରବ୍ୟକ୍ତି ମୋ ନିକଟକୁ ଲାଗି ଆସି ହସି ହସି କିଛି କହିଲେ । ମୁଁ ବୁଝିପାରିଲି ନାହିଁ । ସେ ବୁଝାଇଦେଲେ, ବୁଝିପାରୁ ନାହାନ୍ତି ? ମୁଁ ଆପଣଙ୍କ ଭାଷା କହୁଛି । 'ମୋ ଭାଷା, ମୁଁ ପଚାରିଲି । 'ହଁ' ସେ କହିଲେ, ଉର୍ଦ୍ଦୁ କହୁଛି ।' ଇଂରେଜୀ ଉଚ୍ଚାରଣ ରୀତିରେ ସେ 'ମଛଲି' ଶବ୍ଦଟି ବାରମ୍ବାର କହୁଥିଲେ । ଉର୍ଦ୍ଦୁ ଗୋଟିଏ ଭାରତୀୟ ଭାଷା । ମୁଁ ଜଣେ ଭାରତୀୟ ହୋଇଥିବାରୁ ତାହା ମୋର ଭାଷା ନୁହେଁ ବୋଲି ମୁଁ ବା କହିବି କିପରି । ତେଣୁ ଭଦ୍ରବ୍ୟକ୍ତିଙ୍କ କଥାରେ ମୁଁ ସମ୍ମତି ଜଣାଇଲି ।

ଠିକ୍ ସେହିପରି ଅନ୍ୟ ବହୁ ମନ୍ତବ୍ୟର ମଧ୍ୟ ମୋତେ ଭାରତୀୟ ଭାବରେ ସମର୍ଥନ କରିବାକୁ ହେଉଥିଲା । ଯେପରି, 'ଆପଣମାନେ ଭଲ ତନ୍ଦୁରୀ (ପଞ୍ଜାବୀମାନେ ତିଆରି କରୁଥିବା ରୁଟି) ତିଆରି କରନ୍ତି ।' 'ଆପଣମାନଙ୍କ କଲିକତା ସହର କି ଅପରିଷ୍କାର ?' 'ତାଜମହଲ ପାଇଁ ଆପଣମାନେ ଯଥାର୍ଥରେ ଗର୍ବ ଅନୁଭବ କରିବା ଉଚିତ ।'

ଜଣେ ଭାରତୀୟ ଭାବରେ ମୁଁ ବା କିପରି କହିପାରନ୍ତି ଯେ 'ତନ୍ଦୁରୀ' ମୋର ଖାଦ୍ୟ ନୁହେଁ, କଲିକତା ମୋର ସହର ନୁହେଁ କିମ୍ବା 'ତାଜମହଲ' ପାଇଁ ମୁଁ ଗର୍ବ ଅନୁଭବ କରିବାର ବିଶେଷ କାରଣ ନାହିଁ ? କେହି ଯଦି ପୁରୀ ବା କୋଣାର୍କ ମନ୍ଦିର, ପିପିଲିର ଚାନ୍ଦୁଆ କିମ୍ବା ପାରଳାଖେମୁଣ୍ଡିର ଶିଙ୍ଗ କାମକୁ ପ୍ରଶଂସା କରନ୍ତା, ତା'ହେଲେ ହୁଏତ ମୁଁ ଯଥାର୍ଥରେ ଉଲ୍ଲସିତ ହୁଅନ୍ତି; କିନ୍ତୁ ସେଭଳି କେହି କରନ୍ତି ନାହିଁ । 'ଭାରତ' କହିଲେ ବିଲାତରେ ମୋଟାମୋଟି ଯେଉଁ ଧାରଣା ସୃଷ୍ଟି ହୋଇଛି ବା ଲେଖକ, ସାମ୍ବାଦିକ ଓ ଭାରତ ସରକାର ଯେଉଁ ଧାରଣାମାନ ସୃଷ୍ଟି କରିଛନ୍ତି, ତାହା ହେଉଛି 'ଦିଲ୍ଲୀ', 'କଲିକତା' ଓ 'ପଞ୍ଜାବ' । ନିଜ ଧର୍ମନିରପେକ୍ଷତାର ପ୍ରମାଣ ଦେବାକୁ ଯାଇ ବହୁ ସମୟରେ ମୋଗଲ ଓ ମୁସଲମାନଙ୍କ କୀର୍ତ୍ତିସବୁକୁ ଭାରତର ଅତୀତ ଗୌରବ ବୋଲି ପ୍ରଚାର କରାଯାଏ । ତେଣୁ ତାଜମହଲ ସମ୍ପର୍କରେ କୁହାଯାଏ, କୋଣାର୍କ ସମ୍ପର୍କରେ ନୁହେଁ, ଆକବରଙ୍କ ସମ୍ପର୍କରେ

ପ୍ରଚାର କରାଯାଏ, ଅଶୋକଙ୍କ ସମ୍ପର୍କରେ ନୁହେଁ । ମୋ ଭଳି ବହୁ ଭାରତୀୟ ତେଣୁ ବିଲାତ ଭଳି ଦେଶରେ 'ଭାରତୀୟତା' କହିଲେ ଯାହା ବୁଝାଏ, ସେଥିରେ ନିଜ ରାଜ୍ୟର ସଂସ୍କୃତିର କୌଣସି ପ୍ରତିଫଳନ ଦେଖନ୍ତି ନାହିଁ । ପଞ୍ଜାବୀମାନଙ୍କ ଖାଦ୍ୟ, ବଙ୍ଗାଳୀମାନଙ୍କ ସହର ଓ ମୋଗଲମାନଙ୍କ କୀର୍ତ୍ତି ନିଶ୍ଚିତ ଭାବରେ ଭାରତୀୟ, କିନ୍ତୁ 'ଭାରତୀୟତା' କହିଲେ ଅଧିକ ପ୍ରତିନିଧିମୂଳକ, ଅଧିକ ବ୍ୟାପକ ଏକ ଚିତ୍ରକଳ୍ପକୁ ବୁଝାଏ । ବିଲାତରେ କିମ୍ବା ପାଶ୍ଚାତ୍ୟ ଜଗତରେ ଭାରତୀୟ କିମ୍ବା ଭାରତୀୟତା ସମ୍ପର୍କରେ ଏଯାବତ୍ କେତେକ ଭ୍ରମାତ୍ମକ ଏକଦେଶଦର୍ଶୀ ଦୃଢ଼ ଧାରଣା ରହିଛି । ସେଭଳି ଧାରଣା ସବୁକୁ ପରିବର୍ତ୍ତନ କରିବା ଏକ କଠିନ ଓ ଜଟିଳ ସମସ୍ୟା ହୋଇଥିବାରୁ ବହୁ ଭାରତୀୟ ପ୍ରଚଳିତ ଧାରଣା ସବୁକୁ ମାନିନେବା ସହଜ ମନେ କରନ୍ତି । ସେମାନଙ୍କ ମନରେ କିନ୍ତୁ ବିଚ୍ଛିନ୍ନତାବୋଧର ବ୍ୟଥା ରହିଯାଏ । ସେମାନେ ଅନୁଭବ କରନ୍ତି ଯେ ବିଦେଶୀ ବନ୍ଧୁମାନେ ସେମାନଙ୍କୁ ଯଥାର୍ଥରେ ଚିହ୍ନିପାରୁ ନାହାନ୍ତି ବା ବୁଝିପାରୁ ନାହାନ୍ତି ।

ଭାରତୀୟମାନେ ଭାରତୀୟ ଭାବରେ ପରସ୍ପରର ନିକଟବର୍ତ୍ତୀ ହୋଇ ଆସିଲେ ମଧ୍ୟ ନିଜ ନିଜର ପ୍ରଦେଶ, ଭାଷା ଓ ଧର୍ମର ପାର୍ଥକ୍ୟ ସମ୍ପର୍କରେ ସଚେତନ ରହିବାକୁ ଭୁଲନ୍ତି ନାହିଁ । କାଶ୍ମୀରର ଜଣେ ଭଦ୍ରବ୍ୟକ୍ତିଙ୍କ ସହିତ ଗୋଟିଏ ଡିନର୍ ପାର୍ଟିରେ ମୋର ପରିଚୟ ହୋଇଥିଲା । 'ମୁଁ ଭାରତରୁ ଆସିଛି' କହି ତାଙ୍କ ସହିତ କର ମର୍ଦ୍ଦନ କରିବାକୁ ଆଗେଇଗଲି । ସେ ଏଥିରେ ବିଶେଷ ଉତ୍ସାହିତ ନ ହୋଇ ମୋ ସହିତ କରମର୍ଦ୍ଦନ କରୁ କରୁ କହିଲେ, 'ମୁଁ ଆସିଛି କାଶ୍ମୀରରୁ ।' ତାଙ୍କ କଥାରେ ସେ ସୂଚନା ଦେଉଥିଲେ ଯେ କାଶ୍ମୀର ଭାରତଠାରୁ ଭିନ୍ନ । ଥରେ ମୋର ବଙ୍ଗୀୟ ବନ୍ଧୁ ଅମିତାଭ ସିହ୍ନା ମୋତେ କଥାଛଳରେ କହିଲା, 'ତୁମେ ଜାଣ ଭାରତର ଜାତୀୟ ସଙ୍ଗୀତ ବଙ୍ଗଳା ଭାଷାରେ ଲିଖିତ । ବଙ୍ଗଳା ସାହିତ୍ୟ ସବୁଠାରୁ ସମୃଦ୍ଧ । ଭାରତରେ ବାଧ୍ୟତାମୂଳକ ଭାବରେ ସମସ୍ତଙ୍କୁ ବଙ୍ଗଳା ପଢ଼ାଯିବା ଉଚିତ ।' ମୋର ବିହାରୀ ବନ୍ଧୁ ଯୋଗେନ୍ଦ୍ର ସିଂ ଏକାଧିକବାର କହିଛନ୍ତି, 'ଭାରତର ଯାହା ଗୌରବମୟ ଅତୀତ ବୋଲି କୁହାଯାଉଛି, ତାହା ବାସ୍ତବିକ୍ ବିହାରର ଅତୀତ । ମଗଧ ସାମ୍ରାଜ୍ୟର ଗୌରବରେ ଭାରତ ଗୌରବ ଅନୁଭବ କରେ ।'

ମୋଟ ଉପରେ 'ଭାରତୀୟ' କହିଲେ ବିଦେଶୀମାନେ ଯାହା ବୁଝନ୍ତି ବା ଭାରତୀୟମାନେ ଯାହା ମନେକରନ୍ତି, କୌଣସିଟି ସମ୍ପୂର୍ଣ୍ଣ ଠିକ୍ ନୁହେଁ । ବିଦେଶୀମାନେ ଭାରତ କହିଲେ ଦିଲ୍ଲୀ, ତାଜମହଲ ବା ଜର୍ଦ୍ଦକୁ ବୁଝନ୍ତି; ଭାରତୀୟମାନେ ନିଜ ପ୍ରଦେଶ ବା ଭାଷା କଥା ହିଁ ଭାବନ୍ତି । ତେଣୁ ବିଲାତରେ ଭାରତୀୟମାନଙ୍କ ମଧ୍ୟରେ ମୁଁ ଅନୁଭବ କରୁଥିଲି ମୁଁ ଜଣେ ଓଡ଼ିଆ, ଇଂରେଜମାନଙ୍କ ମଧ୍ୟରେ ନିଜକୁ ହିନ୍ଦୀ ବା ପଞ୍ଜାବୀ ବା ବଙ୍ଗାଳୀମାନଙ୍କ ମାଧ୍ୟମରେ ଚିହ୍ନାଉଥିଲି । ଏହି ପରିସ୍ଥିତିରେ ଅନେକ ସମୟରେ ବିଚ୍ଛିନ୍ନତାବୋଧ ଓ ନିଃସଙ୍ଗତା ଅନୁଭବ କରିବା ଥିଲା ଏକାନ୍ତ ସ୍ୱାଭାବିକ । × × ×

ସେଥିପାଇଁ ବିଲାତରେ ଓଡ଼ିଆ ବନ୍ଧୁଟିଏ ଜୁଟିଗଲେ ସେଦିନଟି ମୋ ପାଇଁ ହୋଇଉଠୁଥିଲା ସ୍ମରଣୀୟ । ବିଲାତରେ ଓଡ଼ିଆଙ୍କ ସଂଖ୍ୟା ଖୁବ୍ କମ୍, ଆଙ୍ଗୁଠିରେ ଗଣି ହେବ । କ୍ୟାଣ୍ଟର୍‌ବରୀର ଖୁବ୍ ନିକଟରେ ଷ୍ଟରି ଗାଆଁରେ ଜଣେ ଓଡ଼ିଆ ଡାକ୍ତର ନୀଳକଣ୍ଠବାବୁ ସପରିବାର ରହୁଥିଲେ । National Health Serviceରେ ସେ ଚାକିରି କରୁଥିଲେ । କେତେଥର ତାଙ୍କ ଗାଡ଼ିରେ ମୁଁ ଯାଇଛି ଆପଲ୍ କିଣିବାକୁ ଆପଲ୍ ବଗିଚାକୁ । ଆପଲ୍ ବଗିଚାରେ ନିଜେ ବାଛି ବାଛି ଆପଲ୍ ତୋଳି ଆଣିବାର ବ୍ୟବସ୍ଥା ଥାଏ । ଆପଲ୍ ତୋଳିସାରି ଓଜନ କରି ପଇସା ଦେଇଦେବାକୁ ହୁଏ । ଆଉ ଜଣେ ଓଡ଼ିଆ ଡାକ୍ତର ବ୍ରଜେନ୍ଦ୍ର ମିଶ୍ର ରହୁଥାନ୍ତି ସସେକ୍‌ସ୍‌ରେ କ୍ୟାଣ୍ଟର୍‌ବରୀଠାରୁ ବେଶ୍ ଦୂରରେ । ବ୍ରଜ ମୋର ସାନଭାଇ ଭଳି । ହଠାତ୍ କେତେବେଳେ ଟେଲିଫୋନ୍ ବାଜି ଉଠେ । ବ୍ରଜର ସ୍ୱର – 'ମୋ ପାଇଁ ଭାତ, ଡାଲି ଓ ଆଳୁଭର୍ତ୍ତା କରିଥିବ । ମୁଁ ସନ୍ଧ୍ୟାରେ ପହଞ୍ଚୁଛି ।' ବ୍ରଜ ଘରେ ପିପିଲିର ଚାନ୍ଦୁଆ ଟାଣିଥାଏ, ଭଲ ଭଲ ଓଡ଼ିଆ ଗୀତ ବଜାଏ । ତା' ଘରକୁ ଗଲେ ସେ ଟେପ୍ କରିଥିବା ବାଳକୃଷ୍ଣ ଦାସଙ୍କ ଗୀତ ଶୁଣାଏ । ପ୍ରଦୀପ୍ତ ଲଣ୍ଡନ୍‌ରେ ରେଭିନ୍ୟୁ ଡିପାର୍ଟ୍‌ମେଣ୍ଟରେ କାମ କରେ ଓ ଲ' ପଢ଼େ । ତା'ର ବାପା, ମାଆ, ଭାଇ ବ୍ରିଷ୍ଟଲ୍‌ରେ ରହନ୍ତି । ଆଦବକାଇଦା ଓ ରୁଚିରେ ସେ ଅନେକାଂଶରେ ବ୍ରିଟିଶ୍ ହୋଇଗଲାଣି । ଅଳ୍ପ ଅଳ୍ପ ଦାଢ଼ି ରଖିଛି – ବିପ୍ଳବୀ ପରି ଦିଶେ । ତା'ର ଇଚ୍ଛା ସେ ଓଡ଼ିଶାକୁ ଆସି ବି. ବି. ସି.ର ଟେଲିଭିଜନ୍ ପ୍ରୋଗ୍ରାମ ପାଇଁ କେତୋଟି ଛବି ଉଠାନ୍ତା । ଡକ୍ଟର ପାଣିଗ୍ରାହୀ କ୍ୟାଣ୍ଟର୍‌ବରୀ ହସ୍‌ପିଟାଲରେ କାର୍ଯ୍ୟ କରନ୍ତି । ତାଙ୍କର ସ୍ତ୍ରୀ ବି ସେଠାରେ ନର୍ସ୍ କାମ କରନ୍ତି । ତାଙ୍କ ସ୍ତ୍ରୀଙ୍କ ମାତୃଭାଷା ଗୁଜୁରାଟୀ, ସେ ଜନ୍ମ ହୋଇଛନ୍ତି ଇଂଲାଣ୍ଡରେ । ଡକ୍ଟର ପାଣିଗ୍ରାହୀଙ୍କୁ ଇଂଲାଣ୍ଡ ଆଉ ଭଲ ଲାଗୁ ନାହିଁ, ସେ ଚାହୁଁଛନ୍ତି ଫେରିଆସିବେ ଓଡ଼ିଶା; କିନ୍ତୁ ଶ୍ରୀମତୀ ପାଣିଗ୍ରାହୀ ଏଯାଏଁ ନିଶ୍ଚିତ ନୁହନ୍ତି – ସେ ଓଡ଼ିଶାରେ ବା ଭାରତରେ ଚଳିପାରିବେ କି ନାହିଁ । ଭାରତରେ ନର୍ସ୍‌ମାନଙ୍କ ଦରମା କିହାତି କମ୍, ସମାଜରେ ସେମାନଙ୍କ ସମ୍ମାନ ନାହିଁ । କାମ ନ କଲେ ସେ ବା କରିବେ କ'ଣ ? ଅନ୍ତତଃ ସନ୍ଧ୍ୟା କଟାଇବାକୁ ଘରେ ତ ଟେଲିଭିଜନ୍‌ଟିଏ ବି ନ ଥିବ !

ୱାପିଂରେ ରହୁଥା'ନ୍ତି ପ୍ରସିଦ୍ଧ ଶିଳ୍ପୀ, ସ୍ଥପତି ଓ ଲେଖକ ଶ୍ରୀ ପ୍ରଫୁଲ୍ଲ ମହାନ୍ତି । ୱାପିଂ ଲଣ୍ଡନ୍‌ର ଏକ ପୁରୁଣା ଓ ମଳିନ ଅଞ୍ଚଳ । ସେଠାରେ ପନ୍ଦରବର୍ଷ ହେଲା ଗୋଟିଏ କାଉନ୍‌ସିଲ୍ ଘରେ ରହୁଥା'ନ୍ତି ସେ । ଅତି ସାଧାସିଧା, ଅମାୟିକ ଭଦ୍ରବ୍ୟକ୍ତି, ଅବିବାହିତ । ବମ୍ବେର ଜେ. ଜେ. ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଆର୍‌କିଟେକ୍‌ଚର୍‌ରେ ଶିକ୍ଷା ଲାଭ ପରେ ଲିଡ୍‌ସ୍ ଯାଇଥିଲେ ଡିପ୍ଲୋମା କରିବାକୁ । ଡିପ୍ଲୋମା ପରେ ଲଣ୍ଡନ୍‌ରେ ଚାକିରି କରି ରହିଗଲେ । କିଛି ବର୍ଷ ପରେ ଚାକିରି ଛାଡ଼ିଦେଲେ । ପେସା ଚିତ୍ର ଆଙ୍କିବା ଓ ଲେଖିବା । ପୃଥିବୀର ବହୁ ଦେଶରେ ସେ ଚିତ୍ର ପ୍ରଦର୍ଶନୀମାନ କରିଛନ୍ତି । ଇଉନେସ୍କୋଦ୍ୱାରା ଅନୁଷ୍ଠିତ ଗୋଟିଏ

ପ୍ରତିଯୋଗିତାରେ ତାଙ୍କର ଚିତ୍ର ଥରେ ପ୍ରଥମ ବିବେଚିତ ହୋଇଥିଲା । ରାଦାର୍‌ଫୋର୍ଡ଼୍ କଲେଜ୍ ସିନିୟର୍ କମନ୍‌ରୁମ୍‌ରେ ତାଙ୍କର ଚିତ୍ରଟିଏ ଶୋଭାପାଉଛି । ପ୍ରଫୁଲ୍ଲ ମହାନ୍ତିଙ୍କ ଲିଖିତ My Village My Life ଲଣ୍ଡନ୍‌ରୁ ଓ ନିୟୁୟର୍କ୍‌ରୁ ପ୍ରକାଶିତ ହୋଇଛି ଓ ଜାପାନୀ, ନରୱେଜିୟାନ୍ ପ୍ରଭୃତି ଭାଷାରେ ଅନୂଦିତ ହୋଇଛି । ଇଂଲାଣ୍ଡରେ ସେ ଯେଭଳି ପ୍ରତିଷ୍ଠା ଲାଭ କରିଛନ୍ତି, ଆଉ କୌଣସି ଓଡ଼ିଆ ସେଭଳି ପାଇପାରି ନାହାନ୍ତି । କେତୋଟି ଓଡ଼ିଆ ଗାଉଁଲି ଗପର ମଧ୍ୟ ଏକ ସଂକଳନ ସେ ଲଣ୍ଡନ୍‌ରୁ ପ୍ରକାଶ କରିଛନ୍ତି । ନିଜ ବହିର ଛବିସବୁ ସେ ନିଜେ ଆଙ୍କନ୍ତି । ତାଙ୍କର ଲେଖା ଓ ଚିତ୍ର ଉଭୟ ଚମତ୍କାର । ତାଙ୍କ ସହିତ ୱାପିଂରେ ଓ ପରେ ଲଣ୍ଡନ୍‌ରେ ମୁଁ ବହୁ ସମୟ କଟାଇଛି । ତାଙ୍କ ଘର ସପ ମସିଣା, ଓଡ଼ିଶାର ପଥର ମୂର୍ତ୍ତି, କଣ୍ଢେଇ, ଅସଂଖ୍ୟ ଚିତ୍ର ଓ ତୂଳୀରେ ପୂର୍ଣ୍ଣ । କଳାର ଦୁନିଆ ଭିତରେ ସେ ବୁଡ଼ିରହିଥା'ନ୍ତି । କଳା ହିଁ ତାଙ୍କର ଜୀବନ, ପରିବାର, ଧର୍ମ – ସବୁ କିଛି ।

ଲଣ୍ଡନ୍ ଗଲେ ଅଧିକାଂଶ ସମୟରେ ମୁଁ ରହେ Indian Students' Hostelରେ । ଏଠାରେ ରହିଲେ ଖର୍ଚ୍ଚ କମ୍ ପଡ଼େ; କିନ୍ତୁ ହଷ୍ଟେଲ୍‌ଟି ନିହାତି ଅପରିଷ୍କାର; ହଷ୍ଟେଲ୍‌ର ତତ୍ତ୍ୱାବଧାରକ ଓ ଅନ୍ୟାନ୍ୟ କର୍ମଚାରୀଙ୍କ ବ୍ୟବହାର ରୁକ୍ଷ ଓ ଶାଳୀନତାହୀନ । ଭାରତୀୟ ଅନୁଷ୍ଠାନମାନଙ୍କର ଅବସ୍ଥା ଭାରତରେ ଯାହା, ବିଦେଶରେ ତା'ଠାରୁ ବିଶେଷ ଭିନ୍ନ ନୁହେଁ । ସେଇ ହଷ୍ଟେଲ୍‌ରେ ଜଣେ ଦି'ଜଣ ଓଡ଼ିଆ ଛାତ୍ର ରହୁଥାନ୍ତି ।

ଜାମ୍‌ସେଦପୁରରୁ ଆସିଥାନ୍ତି ଅରବିନ୍ଦ ତ୍ରିପାଠୀ । ବିଜ୍ଞାନରେ ଏମ୍.ଏସ୍.ସି. ପଢୁଥାନ୍ତି ଲଣ୍ଡନ୍ ବିଶ୍ୱବିଦ୍ୟାଳୟରେ । ଓଡ଼ିଶା ସହିତ ତାଙ୍କର ସମ୍ପର୍କ ବିଶେଷ ନାହିଁ । ତାଙ୍କର ଅନ୍ତରଙ୍ଗ ବନ୍ଧୁମାନଙ୍କ ସଙ୍ଗେ ସେ ହିନ୍ଦୀଭାଷୀଙ୍କ ଭଳି ହିନ୍ଦୀ କହୁଥାନ୍ତି; କିନ୍ତୁ ତାଙ୍କ ସଙ୍ଗେ ପରିଚୟ ହେବା ପରେ ମୁଁ ତାଙ୍କ ଓଡ଼ିଆପ୍ରୀତିର ଯଥେଷ୍ଟ ପ୍ରମାଣ ପାଇଛି । ଅମରେନ୍ଦ୍ର ପରିଡ଼ା ବାର-ଆଟ୍-ଲ'ର ଛାତ୍ର । ଟେପ୍‌ରେ ଓଡ଼ିଆ ସିନେମା ଗୀତ ବଜାଏ । ଭାରତ ଆସିଥିବା ସମୟରେ ଓଡ଼ିଶାରୁ ଗୁଣ୍ଡଗୁଆ କିଣି ନେଇଥିଲା । ତା' ରୁମ୍‌ରେ ବସି ଆମେ ଗୁଣ୍ଡଗୁଆ ପାଟିରେ ପକାଉ, ଝରକା କାଚ ଦେଇ କୋଳାହଳମୟ ଲଣ୍ଡନ୍ ରାସ୍ତାକୁ ଲକ୍ଷ୍ୟ କରୁ ଓ ଓଡ଼ିଶା ସମ୍ପର୍କରେ ଆଲୋଚନା କରୁ ଢେଙ୍କାନାଳଠାରୁ ଡିଙ୍କିଶାଳଯାଏଁ, ଯାହା ମନକୁ ଆସେ । × × ×

ରାଦାର୍‌ଫୋର୍ଡ଼୍ କଲେଜ୍‌ର ଇତିହାସ ଅଧ୍ୟାପକ ଆଣ୍ଟୋନୀ କପ୍‌ଲି ଓ ନୃତତ୍ତ୍ୱର ଛାତ୍ର ମିଃ ମଲ୍ଲୋ ଓଡ଼ିଶା ବିଶେଷତଃ ଜଗନ୍ନାଥଙ୍କ ସମ୍ପର୍କରେ ବେଶ୍ ଆଗ୍ରହୀ ଥିଲେ । ଅଧ୍ୟାପକ କପ୍‌ଲୀ ଏକାଧିକବାର ଭାରତକୁ ଆସିଛନ୍ତି, ଓଡ଼ିଶାକୁ ଆସିବା ତାଙ୍କର ଇଚ୍ଛା, କିନ୍ତୁ ଏଯାଏଁ ଆସିପାରି ନାହାନ୍ତି । ରାଜଗୋପାଳାଚାରୀଙ୍କର ଗୋଟିଏ ଜୀବନୀ ସେ ଲେଖିଛନ୍ତି । ବିହାରର ଆଦିବାସୀମାନଙ୍କ ସମ୍ପର୍କରେ ଗବେଷଣା କରିବାକୁ ଗୋଟିଏ ବର୍ଷ ରାଞ୍ଚିରେ ରହିଥିଲେ ମିଃ ମଲ୍ଲୋ । ସେହି ଅବସରରେ ସେ ପୁରୀ ଆସିଥିଲେ ଏବଂ ଜଗନ୍ନାଥଙ୍କ ସମ୍ପର୍କରେ

କିଛି ତଥ୍ୟ ସଂଗ୍ରହ କରିଥିଲେ । ଜଗନ୍ନାଥଙ୍କ ସମ୍ପର୍କରେ ସେ ଗୋଟିଏ ପ୍ରବନ୍ଧ ମଧ୍ୟ ଲେଖିଛନ୍ତି ଓ ସେ ପ୍ରବନ୍ଧରେ ଦର୍ଶାଇଛନ୍ତି ଯେ ଜଗନ୍ନାଥ ତତ୍ତ୍ୱ ବସ୍ତୁତଃ ସବୁ ଧର୍ମର ଏକ ସମନ୍ୱୟ । ଆମେ ଭାରତୀୟ ଓ ଓଡ଼ିଆମାନେ ଅବଶ୍ୟ ଜଗନ୍ନାଥଙ୍କ ସମ୍ପର୍କରେ ତାହାହିଁ କହିଥାଉ; କିନ୍ତୁ ଜଣେ ଆମେରିକାନ୍ ଖ୍ରୀଷ୍ଟିଆନ୍ ଏଭଳି କହିବାରେ କିଛି ଗୁରୁତ୍ୱ ଅଛି ।

ଉଭୟ କପ୍‌ଲୀ ଓ ମଲ୍ଲୋଙ୍କ ସଙ୍ଗେ ମୋର ବନ୍ଧୁତା ହୋଇଥିଲା । ଉଭୟେ ଭାରତୀୟ ଖାଦ୍ୟକୁ ଭଲ ପାଉଥିଲୁ ଏବଂ ସେଥିପାଇଁ ଆମେ କେତେଥର କ୍ୟାଣ୍ଟର୍‌ବରୀର ଭାରତୀୟ ହୋଟେଲ୍‌ରେ ଖାଇବାକୁ ଯାଇଥିଲୁ । ମଲ୍ଲୋ ଗୋଟିଏ ଦୁଇଟି ଓଡ଼ିଆ ବାକ୍ୟ ମଧ୍ୟ କିପରି କେଜାଣି ଶିଖିଯାଇଥିଲେ । ପ୍ରଥମେ ଯେତେବେଳେ ତାଙ୍କର ମୋ ସହିତ ପରିଚୟ ହେଲା, ସେ ତତ୍‌କ୍ଷଣାତ୍ ତାଙ୍କ ଓଡ଼ିଆ ଜ୍ଞାନର ପ୍ରମାଣ ଦେବାକୁ ମୋତେ କହିଦେଲେ, 'ଦୁଧ ଖାଅ । ପାଣି ପିଅ ।'

The Guardian ପତ୍ରିକାରେ ରଥଯାତ୍ରା ସମ୍ପର୍କରେ ସମ୍ବାଦଟି ପଢ଼ିସାରିବା ପରେ କପ୍‌ଲି ଓ ମଲ୍ଲୋଙ୍କୁ ଦିନେ ସନ୍ଧ୍ୟାରେ ଆମ ଘରକୁ ନିମନ୍ତ୍ରଣ କରିଥିଲି ଡିନର୍ ପାଇଁ । ସେଦିନ ପୁରୀରୁ ସଙ୍ଗରେ ନେଇଥିବା ଜଗନ୍ନାଥ–ବଳଭଦ୍ର –ସୁଭଦ୍ରାଙ୍କ ଚିତ୍ରଟିଏ ଆମ ଟେବୁଲ୍ ଉପରେ ସଜାଇ ରଖିଥିଲୁ । ସନ୍ଧ୍ୟାଟି ମୋଟାମୋଟି ଜଗନ୍ନାଥ, ରଥଯାତ୍ରା ଓ ଓଡ଼ିଶାର ମନ୍ଦିର ସମ୍ପର୍କୀୟ ଆଲୋଚନାରେ କଟିଲା । ମୁଁ ବେଶ୍ ଉତ୍ସାହିତ ଓ ପ୍ରଗଳ୍ଭ ହୋଇପଡ଼ିଥାଏ । ଅନୁଭବ କରୁଥାଏ – ମୁଁ ଯେପରି ଫେରିଆସିଛି ଓଡ଼ିଶାକୁ । ନିଜ ଦେଶ , ଧର୍ମ, ପରମ୍ପରାରୁ ବିଚ୍ଛିନ୍ନ ରହିବାର ବ୍ୟଥା ହୃଦୟକୁ ସ୍ପର୍ଶ କରୁ ନ ଥାଏ ।

(୧୯୭୭–୮୧)



## ସୂଚୀ

# ଦିଶ୍ ଇଜ୍ ଲଣ୍ଡନ୍

## ଶରତର ମେଘରୁ ଅକ୍ଟୋବରର କୁହୁଡ଼ି

ଏଥର ଭାରତ ଛାଡ଼ିଲା ବେଳେ ବର୍ଷା ଓ ଶରତ ଋତୁର ସନ୍ଧିକ୍ଷଣ – ଆକାଶରେ ଉଜ୍ଜ୍ୱଳ ରଙ୍ଗର ମେଘମାନଙ୍କ ସମାରୋହ; ପ୍ରଖର ସୂର୍ଯ୍ୟ କିରଣ ସାଙ୍ଗକୁ ଅସରାଏ ଲେଖାଏଁ ବର୍ଷା । ବୃକ୍ଷମାନେ ପତ୍ରାକୀର୍ଣ୍ଣ; ଶସ୍ୟ କ୍ଷେତ୍ର ସବୁଜ; ନଦୀସବୁ ବନ୍ୟା ଜଳରେ ପରିପୂର୍ଣ୍ଣ ଓ ଅସ୍ଥିର ।

ବ୍ୟୋମଯାନରେ ଭୁବନେଶ୍ୱରରୁ କଲିକତା ଯାତ୍ରା–ସମୟ ଘଣ୍ଟାକରୁ କମ୍ । ମୋ ଦକ୍ଷିଣ ଦିଗରେ ସରକାରୀ ଖର୍ଚ୍ଚରେ ବ୍ୟୋମଯାନ ଯାତ୍ରାରେ ଅଭ୍ୟସ୍ତ କୌଣସି ପଦସ୍ଥ ଅଫିସର ଇଂରାଜୀ ଖବରକାଗଜ ପୃଷ୍ଠାରେ ମୁଣ୍ଡମାଡ଼ି ବସି ରହିଥା'ନ୍ତି । ବାମ ଦିଗରେ ସିଙ୍ଗାପୁର ଅଭିମୁଖେ ବାହାରିଥିବା ଜିନ୍ସ ଓ ଗାଢ଼ରଙ୍ଗର ବ୍ୟାନିୟନ୍ ପିନ୍ଧିଥିବା ଚାଇନିଜ୍ ଯୁବକ ସିଗାରେଟ୍ ପରେ ସିଗାରେଟ୍ ଶୋଷି ଚାଲିଥାଏ – ବ୍ୟୋମଯାନ ଯାତ୍ରାର ବିରକ୍ତିରୁ ରିହାତି ପାଇବାପାଇଁ ହୁଏତ । ବ୍ୟୋମଯାନର କ୍ଷୁଦ୍ର କାଚ ଝରକା ସୂଚାଇ ଦେଉଥାଏ – ସାରା ଆକାଶ ଶରତର ମେଘମାନଙ୍କ ବର୍ଣ୍ଣାଢ଼୍ୟ ମହୋତ୍ସବ । ଭାରତର ଜଳ, ସ୍ଥଳ, ନଭ – ସର୍ବତ୍ର ବର୍ଣ୍ଣ ଓ ସୌନ୍ଦର୍ଯ୍ୟର ଅପୂର୍ବ ଉଚ୍ଛ୍ୱାସ । ସମଗ୍ର ବିଶ୍ୱରେ ତାହାର ପଟାନ୍ତର କାହିଁ ?

ମ୍ୟାଜିକ୍ ଭଳି ବଦଳି ଗଲା ପୃଥିବୀ ଚେହେରା – ଶରତର ମେଘ, ବର୍ଷାର ବାରିଧାରା, ଉଜ୍ଜ୍ୱଳ ସୂର୍ଯ୍ୟ କିରଣ ପରିବର୍ତ୍ତେ ଦିନ ପରେ ଦିନ ଅନ୍ଧାରିଆ କୁହୁଡ଼ିଆ ପାଗ । ସକାଳ, ମଧ୍ୟାହ୍ନ, ସନ୍ଧ୍ୟା – ରିଷ୍ଟୱାଚ୍ ହିଁ ଚିହ୍ନାଇ ଦିଏ; ସୂର୍ଯ୍ୟ କିରଣରେ ସମୟର ସୂଚନା କେବଳ ଗ୍ରୀଷ୍ମକାଳୀନ ଜଳବାୟୁ ପାଇଁ !

ଲଣ୍ଡନ୍‌ରେ ପହଞ୍ଚି ହିଥ୍ରୋ ଏୟାରପୋର୍ଟରୁ ଆସିଲି ସସେକ୍ସସ୍କ୍ୱିଟ୍ ଆପାତତଃ ଏଇଠାରେ ରହିବି ପ୍ରାୟ ବର୍ଷଟିଏ । ଲଣ୍ଡନ୍‌ର କେନ୍ଦ୍ରସ୍ଥଳରେ ଏକାନ୍ତ ନୀରବ ଅଞ୍ଚଳଟିରେ ଅବସ୍ଥିତ ଫ୍ଲାଟ୍‌ଟି । ଫ୍ଲାଟ୍ ପଛରେ ଠିକ୍ ଝରକାକୁ ଲାଗି ଏକ ପ୍ରକାଣ୍ଡ ପ୍ଲେନ୍ ବୃକ୍ଷ, କେବେ କିପରି ନୀଳରଙ୍ଗର କ୍ଷୁଦ୍ର ପକ୍ଷୀ ଦୁଇଟି ଡାଳରୁ ଡାଳ ଉଡ଼ିବୁଲୁଥିବାର ଦୃଶ୍ୟ ।

ଏଥର ଘର ଛାଡ଼ି ଆସିଲାବେଳେ ଆମ ଉଦ୍ୟାନରେ ପ୍ରଥମ ଥର ପାଇଁ ପଡ଼ିଥାଏ କଦଳୀ ଭଣ୍ଡାଟିଏ; କଖାରୁ ଡଙ୍କରେ କଖାରୁଟି ନାଲି ପଡ଼ିଆସୁଥାଏ; ହଳଦୀବସନ୍ତ, କୁମ୍ଭାଟୁଆ, ବୁଲ୍‌ବୁଲ୍, ବାରମାସୀ ଆମ୍ବ, ଲଙ୍କାଆମ୍ବ ଡାଳରେ ଗୀତ ଗାଇ ଚାଲିଥା'ନ୍ତି ଅହରହ । ଲଣ୍ଡନ୍‌ର ବିମର୍ଷ, କୋହଲା ଓ କୁହୁଡ଼ିଆ ପାଗରେ ଭାରତର ବର୍ଷା ଓ ଶରତ ଋତୁର ଶବ୍ଦ ଓ ଦୃଶ୍ୟମାନେ ହିଁ ସ୍ମରଣ ହେଉଛନ୍ତି ସବୁଠାରୁ ବେଶୀ ।



# ପାଟ୍ରିସିଆଙ୍କ ପାର୍ଟି

ଇଂଲାଣ୍ଡରେ ବେଶ୍ କିଛି ବର୍ଷ କଟାଇଥିବା ଜଣେ ଓଡ଼ିଆ ବନ୍ଧୁ ଲଣ୍ଡନ୍‌ରେ ତାଙ୍କର ବାନ୍ଧବୀ ପାଟ୍ରିସିଆଙ୍କ ପାଇଁ ମୋ ହାତରେ ଉପହାର ପଠାଇଥିଲେ ପିପିଲିର ରଙ୍ଗୀନ ବ୍ୟାଗ୍‌ଟିଏ । ଲଣ୍ଡନ୍‌ରେ ପହଞ୍ଚି ପାଟ୍ରିସିଆଙ୍କୁ ଟେଲିଫୋନ୍ କଲି । ସେ ମୋତେ ଆଗ୍ରହରେ ନିମନ୍ତ୍ରଣ ଜଣାଇଲେ ତାଙ୍କ ଫ୍ଲାଟ୍‌କୁ – କୌଣସି ସନ୍ଧ୍ୟାରେ ଡିନର୍ ପାଇଁ ।

ପାଟ୍ରିସିଆଙ୍କ ଫ୍ଲାଟ୍‌ଟି ୱେଷ୍ଟବୋର୍ଣ୍ଣ ପାର୍କ ରୋଡ୍‌ରେ – ମୁଁ ରହୁଥିବା ଭିକ୍ଟୋରିଆ ଅଞ୍ଚଳଠାରୁ ବେଶ୍ ଦୂର । ଦୁଇଥର ଟିଉବ୍ ବଦଳାଇ ନିର୍ଦ୍ଧାରିତ ସମୟର ଅଧଘଣ୍ଟାଏ ବିଳମ୍ବରେ ପହଞ୍ଚିଲି ଗନ୍ତବ୍ୟ ସ୍ଥଳରେ ।

ଅତ୍ୟନ୍ତ ପରିଚ୍ଛନ୍ନ ସୁରୁଚିସମ୍ପନ୍ନ ଫ୍ଲାଟ୍ । ଆଉ ଦୁଇଜଣ ନିମନ୍ତ୍ରିତ ଅତିଥି ମୋ ପୂର୍ବରୁ ସେଠାରେ ପହଞ୍ଚି ସାରିଥା'ନ୍ତି । ସେମାନଙ୍କୁ ମୋ ସହିତ ପରିଚୟ କରାଇ ଦେଲେ ପାଟ୍ରିସିଆ – 'ସୁଷମା ଓ ଫର୍ମାନ୍ଦା ।'

ଇଂଲାଣ୍ଡରେ ଡିନର୍ ପାର୍ଟିର ମୁଖ୍ୟ ଉଦ୍ଦେଶ୍ୟ ଆଳାପ ଓ ଭାବବିନିମୟ । ଖାଦ୍ୟ ପାନୀୟ ଯେପରି ଗୌଣ ! ପ୍ରଥମେ କୋଲ୍ଡ଼ ଡ୍ରିଙ୍କ୍ ବା ମଦ୍ୟ, ତା' ପରେ ମେନ୍ ଡିସ୍, ସୁଇଟ୍‌ସ୍ ଶେଷରେ କଫି । କିନ୍ତୁ ସବୁଠାରୁ ବଡ଼ କଥା, କ୍ରମାଗତ ଆଳାପ, ଆଲୋଚନା, ଭାବବିନିମୟ ।

ପାଟ୍ରିସିଆଙ୍କ ସାଗ୍ରହ ନିମନ୍ତ୍ରଣର ଅଭିପ୍ରାୟ ବୁଝିବାରେ ବିଳମ୍ବ ହେଲା ନାହିଁ । ସେ ପୂର୍ବରୁ ଓଡ଼ିଶା ଆସିଛନ୍ତି । ପୁରୀ ଓ କୋଣାର୍କ ସହିତ ପରିଚିତ । ଓଡ଼ିଶାର କଳା ଓ ସଂସ୍କୃତି ତାଙ୍କୁ ମୁଗ୍ଧ କରିଛି । ପୁରୀର ମୁକ୍ତ ସମୁଦ୍ର ବେଳା, ଭୁବନେଶ୍ୱରରୁ ରେଳଯୋଗେ ପୁରୀ ଯିବା ବାଟରେ ମାଇଲ୍ ମାଇଲ୍ ସବୁଜ ଧାନକ୍ଷେତର ସୌନ୍ଦର୍ଯ୍ୟ ସେ ବର୍ଣ୍ଣନା କଲେ । ତାଙ୍କ ମତରେ ଓଡ଼ିଶାର ଗୃହଗୁଡ଼ିକ ବେଶ୍ ସୁନ୍ଦର, ଏପରିକି ଗ୍ରାମଗୁଡ଼ିକ ମଧ୍ୟ ସୁପରିକଳ୍ପିତ । 'ଓଡ଼ିଶାର ଜଳବାୟୁ ଦକ୍ଷିଣ ଫ୍ରାନ୍‌ସ୍‌ର ଜଳବାୟୁ ପରି ଚମତ୍କାର ।' ସେ ମନ୍ତବ୍ୟ ଦେଲେ ।

ତାଙ୍କ ଫ୍ଲାଟ୍‌ରେ ପଥରର ଗଣେଶ ମୂର୍ତ୍ତିଟିଏ ଶୋଭା ପାଉଥିଲା । ମୂର୍ତ୍ତିଟି ସେ ସଂଗ୍ରହ କରିଥିଲେ ଓଡ଼ିଶାରୁ । କେବଳ ସେତିକି ନୁହେଁ, କୌଣସି ବଙ୍ଗୀୟ ମହିଳାଙ୍କଠାରୁ ଲଣ୍ଡନ୍‌ରେ ସେ ଓଡ଼ିଶୀ ନୃତ୍ୟ ଶିକ୍ଷା କରୁଛନ୍ତି ବୋଲି ଜଣାଇଲେ ।

ପାଟ୍ରିସିଆ ଜଣେ ଇଣ୍ଟେରିଅର୍ ଡିଜାଇନର୍, ଅର୍ଥାତ୍ ଗୃହ ଅଭ୍ୟନ୍ତର ସାଜସଜ୍ଜା କରନ୍ତି । ତାଙ୍କ ନିଜ ଫ୍ଲାଟ୍‌ରୁ ହିଁ ତାଙ୍କ କର୍ମନୈପୁଣ୍ୟର ପରିଚୟ ମିଳୁଥିଲା । ତା' ବ୍ୟତୀତ ସେ ଜଣେ ନୃତ୍ୟଶିଳ୍ପୀ । କଥକ ଶିକ୍ଷା କରିବା ପାଇଁ ଦିଲ୍ଲୀରେ ସେ କିଛିମାସ କଟାଇଥିଲେ । ରାଜସ୍ଥାନର ବହୁ ଅଞ୍ଚଳ ମଧ୍ୟ ବୁଲି ଦେଖିଛନ୍ତି ।

ପାଟ୍ରିସିଆ ଏକାକୀ ରହନ୍ତି ଫ୍ଲାଟ୍‌ରେ, ଆପାତତଃ ଅବିବାହିତା । ଓଡ଼ିଶା ଓ ଭାରତ ସମ୍ପର୍କରେ ଅଧିକ ଜାଣିବାକୁ ତାଙ୍କର ଆଗ୍ରହ ଯଥେଷ୍ଟ । ମାଧବୀ ଜାଫ୍‌ରୀଙ୍କ Eastern Cookery ବହିଟି ସାହାଯ୍ୟରେ ସେଦିନ ସେ ଆମପାଇଁ ପ୍ରସ୍ତୁତ କରିଥିଲେ ଭାରତୀୟ ଖାଦ୍ୟ – ଭାତ, ଡାଲି, ମାଂସ ତରକାରି ଓ ସାଲାଡ୍ । ମାଟିପାତ୍ରରେ ଖାଦ୍ୟ ପରିବେଷଣ କଲେ ।

ଲାଲ୍ ଫ୍ରକ୍, ଧଳା ଟାଇଟ୍ ପରିହିତା, ବବ୍‌ଡ଼ କେଶଧାରିଣୀ ସୁଷମା ହଠାତ୍ କୌଣସି କଲେଜ୍‌ର ଅଳ୍ପବୟସ୍କା ଛାତ୍ରୀଟିଏ ପରି ମନେହୁଅନ୍ତି, କିନ୍ତୁ କିଛି ସମୟ ଆଳାପ ପରେ ତାଙ୍କ ପରିଣତ ଅନୁଭୂତିର ପରିଚୟ ମିଳେ । କୃତ୍ରିମ ପ୍ରସାଧନ ଆଭ୍ୟନ୍ତରରେ ଆତ୍ମଗୋପନ ଉଦ୍ୟମ କରିଥିବା ତାଙ୍କ ବ୍ୟକ୍ତିତ୍ୱଟି ସାମ୍ନାକୁ ବାହାରିଆସେ ।

ପ୍ରଥମ ପରିଚୟରେ ନିଜ ବ୍ୟକ୍ତିଗତ ଜୀବନ ସମ୍ପର୍କରେ ଗପିବସିବା ଇଂରେଜମାନଙ୍କ ଚରିତ୍ର ବିରୁଦ୍ଧ । ପାଟ୍ରିସିଆଙ୍କ କଥାବାର୍ତ୍ତା ମୁଖ୍ୟତଃ ଥିଲା କଳା ଓ ସଂସ୍କୃତି ସମ୍ପର୍କରେ । ତାଙ୍କର ଜଣେ ଖୁଡ଼ୀ ଲଣ୍ଡନ୍‌ରେ ରହନ୍ତି – ପ୍ରସଙ୍ଗ କ୍ରମେ କେବଳ ଏଇ ବ୍ୟକ୍ତିଗତ ସମ୍ବାଦଟି ସେ ଉଲ୍ଲେଖ କରିଥିଲେ ।

ସୁଷମା କିନ୍ତୁ ସହଜ ଭାବରେ ଗପିଗଲେ ତାଙ୍କ ଜୀବନ କାହାଣୀ । ତାଙ୍କର ଜନ୍ମ ଲାହୋରରେ । ଅଳ୍ପ ବୟସରେ ବିବାହ ପରେ ସ୍ୱାମୀଙ୍କ ସଙ୍ଗେ ସେ ଆସିଲେ ଲଣ୍ଡନ୍ । ଗୋଟିଏ ସନ୍ତାନର ମାଆ ମଧ ହେଲେ; କିନ୍ତୁ ସ୍ୱାମୀ ତାଙ୍କୁ ହଠାତ୍ ଛାଡ଼ପତ୍ର ଦେଲେ । ଏ ଯାଏଁ ସେ ଭାରତୀୟ ବୋହୂଟିଏ ଥିଲେ, କିନ୍ତୁ ପରିସ୍ଥିତି ଅକସ୍ମାତ୍ ବଦଳିଗଲା । ଲଣ୍ଡନ୍‌ରେ ବଞ୍ଚି ରହିବା ପାଇଁ ତାଙ୍କ ସଂଗ୍ରାମୀ ଜୀବନର ଆରମ୍ଭ ହେଲା । ବର୍ତ୍ତମାନ ସେ କୌଣସି ପ୍ରାଇମେରୀ ସ୍କୁଲ୍‌ରେ ଶିକ୍ଷକତା କରନ୍ତି ।

ଭାରତୀୟ ସଙ୍ଗୀତ ଓ କଳାରେ ତାଙ୍କର ମଧ ବେଶ୍ ଆଗ୍ରହ ଓ ସେଇ ପରିପ୍ରେକ୍ଷୀରେ ତାଙ୍କର ପାଟ୍ରିସିଆଙ୍କ ସହିତ ବନ୍ଧୁତା । ସେ ଛୁଟି କଟାଇବା ପାଇଁ ଥରେ ଦୁଇଥର ଭାରତ ଆସିଛନ୍ତି । ତାଙ୍କର ବାପ–ମା' ରହନ୍ତି ରାଜସ୍ଥାନରେ । ଭିଣୋଇ ଜଣେ ରେଲୱେ ଇଞ୍ଜିନିୟର, ରହନ୍ତି ଘାନାରେ; ସପିଂ କରିବା ପାଇଁ କେବେ କିପରି ଆସନ୍ତି ଲଣ୍ଡନ୍ । 'ହାତରେ ପଇସା ଥିଲେ ବି ଘାନାରେ କୌଣସି ଜିନିଷ ମିଳେ ନାହିଁ' – ସୁଷମାଙ୍କ ଅଭିଯୋଗ ।

ହିନ୍ଦୀ, ଉର୍ଦ୍ଦୁ ଓ ପଞ୍ଜାବୀରେ ଗୀତ ଗାଇପାରନ୍ତି ସୁଷମା । ଓଡ଼ିଆ ଭାଷା କେମିତି ଶୁଭେ, ସେ ଜାଣିବାକୁ ଚାହିଁଲେ । 'ତୁମେ କେମିତି ଅଛ ?' ମୁଁ କହିଲି । 'ଓଡ଼ିଆ ଠିକ୍ ଗୁଜୁରାଟୀ ପରି ।' ସେ ମୋ ଓଡ଼ିଆ ବାକ୍ୟଟିର ଅର୍ଥ ଠିକ୍ ବୁଝିପାରିଲେ ।

ସୁଷମା ଲଣ୍ଡନ୍‌ର କୌଣସି ଭାରତୀୟ ଅନୁଷ୍ଠାନରେ ସଙ୍ଗୀତ ଶିକ୍ଷା କରୁଛନ୍ତି । 'କିନ୍ତୁ ବର୍ତ୍ତମାନ ମୋର ବଡ଼ ଅଭିଳାଷ ଡ୍ରାଇଭିଂ ଲାଇସେନ୍ସ୍‌ଟିଏ ପାଇବା', ସେ କହିଲେ ।

ଥରେ ଡ୍ରାଇଭିଂ ଟେଷ୍ଟରେ ସେ ଫେଲ୍ ହୋଇଛନ୍ତି । ଆସନ୍ତା ସପ୍ତାହରେ ଆଉ ଥରେ ଟେଷ୍ଟ ଦେବେ । ସେ ଚିନ୍ତିତ ଥିଲେ – 'ଲଣ୍ଡନ୍‌ରେ କାର୍‌ଟିଏ କିଣିବା ସହଜ, କିନ୍ତୁ ଡ୍ରାଇଭିଂ ଲାଇସେନ୍ସ୍‌ଟିଏ ପାଇବା ସହଜ ନୁହେଁ !' × × ×

ଫର୍ମାନ୍ଦା ଆସିଛନ୍ତି ବ୍ରାଜିଲ୍‌ରୁ । ଭାରତୀୟ କଳା ଓ ସଂସ୍କୃତିରେ ଆଗ୍ରହ ତାଙ୍କର ବିଶେଷତ୍ୱ ନୁହେଁ । ପାଟ୍ରିସିଆ ଓ ସୁଷମାଙ୍କ ତୁଳନାରେ ସେ ଅଳ୍ପ ବୟସ୍କା; ଚଞ୍ଚଳ ଓ ହସ ହସ । କୌଣସି ଗଭୀର ପ୍ରଶ୍ନ ବା ତଥ୍ୟରେ ସେ ଆଗ୍ରହୀ ନ ଥିଲେ । ମଜାକଥା କହିବା, ବିଶେଷତଃ ନିଜ ଦେଶ ଲୋକଙ୍କ ଦୋଷ ଦୁର୍ବଳତାକୁ ଥଟ୍ଟାକରି ଅନ୍ୟମାନଙ୍କୁ ହସାଇବାରେ ତାଙ୍କର ଆନନ୍ଦ ।

ଫର୍ମାନ୍ଦା ଲଣ୍ଡନ୍‌ରେ ରହିଲେଣି ବେଶ୍ କିଛି ବର୍ଷ ହେଲା । ତଥାପି ଇଂରାଜୀ କହନ୍ତି ଝୁଣ୍ଟି ଝୁଣ୍ଟି । 'ବ୍ରାଜିଲ୍ ଲୋକଙ୍କ ସହିତ ସବୁ ସମୟ କଟାଇବାରୁ ମୋ ଇଂରାଜୀ ଭଲ ନୁହେଁ', ସେ କହିଲେ ।

ଫର୍ମାନ୍ଦା କାମ କରନ୍ତି କୌଣସି ଗୋଟିଏ ଦୋକାନରେ । ନିକଟ ଅତୀତରେ ତାଙ୍କର ବିବାହ ହୋଇ ସାରିଛି । ତାଙ୍କ ସ୍ୱାମୀ ବିବାହ ପରେ ଆମେରିକା ଯାଇଛନ୍ତି ଭଲ ଚାକିରିଟିଏ ପାଇ । ଫର୍ମାନ୍ଦା ଭିସା ପାଇଁ ଅପେକ୍ଷା କରୁଛନ୍ତି । ଭିସା ପାଇଲେ ସେ ଚାଲିଯିବେ ଆମେରିକା – ସ୍ୱାମୀଙ୍କ ନିକଟକୁ । × × ×

ସେଦିନ ପାର୍ଟିରେ ତିନୋଟି ମହାଦେଶର ତିନିଜଣ ପ୍ରତିନିଧିଙ୍କୁ ଭେଟିବାର ସୁଯୋଗ ଘଟିଲା । ପାଟ୍ରିସିଆ, ସୁଷମା ଓ ଫର୍ମାନ୍ଦାଙ୍କ ଜୀବନ ଓ ପରମ୍ପରାର ଭିନ୍ନତା ଓ ବୈଚିତ୍ର୍ୟ ସତ୍ତ୍ୱେ ସେମାନଙ୍କ ମଧ୍ୟରେ ଯେଉଁ ବନ୍ଧୁତା ଗଢ଼ି ଉଠିଛି, ଏଥିରୁ ମଣିଷ ଜାତିର ଏକତାର ସମ୍ଭାବନା ହିଁ ସୂଚିତ ହୁଏ । ମଣିଷ ମଣିଷ ଭିତରେ ବନ୍ଧୁତା ଇତିହାସ, ପରମ୍ପରା ଓ ଦୂରତାର ଊର୍ଦ୍ଧ୍ୱରେ – ଏଇ ବିଶ୍ୱାସ ସେଦିନ ମୋତେ ବିହ୍ୱଳିତ କରିଥିଲା ।



## ଗାଁଆକୁ ଫେରିଯାଅ

'ଲଣ୍ଡନ୍‌ରେ ଟ୍ରେନିଂ ପରେ ନିଜ ଗାଁଆକୁ ଫେରିଯାଅ' – ଦୁଇଜଣ ଭାରତୀୟ ତରୁଣୀ ଶିକ୍ଷୀଙ୍କୁ ସେଦିନ ଏଇ ମୂଲ୍ୟବାନ ଉପଦେଶ ଦେଲେ ଶ୍ରୀ ମାଖନ୍‌ଲାଲ ଶର୍ମା ।

ଲଣ୍ଡନ୍‌ରେ ରହୁଥିବା ଭାରତୀୟ ଶିଳ୍ପୀମାନଙ୍କର ସମାବେଶଟିଏ ହେଉଥାଏ ମେ-ଫେୟାର୍ ଅଞ୍ଚଳରେ । ସମବେତ ହୋଇଥା'ନ୍ତି ପ୍ରାୟ କୋଡ଼ିଏ ଜଣ ଶିଳ୍ପୀ – ମାଳୀ, ଚିଲା, ଜାକିର୍, ଘୋଷ୍ ସିଦ୍ଦିକି, ପ୍ରକାଶ ଓ ଅନ୍ୟମାନେ । ବେସ୍‌ମେଣ୍ଟ୍‌ରେ ତିନି ଚାରୋଟି ବଖରାରେ ସଜ୍ଜିତ ହୋଇଥାଏ ସେମାନଙ୍କ ପେଣ୍ଟିଂ । ଶିଳ୍ପୀ ଓ ଶିଳ୍ପପ୍ରେମୀମାନେ ବେଶ୍ ଉତ୍ସାହିତ ହୋଇ ପରସ୍ପର ସହିତ ଆଳାପ କରୁଥା'ନ୍ତି ଓ ମଦ, ବିସ୍କିଟ୍ ଓ ସାଣ୍ଡୱିଚ୍‌ର ସଦ୍‌ବ୍ୟବହାର କରୁଥା'ନ୍ତି ।

ଲଣ୍ଡନ୍‌ରେ ବର୍ଷଟିଏ ଚିତ୍ରକଳାରେ ଟ୍ରେନିଂ ପାଉଥିବା ବରୋଦା ଆର୍ଟ୍‌ସ୍ କଲେଜ୍‌ର ଦୁଇଜଣ ତରୁଣୀଙ୍କ ସହିତ କଥୋପକଥନରେ ନିମଜ୍ଜିତ ଥା'ନ୍ତି ଶର୍ମାଜୀ । ତରୁଣୀ ଦୁହେଁ ଜିନ୍ ପରିହିତା, ମୁକ୍ତକେଶା ଓ ସ୍ୟାମ୍ପେନ୍–ସିଗାରେଟ୍ ଧାରିଣୀ । ଭାରତରେ ଶିଳ୍ପୀ ଓ ଶିଳ୍ପ କିପରି ଅବହେଳିତ ଓ ଜନସାଧାରଣ କିପରି ଚିତ୍ରକଳା ପ୍ରତି ଅନାଗ୍ରହୀ, ସେଇ ପ୍ରସଙ୍ଗ ଉଠିଲା । 'ଲଣ୍ଡନ୍‌ରେ ଟ୍ରେନିଂ ପରେ ଆମେ କରିବୁ କ'ଣ ? ଭାରତରେ କିଏ ବୁଝିବ ଆମ ଟ୍ରେନିଂର ମୂଲ୍ୟ ?' କ୍ଷୋଭପ୍ରକାଶ କଲେ ତରୁଣୀଦ୍ୱୟ ।

ଚିଡ଼ି ଉଠିଲେ ଶର୍ମାଜୀ, 'ଭାରତୀୟ ଗାଁଆରେ ଶିଳ୍ପୀମାନେ ଯେମିତି ରହୁଛନ୍ତି ଓ ବଞ୍ଚିବା ପାଇଁ ସଂଗ୍ରାମ କରୁଛନ୍ତି, ତୁମମାନଙ୍କର ସେହିପରି କରିବା ଉଚିତ । ତୁମେମାନେ ନିଜକୁ ସେମାନଙ୍କଠାରୁ ଭିନ୍ନ ବୋଲି ଭାବ ନାହିଁ । ଟ୍ରେନିଂ ପରେ ଫେରିଯାଅ ଗାଁଆକୁ ଓ ନିଜ ଦେଶରେ ଶିଳ୍ପ ଓ ଶିଳ୍ପୀର ଜାଗରଣ ପାଇଁ ଉଦ୍ୟମ କର !' × × ×

ଶର୍ମାଜୀଙ୍କ ଘର ଭାରତର କୌଣସି ନିଭୃତ ପଲ୍ଲୀ ଅଞ୍ଚଳରେ । ସେ ମେଧାବୀ ଛାତ୍ର ନ ଥିଲେ, କିନ୍ତୁ ଚିତ୍ରକଳାରେ ତାଙ୍କର ଥିଲା ଉଜ୍ଜ୍ୱଳ ପ୍ରତିଭା । ସୌଭାଗ୍ୟକ୍ରମେ ଯୌବନରେ ସେ ଆସିପାରିଲେ ଇଂଲାଣ୍ଡ ଓ ଆଉ ଭାରତ ଫେରିଲେ ନାହିଁ । ଦାରିଦ୍ର୍ୟ ଓ ସଂଗ୍ରାମ ମଧ୍ୟରେ ପ୍ରାୟ କୋଡ଼ିଏ ବର୍ଷ ହେଲା ସେ ମାଟି କାମୁଡ଼ି ପଡ଼ି ରହିଛନ୍ତି ଇଂଲାଣ୍ଡରେ ଚିତ୍ରକଳାରେ ସମୃଦ୍ଧି ଓ ସ୍ୱୀକୃତି ପାଇଁ । ତାଙ୍କ ଧୈର୍ଯ୍ୟ ଓ ସାଧନା ଅବଶ୍ୟ ବ୍ୟର୍ଥ ହୋଇ ନାହିଁ । ସମ୍ପ୍ରତି ସେ ଲଣ୍ଡନ୍‌ରେ ଫ୍ଲାଟ୍‌ଟିଏ କିଣି ଅପେକ୍ଷାକୃତ ସ୍ୱଚ୍ଛଳ ଜୀବନ ଯାପନ କରୁଛନ୍ତି ।

ଶର୍ମାଜୀ ଅଧିକାଂଶ ସମୟ କଟାନ୍ତି ନିଜ ଫ୍ଲାଟ୍‌ରେ । ଚିତ୍ର ଆଙ୍କନ୍ତି, ରଙ୍ଗୀନ ଟେଲିଭିଜନ୍ ଦେଖନ୍ତି ଓ ବନ୍ଧୁମାନଙ୍କ ସହିତ ଟେଲିଫୋନ୍‌ରେ କଥାବାର୍ତ୍ତା କରି ମନୋଟନୀ ଦୂର କରନ୍ତି । ସନ୍ଧ୍ୟା ହେଲେ ସେ ହୁଇସ୍କି ପିଅନ୍ତି ଓ ତାଙ୍କ ପିଲାଦିନ ଓ ଗାଁଆର ସ୍ମୃତିରେ ମୋହାବିଷ୍ଟ ହୁଅନ୍ତି । ତାଙ୍କର ଚିତ୍ର ପ୍ରଦର୍ଶନୀମାନ ଅନୁଷ୍ଠିତ ହୁଏ ଇଂଲାଣ୍ଡରେ କିମ୍ବା ଇଂଲାଣ୍ଡ ବାହାରେ ।

ସେ ଅବଶ୍ୟ କେବେ କିପରି ଭାରତ ମଧ ଫେରନ୍ତି ଓ ଦିଲ୍ଲୀ, ବମ୍ବେ ପ୍ରଭୃତିରେ ଚିତ୍ର ପ୍ରଦର୍ଶନୀ କରନ୍ତି । ସେ ଯେ ଲଣ୍ଡନ୍‌ବାସୀ ଜଣେ ଶିଳ୍ପୀ – ଏଇ ପରିଚୟ ଭାରତରେ ତାଙ୍କର ବ୍ୟାବସାୟିକ ସଫଳତାର ହୁଏ ଏକ ମୁଖ୍ୟ କାରଣ । ସେ ବଡ଼ ବଡ଼ ହୋଟେଲ୍‌ରେ ରହନ୍ତି, ପଦସ୍ଥ ବ୍ୟକ୍ତିଙ୍କ ଦ୍ୱାରସ୍ଥ ହୁଅନ୍ତି – ଏପରି କି କାର୍ ଭଡ଼ା କରି ଅଳ୍ପସମୟ ପାଇଁ ଅତିଥି ପରି ବୁଲିଆସନ୍ତି ନିଜ ଗାଁଆରେ ।

ଆପଣ ନିଜେ ରହୁଛନ୍ତି ଲଣ୍ଡନ୍‌ରେ ଅଥଚ ଅନ୍ୟମାନଙ୍କୁ ଉପଦେଶ ଦେଉଛନ୍ତି ଭାରତର ନିଜ ଗାଁଆକୁ ଫେରିଯିବାକୁ । ଏହାର କାରଣ କ'ଣ ? ଶର୍ମାଜୀଙ୍କୁ ଏଇ ପ୍ରଶ୍ନ ପଚାରିବି ପଚାରିବି ହେଲି । କିନ୍ତୁ ପଚାରିଲି ନାହିଁ । ବେଶ୍ କିଛି ବର୍ଷ ହେଲା ଶର୍ମାଜୀଙ୍କୁ ମୁଁ ଜାଣେ । ପ୍ରତିଭା ଭଳି ଅସହିଷ୍ଣୁତା ମଧ ତାଙ୍କ ଚରିତ୍ରର ଏକ ବିଶିଷ୍ଟ ଗୁଣ । ଏପରି ପ୍ରଶ୍ନଟିଏ ପଚାରିଥିଲେ ସେ ମୋ ଉପରେ ବିରକ୍ତ ହୋଇଥା'ନ୍ତେ, ଏତକ ମୋତେ ଅଜଣା ନ ଥିଲା । × × ×

ଲଣ୍ଡନ୍ ମହାନଗରୀରେ ଯେତେ ସହଜରେ ଭେଟି ହୁଏ, ଭାରତ, ନାଇଜେରିଆ ଓ ୱେଷ୍ଟଇଣ୍ଡିଜ୍ ଭଳି ଦେଶର ଶିଳ୍ପୀମାନଙ୍କୁ, ସେମାନଙ୍କ ନିଜ ଦେଶରେ ହୁଏତ ତାହା ସମ୍ଭବ ହୁଏ ନାହିଁ । ସ୍ୱଚ୍ଛନ୍ଦ ଜୀବନଯାପନ ତଥା ଯଶ ଓ ସ୍ୱୀକୃତି ଅନୁସନ୍ଧାନରେ ଏସିଆ, ଆଫ୍ରିକା ଓ ଲାଟିନ୍ ଆମେରିକାର ବିକାଶଶୀଳ ଅଞ୍ଚଳମାନଙ୍କର ଶିଳ୍ପୀମାନେ ସ୍ୱାଭାବିକ ଭାବରେ ଆକୃଷ୍ଟ ହୋଇଥା'ନ୍ତି ଲଣ୍ଡନ୍ ବା ପ୍ୟାରିସ୍ ଭଳି ମହାନଗରୀକୁ । 'ପ୍ରତିଭା ସବୁ କିଛି ନୁହେଁ, ପ୍ରତିଭାକୁ ଗ୍ରହଣ କଲା ଭଳି ସମାଜ ଓ ପରିବେଶ ଶିଳ୍ପୀମାନଙ୍କ ପାଇଁ ଖୁବ୍ ଜରୁରୀ' – ବିକାଶଶୀଳ ଦେଶରୁ ଆସି ଲଣ୍ଡନ୍‌ରେ ରହୁଥିବା ଜଣେ ଶିଳ୍ପୀ, ସେ ଲଣ୍ଡନ୍‌ରେ ରହିବା ସମ୍ପର୍କରେ ଏଇ ମନ୍ତବ୍ୟଟି ଦେଇଥିଲେ ।

ଶର୍ମାଜୀ ତେଣୁ ଭାରତ ନ ଫେରି ଲଣ୍ଡନ୍‌ରେ ରହିଯିବାରେ ଦୋଷାବହ କିଛି ନାହିଁ । ଯେକୌଣସି ବ୍ୟକ୍ତି ଭଳି ତାଙ୍କର ମଧ ସ୍ୱଚ୍ଛନ୍ଦ ଜୀବନଯାପନ ଓ ଯଶଲାଭ ଉଦ୍ୟମର ଅଧିକାର ଅଛି ।

କିନ୍ତୁ ଶର୍ମାଜୀଙ୍କର ଅଧିକାର ଅଛି କି ଲଣ୍ଡନ୍‌ରେ ପହଞ୍ଚୁଥିବା ଅନ୍ୟ ଶିଳ୍ପୀମାନଙ୍କୁ ଭାରତର ଗାଁଆକୁ ଫେରିଯିବାପାଇଁ ଉପଦେଶ ଦେବାର ? ନିଜେ ଟେଲିଭିଜନ୍, ଭିଡ଼ିଓ ଓ ହୁଇସ୍କିକୁ ଆଦରି ନେଇ ଅନ୍ୟ ଶିଳ୍ପୀମାନଙ୍କୁ ଗାଁଆର ମାଟି କାଦୁଅ ଓ ଦାରିଦ୍ର୍ୟକୁ ଠେଲିଦେବା, କେଉଁ ମନୋବୃତ୍ତିର ସୂଚନା ଦିଏ ?

ଶର୍ମାଜୀ କିନ୍ତୁ କେବଳ ବ୍ୟକ୍ତିବିଶେଷ ନୁହନ୍ତି, ସେ ମଧ ଏକ ବ୍ୟାପକ ଶିଳ୍ପୀ–ଲେଖକ ଶ୍ରେଣୀର ପ୍ରତିନିଧି । ଲଣ୍ଡନ୍‌ରେ ସଚରାଚର ଭେଟିବାର ଦୁର୍ଯୋଗ ଘଟେ ଶର୍ମାଜୀଙ୍କ

ସମଗୋତ୍ରୀୟ ଶିଳ୍ପୀ-ଲେଖକମାନଙ୍କୁ । ସେମାନେ ଉପଭୋଗ କରିବାକୁ ଚାହାନ୍ତି ପାଶ୍ଚାତ୍ୟ ସଭ୍ୟତାର ସକଳ ସୁଖ-ସମୃଦ୍ଧି । କିନ୍ତୁ ଅନ୍ୟମାନଙ୍କୁ ଉପଦେଶ ଦେଇ ଚାଲିଥା'ନ୍ତି, 'ଲଣ୍ଡନ୍‌ରେ ରହିବ କାହିଁକି ? ନିଜ ଗାଁଆକୁ ଫେରିଯାଅ ।'



## କାଇଜର୍ ଟମ୍‌କିନ୍

ସ୍କୁଲ୍ ଅଫ୍ ଓରିଏଣ୍ଟାଲ୍ ଏଣ୍ଡ୍ ଆଫ୍ରିକାନ୍ ଷ୍ଟଡ଼ିଜ୍ ପାଠାଗାରକୁ ସେ ପ୍ରାୟ ନିୟମିତ ଆସୁଥିଲେ ଏବଂ ମୋ ଟେବୁଲ୍‌ର ଅଳ୍ପ ଦୂରରେ ବସି ପଢ଼ାପଢ଼ି କରୁଥିଲେ । କ୍ଷୀଣ, ଗୋରା ରଙ୍ଗର ଚେହେରା; ପରିଚ୍ଛନ୍ନ, ରୁଚିପୂର୍ଣ୍ଣ ପୋଷାକ ଓ ପ୍ରଶାନ୍ତ ଭାବଭଙ୍ଗୀ । ଲକ୍ଷ୍ୟ କଲି, ତାଙ୍କର ବ୍ୟସ୍ତତା ମୁଖ୍ୟତଃ ମୋଟା ମୋଟା ପୁରୁଣା ଆରବିକ୍ ବହିମାନଙ୍କୁ ନେଇ ।

କେତେଥର 'ହ୍ୟାଲୋ', 'ଗୁଡ୍‌ମର୍ଣ୍ଣିଂ' ପରେ ଦିନେ ଆଳାପ ହେଲା । ମୁଁ ତାଙ୍କୁ ନିମନ୍ତ୍ରଣ କଲି 'ସ୍କୁଲ୍'ର ସିନିୟର୍ କମନ୍ ରୁମ୍‌କୁ । ସେହିଠାରେ କଫିପାନ ଓ ଭାବବିନିମୟ ।

ମୋର ଅନୁମାନ ଠିକ୍ ଥିଲା । ସେ ଆସିଥିଲେ ଭାରତରୁ । ଭାରତୀୟ ମହାଜାତି ବହୁ ମଣିଷ ଗୋଷ୍ଠୀର ରକ୍ତ, ଇତିହାସ ଓ ସଂସ୍କୃତିର ସମନ୍ୱୟ ହେଲେ ହେଁ ୟୁରୋପୀୟ ପୃଷ୍ଠଭୂମିରେ ସହଜରେ ଚିହ୍ନିହୁଏ ଭାରତୀୟଟିକୁ । ସ୍ପେନ୍‌ର ବାର୍ସେଲୋନାରେ କିମ୍ବା ସ୍ୱିଡ଼େନ୍‌ର ଗଟନ୍‌ବର୍ଗ୍‌ରେ ହଠାତ୍ କେହି ଜଣେ ଆପଣଙ୍କ ପଥରୋଧି ପଚାରେ, ଆପଣ ଭାରତୀୟ ? ଆପଣ ହସନ୍ତି । କାରଣ ଆପଣଙ୍କ ସାମ୍ନାରେ ଯେ ଠିଆ ହୋଇଛି, ଆପଣ ତାକୁ ଚିହ୍ନନ୍ତି । ଆପଣ ଅବଶ୍ୟ କେବେ ତାକୁ କେଉଁଠାରେ ଦେଖି ନାହାନ୍ତି । କିନ୍ତୁ ସେ ମଧ୍ୟ ଜଣେ ଭାରତୀୟ ।

ବେଶ୍ ମାର୍ଜିତ, ଅଭିଜାତ ଭଙ୍ଗୀରେ କଫି ଶୋଷୁ ଶୋଷୁ ଓ ଚଷମା କାଚ ପୋଛୁ ପୋଛୁ ସେ ବର୍ଣ୍ଣନା କଲେ ତାଙ୍କର ପରିଚୟ । ଏଇଠାରେ କହିରଖେ, ବହୁ ଧର୍ମ, ଭାଷା ଓ ଆଞ୍ଚଳିକତାରେ ପୀଡ଼ିତ ଭାରତୀୟମାନେ ଭାରତର ପରିସୀମା ମଧ୍ୟରେ ସାଧାରଣତଃ ଖୋଲାଖୋଲି ନିଜକୁ ପ୍ରକାଶ କରିବାରେ ଅକ୍ଷମ । ଭାରତରେ ତେଣୁ ସାକ୍ଷାତ ହୋଇଥିଲେ ସେ ହୁଏତ ଏତେ ପ୍ରାଞ୍ଜଳ, ଏତେ ସ୍ପଷ୍ଟଭାବରେ ବର୍ଣ୍ଣନା କରିପାରି ନ ଥା'ନ୍ତେ ତାଙ୍କର ଅନୁଭୂତି । ଲଣ୍ଡନ୍ ନଗରୀର ଆଉ କିଛି ଥାଉ ବା ନ ଥାଉ, ନିଶ୍ଚିତ ଭାବରେ ଅଛି ବୌଦ୍ଧିକ ମୁକ୍ତି ଓ ସାର୍ବଜନୀନତା ।

ତାଙ୍କର ଜନ୍ମ ଲକ୍ଷ୍ନୌରେ । ଇଂରାଜୀରେ ଏମ୍.ଏ. ଡିଗ୍ରୀ ହାସଲ ପରେ ଦିଲ୍ଲୀରେ କିଛିକାଳ ସାମ୍ବାଦିକତା କରିଥିଲେ । ମୂଳରୁ ତାଙ୍କର ସ୍ୱପ୍ନ ଥିଲା, ବିଲାତ ଆସିବା । ବିଲାତର

ସର୍ବପ୍ରଧାନ ଦୈନିକ 'ଟାଇମ୍‌ସ୍'କୁ ସେ ଚାକିରିଟିଏ ପାଇଁ ସତରଟି ଦରଖାସ୍ତ ପଠାଇଲେ । ଶେଷରେ ଅବଶ୍ୟ ସେ ସଫଳ ହେଲେ । ସମ୍ପ୍ରତି ସେ ବିଲାତର ହିଁ ନାଗରିକ ।

ଭାରତ ସମ୍ପର୍କରେ ତାଙ୍କର ଥିଲା ନିର୍ଦ୍ଦିଷ୍ଟ ଅଭିଯୋଗ । ସଂଖ୍ୟାଲଘୁ ସମ୍ପ୍ରଦାୟରୁ ଆସିଥିବାରୁ ଭାରତରେ ସେ ନିଜକୁ ଇହୁଦୀ ଭଳି ହିଁ ମନେକରୁଥିଲେ । ଯୌବନରେ ସେ ହିନ୍ଦୁ ଝିଅଟିଏର ପ୍ରେମରେ ପଡ଼ିଥିଲେ, କିନ୍ତୁ ତାଙ୍କୁ ଧମକ ଦିଆଗଲା, ସେପରି ବିବାହର ପରିଣତି ହୋଇପାରେ ସାମ୍ପ୍ରଦାୟିକ ଦଙ୍ଗା ! ଭାରତ ଛାଡ଼ିବା ପାଇଁ ସେ ବ୍ୟାକୁଳ ହିଁ ଥିଲେ ।

ସେ ଭାରତ ଛାଡ଼ିଲେ ସିନା କିନ୍ତୁ ଭାରତ ତାଙ୍କୁ ଛାଡ଼ିବ କିପରି ? ଲଣ୍ଡନ୍‌ରେ ରହିବା ଅର୍ଥ ନୁହେଁ ଇଂରେଜ ସମାଜରେ ସାମିଲ ହେବା । 'ଆପଣ ଜଣେ ଭାରତୀୟ', 'ଆପଣ ଜଣେ ମୁସଲମାନ' – ଏଇ କଥା ବାରମ୍ବାର ତାଙ୍କୁ ସ୍ମରଣ କରାଇଦେଲେ ଇଂରେଜମାନେ ଏବଂ ଏଭଳି ସ୍ମରଣ କରାଇବା ମୂଳରେ ଥିଲା ପ୍ରଚ୍ଛନ୍ନ ଘୃଣା ଓ ତାଚ୍ଛଲ୍ୟ ।

ସେ କହିଲେ, ଭାରତରେ ସେ ନିଜକୁ ଜଣେ ଭାରତୀୟ ଓ ମୁସଲମାନ ବୋଲି ଯେତେ ଅନୁଭବ କରୁ ନ ଥିଲେ, ଲଣ୍ଡନ୍‌ରେ ଅନୁଭବ କରୁଛନ୍ତି ତା'ଠାରୁ ଯଥେଷ୍ଟ ବେଶୀ । ଇଂରେଜମାନଙ୍କର ମୁସଲମାନମାନଙ୍କ ଧର୍ମ ଓ ପରମ୍ପରା ସମ୍ପର୍କରେ ବିଚିତ୍ର ଧାରଣମାନ ଅଛି । ତେଣୁ ସେଭଳି ଭୁଲ୍‌ଧାରଣା ବିରୁଦ୍ଧରେ ସେ ଇସଲାମ୍ ସମ୍ପର୍କରେ ବର୍ତ୍ତମାନ ଲେଖୁଛନ୍ତି ବହିଟିଏ ।

ସେ ବିବାହିତ । ତାଙ୍କର ନାମ କାଇଜର୍ ଟମ୍‌କିନ୍ । × × ×

କାଇଜର୍ ଟମ୍‌କିନ୍‌ଙ୍କ ସମସ୍ୟା ବିଲାତ କିମ୍ବା ପାଶ୍ଚାତ୍ୟ ପୃଥିବୀରେ ରହୁଥିବା ଏସିଆ ବା ଆଫ୍ରିକାର ବଂଶୋଦ୍‌ଭବମାନଙ୍କ ସମସ୍ୟା; ଇତିହାସର ପ୍ରବାହରେ ଗୋଟିଏ ସଂସ୍କୃତି ଓ ପରମ୍ପରାରୁ ବିଚ୍ଛିନ୍ନ, ଅନ୍ୟ ସଂସ୍କୃତି ଓ ପରମ୍ପରାରେ ଆରୋପିତ ମଣିଷ ଗୋଷ୍ଠୀର ସମସ୍ୟା ।

ମଣିଷ ଜାତିର ଇତିହାସର ବିବର୍ତ୍ତନ ଅନେକ ପରିମାଣରେ ନିୟନ୍ତ୍ରଣ କରିଛି ମଣିଷର ଗତିଶୀଳତା । ଅତୀତରେ ବହୁ ମଣିଷଗୋଷ୍ଠୀ ପାଦ ଦେଇଛନ୍ତି ଭାରତରେ ଏବଂ ଅଙ୍ଗୀଭୂତ ହୋଇଛନ୍ତି ଭାରତୀୟ ମହାଜାତିରେ । କିନ୍ତୁ ଏଇ ସ୍ୱାଭାବିକ ପ୍ରକ୍ରିୟାର ପଥରୋଧ କରିଛି ଚମଡ଼ାର ରଙ୍ଗ, ଧର୍ମ ଓ ଭାଷା । ସେଇଥିପାଇଁ କାଇଜର୍ ଟମ୍‌କିନ୍ ନିଜ ଧର୍ମପାଇଁ ଭାରତରେ ନିଜକୁ ନିରାପଦ ମନେକରି ନାହାନ୍ତି ।

ତଥାକଥିତ ଉନ୍ନତ ଓ ସଭ୍ୟ ପାଶ୍ଚାତ୍ୟ ପୃଥିବୀରେ ମଧ ନିଜକୁ ଅସହାୟ ମନେକରୁଛନ୍ତି ଟମ୍‌କିନ୍ । ଆତ୍ମ-ପରିଚୟର ସମସ୍ୟା ତାଙ୍କୁ ବିଚଳିତ କରୁଛି । ମୁଁ କିଏ – ଏଇ ପ୍ରଶ୍ନ ସେ ନିଜକୁ ପଚାରୁଛନ୍ତି ଏବଂ ନିଜକୁ ଏଇ ପ୍ରଶ୍ନ ପଚାରିବାକୁ ତାଙ୍କୁ ବାଧ କରୁଛି ବିଦେଶୀ ସମାଜ ଓ ତା'ର ମନୋବୃତ୍ତି । ହୁଏତ ବିଦେଶୀ ସମାଜରେ ଅଙ୍ଗୀଭୂତ ହେବାକୁ ସେ ଚାହୁଁଛନ୍ତି – ହୁଏତ ସେଇଥିପାଇଁ ଭାରତୀୟ ନାମଟି ବଦଳାଇ ସେ ନିଜକୁ ଚିହ୍ନିତ କରୁଛନ୍ତି କାଇଜର୍ ଟମ୍‌କିନ୍ ନାମରେ – କିନ୍ତୁ ଚମଡ଼ାର ରଙ୍ଗ ଓ ଧର୍ମ ତାଙ୍କୁ ବିଚ୍ଛିନ୍ନ କରି ରଖିଛି ଇଂରେଜ ସମାଜରୁ ।

ଆଜିର ପୃଥିବୀ ଯେତେ ଚାକଚକ୍ୟମୟ ହେଲେ ହେଁ ମଣିଷର ମନୋବୃତ୍ତି ଅନେକାଂଶରେ ମଧ୍ୟଯୁଗୀୟ ହିଁ ରହିଛି । ଏଇ ମନୋବୃତ୍ତି ବଦଳିବା ପାଇଁ ଆଉ କେତେ ଶତାବ୍ଦୀ ଯେ ଅପେକ୍ଷା କରିବାକୁ ପଡ଼ିବ, କିଏ ଜାଣେ ? ମଣିଷର ମନୋବୃତ୍ତି ନ ବଦଳିବାଯାଏଁ କାଇଜର ଟମ୍‌କିନ୍‌ମାନଙ୍କ ସମସ୍ୟାର ଶେଷ କାହିଁ ?



## ମଙ୍ଗୋ ବେତି

ସେଦିନ ଲଣ୍ଡନ୍‌ର ଆଫ୍ରିକା ସେଣ୍ଟର୍‌ରେ ମଙ୍ଗୋ ବେତିଙ୍କର ଭାଷଣ ଦେବାର କାର୍ଯ୍ୟକ୍ରମ ଥିଲା । ତେଣୁ ସନ୍ଧ୍ୟାରେ ଯଥାସମୟରେ ପ୍ରାୟ ପଚାଶ ଜଣ ଶ୍ରୋତା ଉପସ୍ଥିତ ହେଲେ । ସେମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ଆଫ୍ରିକାନ୍; କେତେଜଣ ଇଂରେଜ, ଆପାତତଃ ମୁଁ ହିଁ ଏକମାତ୍ର ଭାରତୀୟ ।

ସମକାଳୀନ ଆଫ୍ରିକାର ଔପନ୍ୟାସିକମାନଙ୍କ ମଧ୍ୟରେ ମଙ୍ଗୋ ବେତି ଏକ ବହୁ ଆଲୋଚିତ ନାମ । ସେ ଲେଖନ୍ତି ଫରାସୀ ଭାଷାରେ, କିନ୍ତୁ ତାଙ୍କର ଅଧିକାଂଶ ବହି ଇଂରାଜୀରେ ଅନୂଦିତ ହୋଇସାରିଛି । ମଙ୍ଗୋ ବେତିଙ୍କ ଭାଷଣ ସ୍ଥଳର ଅନତି ଦୂରରେ ତାଙ୍କର ବହିଗୁଡ଼ିକର ଇଂରାଜୀ ଅନୁବାଦ ବିକ୍ରୟ ହେଉଥିଲା । କେହି କେହି ତାଙ୍କର ବହିଟି ମାନ ଖରିଦ କରି ସେଥିରେ ଲେଖକଙ୍କ ଦସ୍ତଖତ କରାଇ ନେଉଥିଲେ ।

ମଙ୍ଗୋ ବେତି ମଧ୍ୟବୟସ୍କ, ଉଚ୍ଚତା ଓ ସ୍ୱାସ୍ଥ୍ୟ ସାଧାରଣ, ଧୀରସ୍ଥିର ଓ ଗମ୍ଭୀର । କଳା ସୁଟ୍‌ଟିଏ ପିନ୍ଧି ସେ ଆଫ୍ରିକା ସେଣ୍ଟର୍‌କୁ ଆସିଥିଲେ । ସେ ଭାଷଣ ଦେଲେ ଫରାସୀ ଭାଷାରେ । ତାଙ୍କ ଭାଷଣକୁ ଇଂରାଜୀରେ ଅନୁବାଦ କରୁଥା'ନ୍ତି କେହି ଜଣେ ଇଂରେଜ ଯୁବକ ।

ନିଜ ଲେଖକ ଜୀବନର ଅନୁଭୂତି ବର୍ଣ୍ଣନା କରୁଥା'ନ୍ତି ମଙ୍ଗୋ ବେଟି । ମୋଟାମୋଟି ସେ କହୁଥାନ୍ତି, ସେ 'ଫ୍ରାଙ୍କୋଫୋନି'ର ବିରୋଧୀ । ତେଣୁ ରାଷ୍ଟ୍ର ବା ଏଷ୍ଟାବ୍ଲିସ୍‌ମେଣ୍ଟର ସମର୍ଥନ ବା ପୃଷ୍ଠପୋଷକତାରୁ ସେ ବଞ୍ଚିତ । ତାଙ୍କ ଲେଖକ ଜୀବନ ସଂଗ୍ରାମମୟ ଓ କଠିନ । ତାଙ୍କ ବହିଗୁଡ଼ିକୁ ପ୍ରଥମ ଶ୍ରେଣୀର ଫରାସୀ ପ୍ରକାଶକମାନେ ଛାପନ୍ତି ନାହିଁ; ସରକାରୀ ସାହାଯ୍ୟରେ ଆୟୋଜିତ ସଭାସମିତିକୁ ତାଙ୍କୁ ନିମନ୍ତ୍ରଣ କରାଯାଏ ନାହିଁ, ଇତ୍ୟାଦି ।

ଫ୍ରାଙ୍କୋଫୋନିର ମୂଳ ଅର୍ଥ – ଫ୍ରାନ୍‌ସ୍‌ର ସ୍ୱାର୍ଥ ଓ ପରମ୍ପରାକୁ ସମର୍ଥନ କରିବା । ମଙ୍ଗୋ ବେଟିଙ୍କ କହିବାର ତାତ୍ପର୍ଯ୍ୟ ହେଲା, ଆଫ୍ରିକାର ଯେଉଁ ଦେଶଗୁଡ଼ିକ ଏକଦା ଫ୍ରାନ୍‌ସ୍‌ର ଉପନିବେଶ ଥିଲେ, ସେଗୁଡ଼ିକ ସ୍ୱାଧୀନତା ଲାଭ ପରେ ମଧ ମୋଟାମୋଟି ଫ୍ରାନ୍‌ସ୍‌ର କର୍ତ୍ତୃତ୍ୱ ଓ ପ୍ରଭାବରୁ ମୁକ୍ତ ହୋଇନାହାନ୍ତି । ସେ ଦେଶଗୁଡ଼ିକରେ ଲିଖିତ ସାହିତ୍ୟ ସୃଷ୍ଟି ହେଉଛି ଫରାସୀ ଭାଷାରେ ଓ ଏଭଳି ସାହିତ୍ୟର ବଡ଼ ବଡ଼ ପ୍ରକାଶକମାନେ ଅଛନ୍ତି ପ୍ୟାରିସ୍‌ରେ । ଯେଉଁ ଆଫ୍ରିକାନ୍ ଲେଖକଟିର ଲେଖା ପ୍ୟାରିସ୍‌ରୁ ପ୍ରକାଶିତ ହେଲା, ସେ ଲେଖକଟିର ଖ୍ୟାତି ଓ ଆର୍ଥିକ ସମୃଦ୍ଧି ଅଧିକ ବ୍ୟାପକ ହେବା ସ୍ୱାଭାବିକ । କିନ୍ତୁ ପ୍ୟାରିସ୍‌ରେ ନିଜଲେଖା ପ୍ରକାଶ କରିବାକୁ ଚାହୁଁଥିବା ଲେଖକ ଫ୍ରାନ୍‌ସ୍ ବା ଫରାସୀ ସମାଜର ସ୍ୱାର୍ଥ, ଇତିହାସ ଓ ପରମ୍ପରା ବିରୁଦ୍ଧରେ ଶବ୍ଦଟିଏ ଉଚ୍ଚାରଣ କରିବା ସହଜ ନୁହେଁ ! ଅଥଚ ଏହି ଲେଖକଟିର ନିଜ ଦେଶ ଅଳ୍ପ କେତେ ବର୍ଷ ତଳଯାଏଁ ଥିଲା ଫ୍ରାନ୍‌ସ୍‌ର ଉପନିବେଶ ଓ ଫ୍ରାନ୍‌ସ୍ ଦ୍ୱାରା ହେଉଥିଲା ଶୋଷିତ, ଅତ୍ୟାଚାରିତ । ସୁଖ୍ୟାତି ଓ ସମୃଦ୍ଧି ଆଶାୟୀ ଲେଖକଟି ତେବେ କ'ଣ ନିଜ ଇତିହାସ ଓ ଅତୀତକୁ ସ୍ପଷ୍ଟଭାବେ ଘୋଷଣା କରିବାକୁ କୁଣ୍ଠିତ ହେବ ? ଫ୍ରାନ୍‌ସ୍‌ରେ ନିଜ ଲେଖା ଛାପିବା ପାଇଁ ଲେଖକ ଜୀବନରେ ଯଶ ଓ ଆର୍ଥିକ ଫାଇଦା ଉଠାଇବା ପାଇଁ, ସେ କ'ଣ ଫ୍ରାନ୍‌ସ୍‌ର ଜନଗଣଙ୍କୁ ସୁହାଇଲା ଭଳି ସାହିତ୍ୟ ସୃଷ୍ଟି କରିବ ? ଆଫ୍ରିକାରେ ନିଜ ଉପନିବେଶଗୁଡ଼ିକରେ ଫ୍ରାନ୍‌ସ୍ ସରକାର ଯେଉଁ ଶୋଷଣ ଚଳାଇଥିଲେ, ଫରାସୀ ଭାଷାରେ ଲେଖୁଥିବା ଆଫ୍ରିକାନ୍ ଲେଖକଟି କ'ଣ ସେ ସମ୍ପର୍କରେ ନୀରବ ରହିବ ?

ମଙ୍ଗୋ ବେଟି କହୁଥିଲେ, ଫରାସୀ ଭାଷାରେ ଲେଖୁଥିବା ଯେଉଁ ଆଫ୍ରିକାନ୍ ଲେଖକ ନିଜର ଇତିହାସ ଓ ଅତୀତକୁ ଅସ୍ୱୀକାର କରୁଛି, ଫ୍ରାନ୍‌ସ୍‌ର ପାଠକମାନେ ଆଫ୍ରିକା ସମ୍ପର୍କରେ ଯାହା ଶୁଣିବାକୁ ଚାହାନ୍ତି ସେହିପରି କାହାଣୀ ସେମାନଙ୍କୁ ଶୁଣାଉଛି; ସେପରି ଲେଖକ ଉପଭୋଗ କରୁଛି ଫ୍ରାନ୍‌ସ୍ ଓ ପୂର୍ବତନ ଫରାସୀ ଉପନିବେଶମାନଙ୍କ ସମର୍ଥନ ଓ ଅନୁମୋଦନ । ଲେଖକ ଭାବରେ ଆପାତତଃ ସେ ହିଁ ପହଞ୍ଚି ପାରୁଛି ସଫଳତାର ଶୀର୍ଷରେ । × × ×

ବିଗତ ଦୁଇଶହ ବର୍ଷର ମଣିଷ ଜାତିର ଇତିହାସ ସ୍ଥୂଳତଃ ଉପନିବେଶବାଦର ଇତିହାସ । ଏଇ ଉପନିବେଶବାଦ କହିଲେ ମୋଟାମୋଟି ବୁଝାଏ ୟୁରୋପୀୟମାନଙ୍କ ଦ୍ୱାରା ଏସିଆ ଓ ଆଫ୍ରିକାର ଜନଗଣଙ୍କ ଉପରେ ଅର୍ଥନୀତିକ ଓ ରାଜନୀତିକ କର୍ତ୍ତୃତ୍ୱ ଜାହିର୍ ।

ବିଂଶ ଶତାବ୍ଦୀର ମଧ୍ୟଭାଗରୁ ଏସିଆ ଓ ଆଫ୍ରିକାର ଉପନିବେଶମାନେ ୟୁରୋପୀୟମାନଙ୍କ କର୍ତ୍ତୃତ୍ୱରୁ ମୁକ୍ତ ହେବାକୁ ଆରମ୍ଭ କଲେ ଓ ସମ୍ପ୍ରତି କାଁ ଭାଁ କେତୋଟି ଅଞ୍ଚଳକୁ ବାଦ୍ ଦେଲେ ଏସିଆ ଓ ଆଫ୍ରିକାର ଅଧିକାଂଶ ଦେଶ ରାଜନୀତିକ ସ୍ୱାଧୀନତା ହାସଲ କରିସାରିଛନ୍ତି ।

କିନ୍ତୁ ଉପନିବେଶବାଦର ବିଲୋପ ଘଟି ନାହିଁ । ଏହା ଭିନ୍ନ ଭିନ୍ନ ରୂପରେ ପୁଣି ଅଙ୍କୁରିତ ହେଉଛି ଏସିଆ ଓ ଆଫ୍ରିକାର ମାଟିରେ ।

ଏଇ ଉପନିବେଶବାଦର ଗୋଟିଏ ରୂପ ହେଲା 'ଫ୍ରାଙ୍କୋଫୋନି' । ଆଫ୍ରିକା ମହାଦେଶରେ ୟୁରୋପୀୟମାନେ ପାଦଦେବା ପର୍ଯ୍ୟନ୍ତ ଆଫ୍ରିକାନ୍‌ମାନଙ୍କର ନ ଥିଲା ଲିପି ବା ଲିଖିତ ସାହିତ୍ୟ । ସେମାନଙ୍କର ଥିଲା କେବଳ ଅଗଣିତ ଉପଭାଷା ବା ଡାଏଲେକ୍ଟ । ଏଇ ଉପଭାଷାଭାଷୀ ଲୋକଙ୍କର ସଂଖ୍ୟାର ସ୍ୱଳ୍ପତା ଏଇ ଉପଭାଷାମାନଙ୍କରେ ଲିଖିତ ସାହିତ୍ୟ ସୃଷ୍ଟି କରିବାରେ ପ୍ରଧାନ ଅନ୍ତରାୟ । ତେଣୁ ଆଫ୍ରିକାନ୍‌ମାନେ ସେମାନଙ୍କ ସାହିତ୍ୟ ସୃଷ୍ଟିର ମାଧ୍ୟମ ରୂପେ ସ୍ୱାଭାବିକ ଭାବେ ଗ୍ରହଣ କରିନେଲେ ସେମାନଙ୍କ ୟୁରୋପୀୟ ଶାସକମାନଙ୍କ ଭାଷା – ଇଂରାଜୀ, ଫରାସୀ ବା ପର୍ତ୍ତୁଗୀଜ୍ । ସମୟକ୍ରମେ ସେମାନେ ନିଜ ନିଜ ଦେଶରୁ ହଟାଇ ଦେଲେ ୟୁରୋପୀୟ ଶକ୍ତିକୁ, କିନ୍ତୁ ଗ୍ରହଣ କରିନେଲେ ୟୁରୋପୀୟ ଭାଷା ଓ ସାହିତ୍ୟର ପରମ୍ପରା ।

ଆଜି ତେଣୁ ଆଫ୍ରିକାର ସାହିତ୍ୟ କହିଲେ ମୁଖ୍ୟତଃ ବୁଝାଏ ଇଂରାଜୀ, ଫରାସୀ ବା ପର୍ତ୍ତୁଗୀଜ୍ ଭାଷାରେ ଆଫ୍ରିକାନ୍‌ମାନଙ୍କ ଦ୍ୱାରା ବିଗତ ଏକ ଶହ ବର୍ଷ ମଧ୍ୟରେ ରଚିତ ସାହିତ୍ୟ । ଏଇ ଭାଷା ଓ ସାହିତ୍ୟମାନଙ୍କ କେନ୍ଦ୍ର କିନ୍ତୁ ୟୁରୋପ୍, ଆଫ୍ରିକା ନୁହେଁ । ଆଫ୍ରିକାନ୍‌ମାନଙ୍କ ଦ୍ୱାରା ଲିଖିତ ଇଂରାଜୀ ସାହିତ୍ୟର ସର୍ବବୃହତ୍ ପ୍ରକାଶକ ଲଣ୍ଡନ୍‌ର ହାଇନ୍‌ମ୍ୟାନ୍ । ସେହିପରି ଆଫ୍ରିକାନ୍‌ମାନଙ୍କ ଦ୍ୱାରା ଲିଖିତ ଫରାସୀ ସାହିତ୍ୟର ମୁଖ୍ୟ ପ୍ରକାଶକମାନଙ୍କ ସ୍ଥିତି ପ୍ୟାରିସ୍‌ରେ ।

ଏଇ ପରିପ୍ରେକ୍ଷୀରେ ବୁଝିବା କଠିନ ନୁହେଁ, ଆଫ୍ରିକାର ସାହିତ୍ୟ ଓ ପ୍ରକାଶନକୁ ନିୟନ୍ତ୍ରଣ କରନ୍ତି ୟୁରୋପୀୟମାନେ ଏବଂ ସାହିତ୍ୟ ଓ ପ୍ରକାଶନକୁ ନିୟନ୍ତ୍ରଣ କରୁଥିବା ଶକ୍ତିଙ୍କ ସର୍ତ୍ତ ଆଫ୍ରିକାର ଲେଖକମାନେ ମାନି ନେବାରେ ଆଶ୍ଚର୍ଯ୍ୟକର କିଛି ନାହିଁ !

ସେଦିନ ଆଫ୍ରିକା ସେଣ୍ଟର୍‌ରେ ମଙ୍ଗୋ ବେତିଙ୍କ ନିଜ ଜୀବନର ଅନୁଭୂତି ବର୍ଣ୍ଣନା ଥିଲା ଆଫ୍ରିକା ମାଟିରେ ନୂଆ ରୂପରେ ମୁଣ୍ଡ ଟେକୁଥିବା ୟୁରୋପୀୟ ଉପନିବେଶବାଦ ବିରୁଦ୍ଧରେ ଏକ ଦୃପ୍ତ ପ୍ରତିବାଦ !



# ଗାନ୍ଧୀ–ଶିକ୍ଷ

ଲଣ୍ଡନ୍ ୱାର୍‌ନର୍ ସିନେମା ହଲ୍‌ରେ ନଭେମ୍ବର ୧୯୮୩ରେ 'ଗାନ୍ଧୀ' ଚଳଚ୍ଚିତ୍ରଟି ଦେଖିବାର ସୁଯୋଗ ମିଳିଲା । ଚଳଚ୍ଚିତ୍ରଟି ଅନେକ ଦିନ ଧରି ଲଣ୍ଡନ୍‌ରେ ଚାଲିସାରିଥାଏ । ତେଣୁ ଦର୍ଶକମାନଙ୍କ ସଂଖ୍ୟା ସ୍ୱାଭାବିକଭାବେ ହୋଇ ଆସିଥାଏ କ୍ଷୀଣ । ସେଦିନ ଦର୍ଶକମାନଙ୍କ ମଧ୍ୟରେ ଇଂରେଜମାନଙ୍କ ଛଡ଼ା ଅନ୍ୟ ଜଣେ ଭାରତୀୟ ଓ ଗୋଟିଏ ଆଫ୍ରିକୀୟ ଦମ୍ପତି ଉପସ୍ଥିତ ଥିବା ଲକ୍ଷ୍ୟ କଲି ।

ଗାନ୍ଧୀ–ଚଳଚ୍ଚିତ୍ରଟି ସମ୍ପର୍କରେ କହିବା ନିଷ୍ପ୍ରୟୋଜନ । ଭାରତରେ ଏବଂ ଓଡ଼ିଶାରେ ଉଭୟ ହିନ୍ଦୀ ଓ ଇଂରାଜୀ ଭାଷାରେ ମାସ ମାସ ବ୍ୟାପୀ ପ୍ରଦର୍ଶିତ ହୋଇସାରିଛି ଚିତ୍ରଟି । ତେବେ ଲଣ୍ଡନ୍‌ରେ 'ଗାନ୍ଧୀ' ଚଳଚ୍ଚିତ୍ରଟି ପ୍ରଦର୍ଶିତ ହେବାର କିଛି ବିଶେଷ ଗୁରୁତ୍ୱ ଥିବାପରି ମନେହୁଏ । କାରଣ ଗାନ୍ଧିଜୀଙ୍କ ବ୍ୟକ୍ତିତ୍ୱ ଓ ନେତୃତ୍ୱର ବିବର୍ତ୍ତନରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଯୋଗାଇଥିଲେ ଲଣ୍ଡନ୍ ଏବଂ ଇଂରେଜଜାତି । ଲଣ୍ଡନ୍‌ରେ ଗାନ୍ଧିଜୀ ଲାଭ କରିଥିଲେ ଆଇନ୍‌ଶିକ୍ଷା ଏବଂ ଲଣ୍ଡନ୍‌ରେ ଅବସ୍ଥାନ କାଳରେ ହିଁ ଇଂରେଜ ଚରିତ୍ରର ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିଥିଲେ । ଆଇନ୍ ବ୍ୟବସାୟ ଉଦ୍ଦେଶ୍ୟରେ ଦକ୍ଷିଣ ଆଫ୍ରିକାରେ ପାଦ ଦେଇ ସେ ଇଂରେଜମାନଙ୍କଦ୍ୱାରା ବର୍ଣ୍ଣ ବିଭେଦର ଶିକାର ହେଲେ ଏବଂ ସେହି ଦକ୍ଷିଣ ଆଫ୍ରିକା ମାଟିରେ ହିଁ ଜନ୍ମନେଲା ସତ୍ୟାଗ୍ରହ ଏବଂ ଗାନ୍ଧିଜୀଙ୍କ ଯୁଗାନ୍ତକାରୀ ନେତୃତ୍ୱ ।

ଲଣ୍ଡନ୍‌ର ୱାର୍‌ନର୍ ହଲ୍‌ରେ ତେଣୁ ଇଂରେଜ ଦର୍ଶକମାନଙ୍କ ଗହଣରେ ଇଂରେଜମାନଙ୍କ ବିରୁଦ୍ଧରେ ଭାରତର ମୁକ୍ତି ଆନ୍ଦୋଳନର କାହାଣୀ ପ୍ରତ୍ୟକ୍ଷ କରିବା ମୋ ପାଇଁ ଥିଲା ଏକ ବିଚିତ୍ର ଅନୁଭୂତି । ଯେଉଁମାନେ ଦିନେ ଗାନ୍ଧିଜୀଙ୍କୁ ହାତକଡ଼ି ପିନ୍ଧାଇ ଅପରାଧୀ ପରି ରାସ୍ତାରେ ଚଲାଇ ଚଲାଇ ନେଉଥିଲେ ଏବଂ ଗାନ୍ଧିଜୀଙ୍କ ସମର୍ଥକମାନଙ୍କୁ ଲାଠି–ଗୁଳିରେ ରକ୍ତାକ୍ତ କରୁଥିଲେ, ସେହି ଇଂରେଜମାନଙ୍କ ସମ୍ମୁଖରେ ସେ ଆଜି ପ୍ରତିଭାତ ହେଉଥିଲେ ଶତାବ୍ଦୀର ଶ୍ରେଷ୍ଠ ମହାମାନବ ରୂପେ । ତା' ପୁଣି ଚଳଚ୍ଚିତ୍ର ପର୍ଦ୍ଦାରେ ରୂପାୟିତ କରିଥିଲେ ଜଣେ ଇଂରେଜ ନିର୍ଦ୍ଦେଶକ – ରିଚାର୍ଡ୍ ଆଟେନ୍‌ବରା । × × ×

ଇତିହାସ କିନ୍ତୁ ଏକ ଗୋଲକ ଧନ୍ଦା । ଇଂରେଜ ତଥା ଉପନିବେଶବାଦୀ ଶକ୍ତିଙ୍କ ହୃଦୟ ପରିବର୍ତ୍ତନ ଥିଲା ଗାନ୍ଧିଜୀଙ୍କ ଅହିଂସା ଆନ୍ଦୋଳନର ଆଭିମୁଖ୍ୟ । ସେ ବୋମା–ତରବାରିରେ ବିଶ୍ୱାସ କରୁ ନ ଥିଲେ, ବିଶ୍ୱାସ କରୁଥିଲେ ହୃଦୟ ପରିବର୍ତ୍ତନରେ । ତାଙ୍କର ସଂଗ୍ରାମ ଆରମ୍ଭ ହୋଇଥିଲା ଦକ୍ଷିଣଆଫ୍ରିକାରେ – ଚାଲୁ ରହିଥିଲା ନାଥୁରାମ ଗଡ୍‌ସେର ଗୁଳିଚୋଟରେ ସହିଦ ହେବାଯାଏଁ । କିନ୍ତୁ ଇଂରେଜ ସମାଜ କିମ୍ବା ଦକ୍ଷିଣ ଆଫ୍ରିକାର ଗୋରା ସମାଜର ହୃଦୟ କେତେ ପରିମାଣରେ ପରିବର୍ତ୍ତନ କରିପାରିଛନ୍ତି ଗାନ୍ଧିଜୀ ?

ଆଜି ମଧ ଦକ୍ଷିଣ ଆଫ୍ରିକାର ସରକାରୀ ନୀତି 'ବର୍ଣ୍ଣ-ବୈଷମ୍ୟ' । ଅର୍ଥାତ୍ ଗୋରା ମଣିଷଠାରୁ କଳାମଣିଷର ନିକୃଷ୍ଟତା । ଲଣ୍ଡନ୍‌ରେ ପରିସ୍ଥିତି ଦକ୍ଷିଣ ଆଫ୍ରିକାଠାରୁ ଖୁବ୍ ବେଶୀ ଭିନ୍ନ ନୁହେଁ ।

ବିଲାତର ଅବଶ୍ୟ ସରକାରୀ ନୀତି ନୁହେଁ ବର୍ଣ୍ଣବୈଷମ୍ୟ । ଆଇନ୍ ଦୃଷ୍ଟିରେ ଗୋରା ଓ କଳାମଣିଷ ମୋଟାମୋଟି ସମାନ । କିନ୍ତୁ ଆଇନ୍ ତ ସରକାରୀ ଫାଇଲ୍ ବା କୋର୍ଟ୍ କଚେରିର ବ୍ୟାପାର । ସାଧାରଣ ଇଂରେଜଟି କଳା ଓ ଗୋରା ମଣିଷକୁ ସମାନ ଦୃଷ୍ଟିରେ ଦେଖିବାରେ କେତେଦୂର ସମର୍ଥ ? ଚଳଚ୍ଚିତ୍ର ପର୍ଦାରେ ଗାନ୍ଧିଜୀଙ୍କ ମହନୀୟତାକୁ ସ୍ୱୀକାର କରିବାରେ ଇଂରେଜ ଲୋକଟି ପଶ୍ଚାତ୍‌ପଦ ହୋଇ ନାହିଁ । କିନ୍ତୁ ପଶ୍ଚାତ୍‌ପଦ ହୋଇଛି ନିଜର ପଡ଼ୋଶୀ କଳା ମଣିଷଟିକୁ ନିଜର ସମକକ୍ଷ ବୋଲି ଗ୍ରହଣ କରିନେବାରେ ।

ବ୍ୟବସାୟିକ ସଫଳତା ତଥା ଆନ୍ତର୍ଜାତିକ ସ୍ୱୀକୃତି ଯଥେଷ୍ଟ ମିଳିପାରିଛି ଗାନ୍ଧୀ ଚଳଚ୍ଚିତ୍ରକୁ । କିନ୍ତୁ ଆଜିର ଗଣମାଧ୍ୟମ ଅର୍ଥାତ୍ ସମ୍ବାଦପତ୍ର, ଟେଲିଭିଜନ୍, ଚଳଚ୍ଚିତ୍ରର ଅନ୍ୟ କିଛି ଧ୍ୟେୟ ଅଛି କି ବ୍ୟବସାୟ ଓ ସ୍ୱୀକୃତି ବାହାରେ ? ଯଦି ସେପରି କିଛି ଧ୍ୟେୟ ଥାଏ, ତେବେ ଗାନ୍ଧୀ ଚଳଚ୍ଚିତ୍ର କେତେଦୂର ସଫଳ ?

ଯେଉଁ ସମୟରେ ଲଣ୍ଡନ୍‌ରେ ପ୍ରଦର୍ଶିତ ହେଉଥିଲା, 'ଗାନ୍ଧୀ' ଚଳଚ୍ଚିତ୍ର, ସେହି ସମୟରେ ସମ୍ବାଦ ମିଳୁଥିଲା ଲଣ୍ଡନ୍‌ରେ ରାସ୍ତା ଓ ଅଣ୍ଡର୍‌ଗ୍ରାଉଣ୍ଡ୍ ରେଲ୍‌ଷ୍ଟେସନ୍‌ମାନଙ୍କରେ କଳାଲୋକଙ୍କ ଉପରେ ସ୍କିନ୍-ହେଡ୍‌ମାନଙ୍କ ଆକ୍ରମଣର । ଏଇ ସ୍କିନ୍ ହେଡ୍‌ମାନେ ଦଳେ ସଙ୍ଗଠିତ ବେକାର ଇଂରେଜ ଯୁବକ । ସେମାନେ ମୁଣ୍ଡ ଲଣ୍ଡା ରଖନ୍ତି ଓ ବିଶ୍ୱାସ କରନ୍ତି ଯେ ସେମାନଙ୍କ ବେକାରୀ ପାଇଁ ଦାୟୀ ଇଂଲାଣ୍ଡରେ ରହୁଥିବା କଳା ଅର୍ଥାତ୍ ଏସୀୟ ବଂଶୋଦ୍ଭବ ଲୋକେ । ସେମାନଙ୍କ ଆକ୍ରମଣର ପରିଣତିରେ କଳାଲୋକଙ୍କ ପ୍ରତି-ଆକ୍ରମଣର ସମ୍ବାଦ ମଧ କେବେ କିପରି ଶୁଣିବାକୁ ମିଳୁଥାଏ ।

'ଗାନ୍ଧୀ' ଚଳଚ୍ଚିତ୍ରର ଜନପ୍ରିୟତା ତଥା ସ୍ୱୀକୃତି ଏବଂ ଲଣ୍ଡନ୍‌ରେ କଳା ଲୋକଙ୍କ ଉପରେ ଇଂରେଜମାନଙ୍କ ସଂଘବଦ୍ଧ ଆକ୍ରମଣ – ଉଭୟର ସହାବସ୍ଥାନ ଗାନ୍ଧିଜୀ ତଥା ମଣିଷ ଜାତିର ଇତିହାସ ପ୍ରତି ଏକ ପ୍ରଚଣ୍ଡ ବିଦ୍ରୂପ ! ଅବସାଦ ଆସେ – ଗାନ୍ଧିଜୀଙ୍କ ଆଦର୍ଶ ଇଂରେଜମାନଙ୍କୁ ଯେପରି ସାମାନ୍ୟ ବି ସ୍ପର୍ଶ କରିନାହିଁ ! 'ଗାନ୍ଧୀ' ଓ 'ଗାନ୍ଧୀବାଦ' ଉପରେ ନିର୍ମିତ ଏହି ଚଳଚ୍ଚିତ୍ର ଯେପରି କେବଳ ଏକ 'ଶିଳ୍ପ' – ସବୁ ଶିଳ୍ପ ପରି ଏଇ ଶିଳ୍ପରେ ଉଦ୍ଦେଶ୍ୟ ମଧ କିଛି ବ୍ୟବସାୟିକ ସଫଳତା; କୌଣସି ମହତ୍ତର ଉଦ୍ଦେଶ୍ୟ ଏଥିରୁ ଆଶା କରିବା ବୃଥା ! × × ×

ଲଣ୍ଡନ୍‌ରେ 'ଗାନ୍ଧୀ' ଚଳଚ୍ଚିତ୍ର ପ୍ରଦର୍ଶିତ ହେଉଥିବା ସମୟରେ ଲଣ୍ଡନ୍‌ରେ ଅଣ୍ଡର୍‌ଗ୍ରାଉଣ୍ଡ ରେଲଷ୍ଟେସନମାନଙ୍କରେ ଗାନ୍ଧିଜୀଙ୍କ ହସ ହସ ଛବି ଥିବା ପୋଷ୍ଟର୍‌ଟିଏମାନ ମଧ ଆଖିରେ ପଡୁଥିଲା । ପୋଷ୍ଟର୍‌ମାନେ ଘୋଷଣା କରୁଥିଲେ ଏହିପରି ଏକ ଶୁଭ-ସମ୍ବାଦ –

'ଲେଷ୍ଟର୍‌ସ୍କୋୟାର୍‌ରେ ଖୁବ୍ ଶୀଘ୍ର ଉନ୍ମୋଚିତ ହେବାକୁ ଯାଉଛି ନୂତନ ଗୋଟିଏ ରେଷ୍ଟୋରାଁ – 'ଗାନ୍ଧୀ' । ସକଳ ପ୍ରକାର ମଦ୍ୟପାନର ସୁବନ୍ଦୋବସ୍ତ କରିବା ଏହି ରେଷ୍ଟୋରାଁର ବିଶେଷତ୍ୱ ।'



## ପାଞ୍ଚଟି କ୍ଷୀର ବୋତଲ ଓ ନିଃସଙ୍ଗତା

ପ୍ରାୟ ଦଶବର୍ଷ ତଳେ ବି.ବି.ସି. ଟେଲିଭିଜନ୍‌ରୁ ପାଇଥିଲି ସମ୍ବାଦଟି ।

ମିଲ୍‌କ୍‌-ମ୍ୟାନ୍ ପ୍ରତିଦିନ ସକାଳେ ଜଣେ ବୁଢ଼ୀଙ୍କ ଦାଣ୍ଡକବାଟ ନିକଟରେ ରଖିଦେଇ ଯାଏ କ୍ଷୀର ବୋତଲଟି । ବୁଢ଼ୀ ଯଥାସମୟରେ କ୍ଷୀର ବୋତଲଟି ଭିତରକୁ ନିଅନ୍ତି ଓ ପରଦିନ ସକାଳେ ମିଲ୍‌କ୍‌-ମ୍ୟାନ୍ ସଂଗ୍ରହ କରିନିଏ କ୍ଷୀରଶୂନ୍ୟ ବୋତଲଟି । ରଖିଦିଏ ଆଉ ଗୋଟିଏ କ୍ଷୀରବୋତଲ ।

କ'ଣ ହେଲା କେଜାଣି, ମିଲ୍‌କ୍‌-ମ୍ୟାନ୍ ଲକ୍ଷ୍ୟ କଲା, କ୍ଷୀରବୋତଲମାନ ଆଉ ଘର ଭିତରକୁ ଯାଉ ନାହିଁ । ଦିନେ, ଦୁଇଦିନ, ତିନିଦିନ... । ପାଞ୍ଚଟି କ୍ଷୀରପୂର୍ଣ୍ଣ ବୋତଲ ଦାଣ୍ଡକବାଟ ନିକଟରେ ଥୁଆହେବା ପରେ ମିଲ୍‌କ୍‌ମ୍ୟାନ୍ କବାଟ ଠକ୍ ଠକ୍ କଲା । ବୁଢ଼ୀ ଘରଛାଡ଼ି ଆଉ କୁଆଡ଼େ ଚାଲି ଯାଇଛନ୍ତି ନା କ'ଣ ? କୌଣସି ଉତ୍ତର ଆସିଲା ନାହିଁ ଭିତରୁ ।

ପଡ଼ୋଶୀମାନେ ପହଞ୍ଚିଲେ । କବାଟ ଭଙ୍ଗା ହେଲା ।

ଶବଟି ପଡ଼ିଥିଲା ଚଟାଣ ଉପରେ । ଆପାତତଃ କିଛିଦିନ ତଳେ ମୃତ୍ୟୁ ଘଟିଥିଲା ବୁଢ଼ୀଙ୍କର ।

ଟେଲିଭିଜନ୍‌ର ସମ୍ବାଦ-ଘୋଷକ ଏହି ଦୁଃଖାବହ ଘଟଣାଟି ବର୍ଣ୍ଣନା କରି ଆବେଦନ କଲେ, 'ଆପଣଙ୍କ ଗୃହ ନିକଟରେ ଏକାକୀ ଜୀବନ କଟାଉଥିବା ଏମିତି ବୁଢ଼ାବୁଢ଼ୀମାନେ ରହୁଥିବେ ନିଶ୍ଚୟ । ଉତ୍ତମ ପଡ଼ୋଶୀ ଭାବରେ ଦୟା କରି ଅନ୍ତତଃ କେବେ କିପରି ସେମାନଙ୍କ ସୁଖ-ଦୁଃଖ ବୁଝନ୍ତୁ । ଛୁଟି ଦିନରେ ସପିଂ କରିବାକୁ ଯିବା ସମୟରେ ସେମାନଙ୍କ କବାଟ ଠକ୍ ଠକ୍ କରି ଅନ୍ତତଃ ପଚାରନ୍ତୁ – ଆପଣଙ୍କର କିଛି ସଉଦା ଆସିବ କି ? ଆପଣ କିଛି ସାହାଯ୍ୟ ଚାହାନ୍ତି କି ଆମଠାରୁ ?' × × ×

ଏ ଘଟଣାଟି ଘଟିବା ସମୟରେ ମୁଁ ରହୁଥିଲି ଇଂଲାଣ୍ଡର କ୍ୟାଣ୍ଟର୍‌ବରୀରେ । ମୋର ଲ୍ୟାଣ୍ଡ ଲେଡ଼ି ଶ୍ରୀମତୀ ହକିନ୍‌ସ୍ ରହୁଥାନ୍ତି ଏସେକ୍‌ସ୍‌ରେ । ବେଶ୍ କିଛି ସମୟ ଡ୍ରାଇଭିଂ

କରି ଶ୍ରୀମତୀ ହକିନ୍‌ସ୍ ତାଙ୍କ ସ୍ୱାମୀଙ୍କ ସହିତ ମଝିରେ ମଝିରେ ଆସନ୍ତି କ୍ୟାଣ୍ଟର୍‌ବରୀ – ତାଙ୍କ ମାଆଙ୍କୁ ଦେଖିବାକୁ । କେବେ କିପରି ଛୁଟି ଦିନରେ ହକିନ୍‌ସ୍-ଦମ୍ପତି ମାଆଙ୍କ ନିକଟକୁ ଆସନ୍ତି; ତାଙ୍କ ସଙ୍ଗେ ଚା' ପିଅନ୍ତି; ତାଙ୍କର ଭଲମନ୍ଦ ବୁଝନ୍ତି ଓ ତା' ପରେ ଚାଲିଯା'ନ୍ତି ଏସେକ୍‌ସ୍ ।

ମାଆଙ୍କ ବୟସ ଅଶୀ; ସେ ପ୍ରାୟ ଅନ୍ଧୁଣୀ । ଏକାକିନୀ ରହୁଥା'ନ୍ତି କୌଣସି ଓଲ୍‌ଡ୍‌ମେନ୍ସ୍ ହୋମ୍‌ରେ । ଝିଅ-ଜୋଇଁଙ୍କଠାରୁ କେତେଶହ ମାଇଲ୍ ବ୍ୟବଧାନରେ । × × ×

କୁହାଯାଏ – ଇଂରେଜ ସମାଜ ରକ୍ଷଣଶୀଳ । ପ୍ରାଚୀନ ପରମ୍ପରା, ଇତିହାସ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ, କଳା, ସାହିତ୍ୟ କୃତିଗୁଡ଼ିକର ସଂଗ୍ରହ ଓ ସଂରକ୍ଷଣରେ ଇଂରେଜମାନଙ୍କ ଆଗ୍ରହ ଯଥେଷ୍ଟ । କିନ୍ତୁ ଆଶ୍ଚର୍ଯ୍ୟ ଯେ ଏପରି ସମାଜରେ ବୁଢ଼ା-ବୁଢ଼ୀମାନଙ୍କୁ ଛିଣ୍ଡା ଗାଲିଚା ବା ଭଙ୍ଗା କପ୍-ପ୍ଲେଟ୍ ପରି ଜମା କରି ଦିଆଯାଏ ଓଲ୍‌ଡ୍‌ମେନ୍‌ସ୍ ହୋମ୍‌ରେ । ଆପଣଙ୍କ ସନ୍ତାନମାନେ ନାବାଳକ ଥିବାଯାଏଁ ଆପଣ ସ୍ତ୍ରୀ-ସନ୍ତାନମାନଙ୍କ ସହିତ ପାରିବାରିକ ଜୀବନ ଉପଭୋଗ କଲେ । ସନ୍ତାନମାନେ ସାବାଳକ ହେବାମାତ୍ରେ ଚାକିରିଟିଏ ଓ ସଙ୍ଗୀ ବା ସଙ୍ଗିନୀଟିଏ ଯୋଗାଡ଼ କରି ଆପଣଙ୍କୁ ଛାଡ଼ି ଉଠିଗଲେ ସ୍ୱତନ୍ତ୍ର ଫ୍ଲାଟ୍ ବା ଗୃହକୁ । ଅବସର ପରେ ଆପଣଙ୍କ ଆର୍ଥିକ, ଶାରୀରିକ ଶକ୍ତି ସଂକୁଚିତ ହେଲା । ଆପଣ ବର୍ତ୍ତମାନ ଆଶ୍ରୟ ନେଲେ ଓଲ୍‌ଡ୍‌ମେନ୍‌ସ୍ ହୋମ୍‌ରେ । ସେଇଠାରେ ଅନ୍ୟ ବୁଢ଼ା-ବୁଢ଼ୀଙ୍କ ସଙ୍ଗେ ଆପଣ ଅପେକ୍ଷା କଲେ ମୃତ୍ୟୁକୁ । ଖାଦ୍ୟ, ଚିକିତ୍ସା ସବୁର ଦାୟିତ୍ୱ ବର୍ତ୍ତମାନ ସରକାରଙ୍କର । କେବେ କିପରି ଅବଶ୍ୟ ଆପଣଙ୍କ ସନ୍ତାନ-ସନ୍ତତି ଆପଣଙ୍କୁ ସାକ୍ଷାତ କରିବାରେ ବାଧା ନାହିଁ... ।

'ନିଜ ବୁଢ଼ା ବାପାମାଆଙ୍କୁ ଆପଣମାନେ ନିଜ ପାଖରେ ରଖନ୍ତି ନାହିଁ କାହିଁକି ? ଆପଣଙ୍କ ସାମାଜିକ ବ୍ୟବସ୍ଥାର ଏହା ଏକ ଦୁର୍ବଳତା ନୁହେଁ କି ?' ଜଣେ ଇଂରେଜ ଭଦ୍ରମହିଳାଙ୍କୁ ପଚାରିଥିଲି ।

ମହିଳାଙ୍କ ନିକଟକୁ ଯାଇଥିଲି ତାଙ୍କର ପୁରୁଣା 'ପ୍ରାମ୍'ଟି କିଣିବାପାଇଁ – ମୋର ସଦ୍ୟଜାତ ପୁଅ ପାଇଁ । ସେ ମୋତେ କଫି ପିଆଇଲେ ଓ ମନ୍ତବ୍ୟ ଦେଲେ – 'ଆମ ସମାଜରେ ବୁଢ଼ା-ବୁଢ଼ୀଙ୍କୁ ଯେପରି ଅବହେଳା କରାଯାଏ, ସେଥିରେ ମୁଁ ନିଜେ ଦୁଃଖିତ । ଆପଣଙ୍କ ସମାଜକୁ ସେଥିପାଇଁ ମୁଁ ପସନ୍ଦ କରେ ।' × × ×

ପାର୍ଥକ୍ୟଟି ଅବଶ୍ୟ କେବଳ ଭାରତୀୟ ଓ ଇଂରେଜ ସମାଜ ମଧ୍ୟରେ ନୁହେଁ, ପାରମ୍ପରିକ ଓ ଶିଳ୍ପୋନ୍ନତ ସମାଜ ମଧ୍ୟରେ । ପାରମ୍ପରିକ ସମାଜରେ ବୟସ ପ୍ରତି ସମ୍ମାନ ଓ ସମ୍ଭ୍ରମତା ପ୍ରତିଫଳିତ ହୁଏ ବୁଢ଼ାବୁଢ଼ୀଙ୍କ ପ୍ରତି ମନୋଭାବରେ । ଏପରି ସମାଜରେ ପାରିବାରିକ ବନ୍ଧନ, ଗୋଷ୍ଠୀଗତ ବନ୍ଧନ ନିବିଡ଼ । ବୁଢ଼ାବୁଢ଼ୀମାନେ ଯୌଥ ପରିବାରର ମୁରବୀ ।

ଶିକ୍ଷୋନ୍ନତ ସମାଜରେ କିନ୍ତୁ ବ୍ୟକ୍ତି ହିଁ ସର୍ବେସର୍ବା । ବ୍ୟକ୍ତିର ସ୍ୱାଧୀନତା, ବ୍ୟକ୍ତିର ଆନନ୍ଦ ଉପଭୋଗ ହିଁ ମୂଳକଥା, ପାରିବାରିକ ବନ୍ଧନ, ଗୋଷ୍ଠୀଗତ ବନ୍ଧନ ଶିଥିଳ । ବୁଢ଼ାବୁଢ଼ୀମାନେ ସନ୍ତାନସନ୍ତତିଙ୍କ ଉପରେ ଅନାବଶ୍ୟକ ବୋଝ – ଅତଏବ ସେମାନଙ୍କ ସ୍ଥାନ ପରିବାରରେ ନୁହେଁ; ଓଲ୍ଡ଼୍‌ମେନ୍‌ସ ହୋମ୍‌ରେ ।

ଶିଳ୍ପ ଓ ଆଧୁନିକତା ନାମରେ ଯୁକ୍ତି କରାଯାଇ ପାରେ – ବୁଢ଼ାବୁଢ଼ୀମାନେ ତରୁଣମାନଙ୍କ ପ୍ରଗତି ଓ ବିକାଶରେ ଅନ୍ତରାୟ । ପରିବାରର ଶାନ୍ତି ଓ ସମୃଦ୍ଧି ପାଇଁ ତେଣୁ ସେମାନେ ଓଲ୍ଡ଼୍‌ମେନ୍‌ସ୍ ହୋମ୍‌ରେ ରହିବା ହିଁ ବିଧେୟ । ବୁଢ଼ାବୁଢ଼ୀମାନେ ନିଜେ ମଧ୍ୟ ଏପରି ଦର୍ଶନରେ ବିଶ୍ୱାସ କରୁଥିବାର ଦୃଷ୍ଟାନ୍ତ ପ୍ରଚୁର ।

ଯୁକ୍ତିର ଭିତ୍ତିଭୂମି କିନ୍ତୁ ବୁଦ୍ଧି ଓ ସ୍ୱାର୍ଥ । ମଣିଷର ମୂଲ୍ୟବୋଧକୁ ଯୁକ୍ତିଦ୍ୱାରା ନୁହେଁ, ହୃଦୟ ଦ୍ୱାରା ହିଁ ପ୍ରତିଷ୍ଠିତ କରାଯାଇପାରେ । ହୃଦୟ କିନ୍ତୁ ଏପରି ଯୁକ୍ତିକୁ ଗ୍ରହଣ କରିନେବା ଏତେ ସହଜ ନୁହେଁ !

ବୁଢ଼ାବୁଢ଼ୀମାନଙ୍କୁ ଘରୁ ତଡ଼ି ଦେଇ ଇଂରେଜ ସମାଜ ଭୟଙ୍କର ଭାବରେ ସଙ୍କୁଚିତ କରିପକାଏ ନିଜର ପ୍ରଜ୍ଞା ଓ ମାନବିକତାର ପରିସୀମା । ଇଂରେଜ ଶିଶୁ ଓ କିଶୋରମାନଙ୍କ ଅନୁଭୂତିର ପରିସରକୁ ଆସେ ନାହିଁ, ଅଜା–ଆଈ, ଜେଜେବାପା–ଜେଜେମାଆଙ୍କ ସ୍ନେହ, ଆଦର, ଭୂତପ୍ରେତଙ୍କ କାହାଣୀ ବା ଢଗଢମାଳି । ଏପରି କାହାଣୀ ବା ଢଗଢମାଳି ଇଂରେଜ ଶିଶୁ ବା କିଶୋର ବହିରେ ପଢ଼େ ବା ଟେଲିଭିଜନରେ ଶୁଣେ । ମୁଦ୍ରିତ ଯାନ୍ତ୍ରିକ କାହାଣୀରେ କିନ୍ତୁ ନ ଥାଏ ସ୍ନେହ ବା ମାନବିକ ସ୍ପର୍ଶ । ଯେଉଁମାନେ ଏ କାହାଣୀକୁ ଦେଇ ପାରନ୍ତେ ପ୍ରାଣ ଓ ଉଷ୍ମତା, ସେମାନେ ପଡ଼ିରହନ୍ତି ଓଲ୍ଡ଼୍‌ମେନ୍‌ସ୍ ହୋମ୍‌ରେ – ଅନ୍ୟ ବୁଢ଼ାବୁଢ଼ୀଙ୍କ ଗହଣରେ । ନାତି–ନାତୁଣୀଙ୍କ ପାଇଁ ସେମାନଙ୍କ ହାହାକାର ମୃତ୍ୟୁରେ ହିଁ ବିଲୀନ ହୁଏ ଯାହା !! × × ×

ମଣିଷ ମଣିଷ ମଧ୍ୟରେ ନିହିତ ସ୍ୱାଭାବିକ ଓ ସ୍ୱଚ୍ଛନ୍ଦ ସମ୍ପର୍କରେ ଭଗ୍ନସ୍ତୂପ ଉପରେ ହିଁ ଗଢ଼ି ଉଠୁଚି ଆଜିର ଶିକ୍ଷୋନ୍ନତ ସମାଜ ଓ ସଭ୍ୟତା । ଏଇ ସଭ୍ୟତା ଚାକଚକ୍ୟମୟ ଓ ଆକର୍ଷଣୀୟ ନିଶ୍ଚୟ, କିନ୍ତୁ ଏଇ ସଭ୍ୟତାର ଇମାରତ୍ ଭିତରେ କୌଣସି କୋଠରିରେ ସଢ଼ୁଥାଏ ନିଃସହାୟା ବୁଢ଼ୀଟିଏର ଶବ ଓ ଅନ୍ୟ କେଉଁ କୋଠରିରେ ଅଶୀବର୍ଷର ଅନ୍ଧୁଣୀଟିଏ ଅହରହ ଅନାଇ ରହିଥାଏ ଅନ୍ଧାରକୁ – ଅନାଇଥାଏ ଶହ ଶହ ମାଇଲ୍ ଦୂରରେ ରହୁଥିବା ତା’ ଝିଅ–ଜୋଇଁଙ୍କ ଆସିବା ବାଟକୁ !!



# ନିଃସଙ୍ଗତାର ଅନ୍ୟ ଏକ କାହାଣୀ

ଜନ୍ ଲଏଡ୍‌ଙ୍କ ମୁଖରୁ ହିଁ ଶୁଣିଥିଲି ତାଙ୍କ ଜୀବନର କାହାଣୀ । ଓଠଚିପା ଇଂରେଜମାନେ ସାଧାରଣରତଃ ନିଜ ବ୍ୟକ୍ତିଗତ ଜୀବନ ସମ୍ପର୍କରେ ଗପନ୍ତି ନାହିଁ । ଜନ୍ କିନ୍ତୁ ଥିଲେ ଜଣେ ବ୍ୟତିକ୍ରମ । ହୁଏତ ଇଣ୍ଡୋଲୋଜୀ ବା ଭାରତୀୟ ବିଦ୍ୟାର ଅଧ୍ୟୟନ ଓ ଅଧ୍ୟାପନାରେ ଜୀବନର ପ୍ରାୟ ତିରିଶିବର୍ଷ ବିତିବା ପରେ ତାଙ୍କ ଚରିତ୍ର ମଧ୍ୟ ହୋଇପଡ଼ିଥିଲା କେତେକାଂଶରେ ଭାରତୀୟ ! ସେଇଥିପାଇଁ ନିଃସଙ୍କୋଚରେ ସେ ନିଜକୁ ପ୍ରକାଶ କରିଥିଲେ ମୋ ନିକଟରେ ।

'କେତେମାସ ହେଲା ଘୋର ମନସ୍ତାପରେ ମୁଁ ଦିନ କଟାଉଛି ।' – କହିଲେ ଜନ୍ ଲଏଡ୍ – 'ମୋ ଦ୍ୱିତୀୟ ସ୍ତ୍ରୀ ମୋତେ ଛାଡ଼ି କାନାଡ଼ା ଚାଲିଯିବା ଦିନୁଁ ।'

ଲଣ୍ଡନ୍ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ଜନ୍ ଲଏଡ୍ । ଅଳ୍ପ କେତେ ସପ୍ତାହ ହେଲା ତାଙ୍କ ସହ ପରିଚୟ ଓ ବନ୍ଧୁତା । ତାଙ୍କ ରୁମ୍‌ରେ ପ୍ରାୟ ନିୟମିତ କିଛି ସମୟ କଟାଉଥାଏ ମୁଁ । କିନ୍ତୁ ତାଙ୍କ ବ୍ୟକ୍ତିଗତ ଜୀବନ ସମ୍ପର୍କରେ ମୋର ଏଯାଏଁ କୌଣସି ଧାରଣା ହିଁ ନ ଥାଏ । ଆଜିର ସାକ୍ଷାତ ତେଣୁ ହୋଇ ଉଠିଲା ଅସ୍ୱାଭାବିକଭାବେ ସିରିୟସ୍ ଓ ବିଷାଦପୂର୍ଣ୍ଣ ।

ସେ ଗପୁଥିଲେ, 'ପ୍ରଥମ ସ୍ତ୍ରୀଙ୍କ ଆଡୁ ମୋର ଦୁଇଟି ପୁଅ । ଗୋଟିଏ ପୁଅ ଡାକ୍ତର ହୋଇସାରିଛି । ମାନସିକ ଉନ୍ନତିରେ ମନ୍ଥରତା ହେତୁ ଅନ୍ୟଟି ଅଛି ଗୋଟିଏ ମାନସିକ ଚିକିତ୍ସାଳୟରେ । ତା'ପାଇଁ ମୋତେ ନିୟମିତ ଟଙ୍କା ପଠାଇବାକୁ ପଡ଼େ ।'

'ପ୍ରଥମ ସ୍ତ୍ରୀଙ୍କୁ ଅବଶ୍ୟ ମୁଁ ନିଜେ ଛାଡ଼ପତ୍ର ଦେଇଥିଲି । କାରଣ ମୁଁ ପ୍ରେମରେ ପଡ଼ିଲି ଆଉ ଗୋଟିଏ ଝିଅର । ଆମ ସମାଜରେ ତ ଏମିତି ହୁଏ, ତୁମେ ଜାଣ... ।'

ଆଲୋଚନା ମଝିରେ ସେ ତିଆରି କଲେ କଳା କଫି – ବିୟୋଗାନ୍ତ ନାଟକ ମଝିରେ ବିଦୂଷକର ସଂକ୍ଷିପ୍ତ ଆବିର୍ଭାବ ପରି ! ଓ ତା'ପରେ ଫେରି ଆସିଲେ ମୂଳ କାହାଣୀକୁ ।

'ଦ୍ୱିତୀୟ ସ୍ତ୍ରୀଙ୍କୁ ଯଥାର୍ଥରେ ମୁଁ ଭଲ ପାଉଥିଲି । ତାଙ୍କଆଡୁ ଜନ୍ମ ହୋଇଥିବା ପୁଅଟିକୁ ମଧ୍ୟ । ଲଣ୍ଡନ୍‌ରେ ଫ୍ଲାଟ୍‌ଟିଏ ମଧ୍ୟ କିଣିଲି । ବେଶ୍ ସୁଖୀ ଥିଲି ମୁଁ । କିନ୍ତୁ...

'ହଠାତ୍ କିନ୍ତୁ ବ୍ରେକ୍‌ଫାଷ୍ଟ ଖାଉଥିବା ସମୟରେ ଦିନେ କହିଲେ, ମୋ ସ୍ତ୍ରୀ – 'ଏ ଦେଶ ମୋତେ ବିରକ୍ତିକର ଲାଗୁଛି । ମୁଁ ଚାଲିଯିବି କାନାଡ଼ା । କାନାଡ଼ାରେ ଏହା ମଧ୍ୟରେ ଚାକିରିଟିଏ ମଧ୍ୟ ଯୋଗାଡ଼ କରିସାରିଛି ମୁଁ । ...'

'ମୁଁ ଅବଶ୍ୟ ତାଙ୍କୁ ଅନେକ ବୁଝାଇଲି । ସେ କିନ୍ତୁ କିଛି ଶୁଣିଲେ ନାହିଁ । ବର୍ତ୍ତମାନ ମା'–ପୁଅ କାନାଡ଼ାରେ ।'

ଇଂରେଜମାନେ ଭାବପ୍ରବଣ ନୁହନ୍ତି ମୋଟେ । ଜନ୍ କିନ୍ତୁ ପ୍ରାୟ କାନ୍ଦ କାନ୍ଦ ସ୍ୱରରେ ଗପି ଚାଲିଥିଲେ, 'ବର୍ତ୍ତମାନ ମୁଁ ଭାବୁଛି – ଏତେ ବଡ଼ ଫ୍ଲାଟ୍‌ଟାଏ କିଣିଲି କାହିଁକି ? ଘର ସଫା କରିବ କିଏ – ଲନ୍‌ର ଯତ୍ନ ନେବ କିଏ ? ବେଳେବେଳେ ଭାବୁଛି – କାନାଡ଼ା ଚାଲିଯିବି । କିନ୍ତୁ ସେଠି ବା ମୁଁ କ'ଣ କରିବି ? କାନାଡ଼ାରେ ଇଣ୍ଡୋଲୋଜୀରେ ମୋତେ ଚାକିରିଟିଏ ମିଳିବ କାହୁଁ ? ତେଣୁ ଏକୁଟିଆ ଏଠି ପଡ଼ିରହିବା ଛଡ଼ା ଅନ୍ୟ ଉପାୟ ନାହିଁ ।

'ଫ୍ଲାଟ୍‌କୁ ଫେରିଲେ ଖୋଲା ଆକାଶ ବା ରାସ୍ତାକୁ ଚାହିଁ ବସୁଛି ଘଣ୍ଟା ଘଣ୍ଟା । ଇଚ୍ଛା ହେଉଛି, କେହି ଥା'ନ୍ତା, ଘରକୁ ଫେରିଲେ ଅନ୍ତତଃ ବଢ଼ାଇ ଦିଅନ୍ତା କପ୍‌ଟିଏ ଚା'; ଦୁଇ ହାତରେ ଥରେ ଆଲିଙ୍ଗନ କରି ନିଅନ୍ତା... ।

'ପଡ଼ୋଶୀମାନେ ଅବଶ୍ୟ ଲଗାଇଛନ୍ତି, ଜନ୍, ତୁମେ ଆଉଥରେ ବାହା ହୋଇ ପଡ଼ିବା ଉଚିତ । ତୁମ ଫ୍ଲାଟ୍‌ର କେହି ଯତ୍ନ ନେବାତ ନିହାତି ଦରକାର । କିନ୍ତୁ ମୋର କ'ଣ ଆଉ ବୟସ ଅଛି ? ଅନୁଭୂତି ତ ଯଥେଷ୍ଟ ହେଲା !'

କଫି ସରି ଆସିଥିଲା । ଜନ୍‌ଙ୍କ ଓଠରେ ଦୁଃଖ ଓ ନିଃସଙ୍ଗତାର ମଳିନ ହସଟିଏ !!

× × ×

ଇସାବେଲା ହେ–ଉଡ୍ ଜଣେ ସମ୍ଭ୍ରାନ୍ତ ଉଚ୍ଚଶିକ୍ଷିତା ଭଦ୍ରମହିଳା । ବିଶ୍ୱବିଦ୍ୟାଳୟ କାର୍ଯ୍ୟରୁ ଅବସର ନେବା ପରେ ସମ୍ପ୍ରତି ସେ ଇଂଲାଣ୍ଡର ବ୍ରାଇଟନ୍ ଅଞ୍ଚଳରେ କ୍ଷୁଦ୍ର ଗ୍ରାମଟିରେ ନିଃସଙ୍ଗ ଜୀବନଯାପନ କରୁଛନ୍ତି । ନିଃସଙ୍ଗ – କାରଣ ତାଙ୍କ ନିକଟରେ ନାହାନ୍ତି ଆଉ କେହି । ବହୁ ବର୍ଷ ହେଲା ତାଙ୍କ ସହିତ ମୋର ପରିଚୟ ଓ ଘନିଷ୍ଠତା ସତ୍ତ୍ୱେ ମୁଁ ତାଙ୍କୁ କେବେ ତାଙ୍କ ବ୍ୟକ୍ତିଗତ ଜୀବନ ସମ୍ପର୍କରେ ପଚାରି ନାହିଁ; ସେ ମଧ୍ୟ କେବେ ସ୍ୱଇଚ୍ଛାରେ ଜଣାଇ ନାହାନ୍ତି ତାଙ୍କ ଜୀବନର କାହାଣୀ । ତେବେ ଅନ୍ୟମାନଙ୍କଠାରୁ ଶୁଣିଛି, କେବେ ଅତୀତରେ ସେ ବିବାହ କରିଥିଲେ ଓ ହୋଇଥିଲେ ସ୍ୱାମୀ–ପରିତ୍ୟକ୍ତା । ତାଙ୍କର ସନ୍ତାନ–ସନ୍ତତି ନାହାନ୍ତି । ସମଗ୍ର ଜୀବନ ସେ ଅତିବାହିତ କରିଛନ୍ତି ଏକାକିନୀ – କାର୍ଯ୍ୟ କରିଛନ୍ତି ଇଂଲାଣ୍ଡ, ଆମେରିକା ଓ ଆଫ୍ରିକାରେ । ଶିକ୍ଷା, ଗବେଷଣା, ଗ୍ରନ୍ଥ ପ୍ରଣୟନ – ଏହାରି ମଧ୍ୟରେ ହୁଏତ ସେ ଭୁଲିଯିବାକୁ ଉଦ୍ୟମ କରିଛନ୍ତି ଦୀର୍ଘ ଜୀବନର ନିଃସଙ୍ଗତା !

ମାର୍ଲିନ୍ ରହନ୍ତି ଲଣ୍ଡନ୍‌ରେ ଗ୍ରୀନ୍‌ପାର୍କ୍ ଅଞ୍ଚଳରେ । ଥରେ ତାଙ୍କ ଗୃହକୁ ଡିନର୍ ପାଇଁ ନିମନ୍ତ୍ରଣ କରିଥିଲେ । ନିମନ୍ତ୍ରିତମାନଙ୍କ ମଧ୍ୟରେ ଥିଲେ ଶିଳ୍ପୀ, କଣ୍ଢେଇନାଚ ବିଶେଷଜ୍ଞ, ବାରିଷ୍ଟର୍ ପ୍ରଭୃତି । ସେଇଠି ଜାଣିବାକୁ ପାଇଲି ସେ ମଧ୍ୟ ସ୍ୱାମୀ–ପରିତ୍ୟକ୍ତା । ତାଙ୍କର ଗୋଟିଏ ବୋଲି ଝିଅ – ବିବାହ ପରେ ରହୁଛି ଅଷ୍ଟ୍ରେଲିଆରେ । ପ୍ରାୟ ଦୁଇମାସ ପରେ ସେ ଆଶା କରୁଛି ତା'ର ପ୍ରଥମ ସନ୍ତାନ । ନାତି ବା ନାତୁଣୀ ଦେଖିବା ଆଶାରେ ମାର୍ଲିନ୍ ଅଷ୍ଟ୍ରେଲିଆ ଯିବାର ପରିକଳ୍ପନା କରୁଥା'ନ୍ତି । ଡିନର୍ ଟେବୁଲ୍‌କୁ ଘେରି ବସିଥିବା ଅତିଥିମାନଙ୍କୁ ଦେଖି ଉଲ୍ଲସିତ ହୋଇ ବାରମ୍ବାର କହୁଥାନ୍ତି, 'ଚମତ୍କାର ! ପରିବାରଟିଏ ଏକାଠି ହେବାପରି ଲାଗୁଛି !'

ଜର୍ଜ୍‌ଙ୍କୁ କେବେ କେମିତି ଦେଖିବାକୁ ମିଳେ ଲଣ୍ଡନ୍‌ରେ ତାଙ୍କ ଭାଇ ଜେଫ୍ରିଙ୍କ ଫ୍ଲାଟ୍‌ରେ । ଜର୍ଜ୍ ବ୍ୟାଗ୍‌ରୁ ବାହାର କରନ୍ତି ଫ୍ରେଞ୍ଚ୍ ବା ଇଟାଲିଆନ୍ ଶେରୀ ବୋତଲଟିଏ । ଦୁଇଭାଇ ଶେରୀ ପିଅନ୍ତି, ଲଞ୍ଚ୍ ବା ଡିନର୍ ଖାଆନ୍ତି । ତା'ପରେ ଜର୍ଜ୍ ବାହାରନ୍ତି ଲଣ୍ଡନ୍‌ରୁ ଅକ୍ସଫୋର୍ଡ୍ ।

ଜର୍ଜ୍ ଓ ଜେଫ୍ରି ଉଭୟେ ଅବସରପ୍ରାପ୍ତ । ଉଭୟଙ୍କର ଆର୍ଥ୍ରାଇଟିସ୍ - ଚାଲିବାରେ କଷ୍ଟ ଅନୁଭବ କରନ୍ତି । ଜର୍ଜ୍‌ଙ୍କ ସ୍ତ୍ରୀ ତାଙ୍କୁ ପରିତ୍ୟାଗ କରିଛନ୍ତି; ଜେଫ୍ରି ସାରାଜୀବନ ରହିଛନ୍ତି ଅବିବାହିତ ! ×××

ଆପାତତଃ ସମୃଦ୍ଧ, ପରିଚ୍ଛନ୍ନ ଓ ସୌଜନ୍ୟଶୀଳ ଇଂରେଜ ସମାଜକୁ ଖୁବ୍ ନିକଟରୁ ନିରୀକ୍ଷଣ କଲେ ବୁଝିହୁଏ - ଏହି ସମାଜରେ ବ୍ୟକ୍ତିଟି ବହୁ ସମୟରେ କିପରି ନିଃସଙ୍ଗ ଓ ନିଃସହାୟ !! ଇଂରେଜ ସମାଜରେ ସ୍ୱଚ୍ଛନ୍ଦ ପାରିବାରିକ ଜୀବନଯାପନ କରୁଥିବା ବ୍ୟକ୍ତିମାନେ ଅଛନ୍ତି ନିଶ୍ଚୟ । କିନ୍ତୁ ପରିବାରବିହୀନ ଶ୍ରେଣୀଟିଏ ମଧ୍ୟ ଖୁବ୍ ସାଧାରଣ । ଆପଣ ଭଲଭାବରେ ଜାଣିଥିବା ଜଣେ ଭଦ୍ରମହିଳା ବା ଭଦ୍ରବ୍ୟକ୍ତି ସ୍ୱାମୀ ବା ସ୍ତ୍ରୀ ପରିତ୍ୟକ୍ତା, ଏପରି ସମ୍ଭାବନା ଯଥେଷ୍ଟ ।

ଜନ୍ ଲଏଡ୍‌ଙ୍କ ମୁଖରୁ ତାଙ୍କର ଜୀବନର ବିବରଣୀ ଶୁଣିବା ପରେ କହିଥିଲି, 'ଭୟଙ୍କର ଦାରିଦ୍ର୍ୟ, କୁସଂସ୍କାର, ଅଜ୍ଞତା ଓ ରାଜନୀତିକ ବିପର୍ଯ୍ୟୟ ସତ୍ତ୍ୱେ ଶତାବ୍ଦୀ ଶତାବ୍ଦୀ ବ୍ୟାପୀ ଭାରତୀୟ ସମାଜ ଯେ ତିଷ୍ଠି ରହିପାରିଛି ଓ ସକଳ ପ୍ରତିବନ୍ଧକର ମୁକାବିଲା କରିପାରୁଛି, ତାହାର ଏକ ମୁଖ୍ୟ କାରଣ ଭାରତୀୟମାନଙ୍କ ପାରିବାରିକ ଓ ସାମାଜିକ ଜୀବନ । ପାଶ୍ଚାତ୍ୟ ଦର୍ଶନର ପ୍ରଭାବ ସତ୍ତ୍ୱେ ବିଂଶ ଶତାବ୍ଦୀର ମଧ୍ୟଭାଗରେ ସୁଦ୍ଧା ଭାରତୀୟ ସମାଜ ତଥାପି ରହିପାରିଛି ବେଶ୍ ମଜବୁତ୍ ଓ ଶକ୍ତିଶାଳୀ ।'

ପାରିବାରିକ ଓ ସାମାଜିକ ଜୀବନର ମୂଳ-ଉତ୍ସ ନାରୀ ଓ ପୁରୁଷର ସମ୍ପର୍କ । ପାଶ୍ଚାତ୍ୟ ଓ ଭାରତୀୟ ସମାଜ ଓ ମୂଲ୍ୟବୋଧରେ ଏଇ ସମ୍ପର୍କର ସଂଜ୍ଞା ଓ ସ୍ୱରୂପ ଭିନ୍ନ । ଭାରତରେ ନାରୀ ଓ ପୁରୁଷର ସଂଯୋଗ ବା ବିବାହକୁ ଦୁଇଟି ଆତ୍ମାର ମିଳନ ବୋଲି ବିଚାର କରାଯାଉଥିବା ବେଳେ, ପାଶ୍ଚାତ୍ୟ ପୃଥିବୀରେ ଏହାକୁ ଏକ ବନ୍ଧୁତା ବା ରାଜିନାମା ବୋଲି ଜ୍ଞାନ କରାଯାଏ । ହେତୁବାଦୀମାନେ ଭାରତୀୟ ବିବାହ-ପଦ୍ଧତିକୁ ରକ୍ଷଣଶୀଳ କହିପାରନ୍ତି; କିନ୍ତୁ ଏହି ରକ୍ଷଣଶୀଳତା ହିଁ ଭାରତୀୟ ପାରିବାରିକ ତଥା ସାମାଜିକ ଜୀବନକୁ ସୁସଂହତ ଓ ସୁଦୃଢ଼ ରଖିପାରିଛି । ପାଶ୍ଚାତ୍ୟ ସମାଜର ପ୍ରଗତିଶୀଳ ଦର୍ଶନର ଅନ୍ୟ ଯେଉଁ ଉପଯୋଗିତା ଥାଉ ନା କାହିଁକି, ଏଇ ଦର୍ଶନର ଚାପରେ କ୍ଷିପ୍ର ବେଗରେ ଭୁଷୁଡ଼ି ପଡ଼ିବାରେ ଲାଗିଛି ପାଶ୍ଚାତ୍ୟ ସମାଜର ପାରିବାରିକ ଓ ସାମାଜିକ ଜୀବନ !!



# ମହାନ୍ତିବାବୁଙ୍କ ଓଡ଼ିଶା

ଲଣ୍ଡନ୍‌ରେ ଗୋଟିଏ ସନ୍ଧ୍ୟାରେ ଡିନର୍ ଟେବୁଲ୍‌ରେ ମିଳିତ ହୋଇଥିଲୁ ମହାନ୍ତିବାବୁ, ସୁଦୀପ୍ତ ଓ ମୁଁ । ସୁଦୀପ୍ତ ମୋର ପୁରୁଣା ବନ୍ଧୁ କିନ୍ତୁ ମହାନ୍ତିବାବୁଙ୍କ ସଙ୍ଗେ ଏଇ ପ୍ରଥମ ପରିଚୟ ।

ମହାନ୍ତିବାବୁଙ୍କ ବୟସ ଚାଳିଶି, ଦୀର୍ଘ ସୁଗଠିତ ଚେହେରା । ଘର କଟକ ଜିଲ୍ଲାର କୌଣସି ଏକ ଗ୍ରାମରେ । ଇଲେକ୍‌ଟ୍ରିକାଲ୍ ଇଞ୍ଜିନିୟରିଂରେ ଓଡ଼ିଶା ଓ ପଶ୍ଚିମ ଜର୍ମାନୀରେ ଅଧ୍ୟୟନ ପରେ ବେଶ୍ କିଛିବର୍ଷ ହେଲା ଫିନ୍‌ଲ୍ୟାଣ୍ଡ୍‌ରେ ଚାକିରି କରୁଛନ୍ତି । ବିବାହ କରିଛନ୍ତି ଜଣେ ଫିନିସ୍ ମହିଳାଙ୍କୁ । ଦୁଇଟି ସନ୍ତାନର ଜନକ ।

ଇଂଲାଣ୍ଡ ବା ୟୁରୋପ୍‌ରେ କିଛି ବର୍ଷ ରହିଥିବା ଓଡ଼ିଆମାନଙ୍କ ସଙ୍ଗେ ସାକ୍ଷାତ ହେଲେ ସାଧାରଣତଃ ସେମାନେ ଇଂରାଜୀରେ କଥାବାର୍ତ୍ତା କରିବାକୁ ପସନ୍ଦ କରନ୍ତି । କିନ୍ତୁ ମହାନ୍ତିବାବୁ ଥିଲେ ଜଣେ ବ୍ୟତିକ୍ରମ । ଏତେଦିନ ଫିନ୍‌ଲ୍ୟାଣ୍ଡ୍‌ରେ ରହିବା ପରେ ବି ପ୍ରାଞ୍ଜଳ ଓଡ଼ିଆରେ କଥାଭାଷା କରିବାରେ ତାଙ୍କର ଅସୁବିଧା ହେଉ ନ ଥିଲା ଏବଂ ସେଦିନର ସାରା ସନ୍ଧ୍ୟା ମୁଖ୍ୟତଃ ଓଡ଼ିଶା ସମ୍ପର୍କରେ ଆଲୋଚନାରେ କଟିଲା । ବିଶେଷତଃ ଓଡ଼ିଶାର ଶିକ୍ଷାୟନ ଓ ପ୍ରଗତି ସମ୍ପର୍କରେ ।

'ଆଜିର ଯୁଗ କମ୍ପ୍ୟୁଟର୍ ଯୁଗ' – ସେ କହିଲେ, 'ଆଜିର ପାଶ୍ଚାତ୍ୟ ସଭ୍ୟତାରେ କମ୍ପ୍ୟୁଟର୍ ଆଣିବାକୁ ଯାଉଛି ଯୁଗାନ୍ତକାରୀ ବିପ୍ଳବ । ଭାରତ ଅତୀତରେ ଟେକ୍‌ନୋଲୋଜିରେ ପଛରେ ପଡ଼ି ପୃଥିବୀରେ ହୋଇଆସିଛି ଏକ ଅନୁନ୍ନତ ଦେଶ । ଆଜି କମ୍ପ୍ୟୁଟର୍ ପ୍ରବର୍ତ୍ତନରେ ପୁଣି ପଛେଇଗଲେ ସବୁଦିନ ପାଇଁ ଭାରତ ଅନୁନ୍ନତ ହିଁ ରହିବ ।

ଭାରତ, ବିଶେଷତଃ ଓଡ଼ିଶା କିପରି ଦ୍ରୁତଗତିରେ ଶିକ୍ଷାୟିତ ହୋଇପାରିବ – ସେଥିପାଇଁ ମହାନ୍ତିବାବୁଙ୍କର ଥିଲା ଅନେକ ଯୋଜନା । ଅତୀତରେ ଫିନ୍‌ଲ୍ୟାଣ୍ଡ୍ ସରକାରଙ୍କ ଦ୍ୱାରା ପ୍ରେରିତ ଏକ ଶିଳ୍ପବିଶେଷଜ୍ଞ କମିଟିର ସଭ୍ୟ ଭାବରେ ସେ ଆସିଥିଲେ ଭାରତ ଓ ଓଡ଼ିଶାରେ ଭାରତ-ଫିନ୍‌ଲ୍ୟାଣ୍ଡ୍ ସହଯୋଗରେ କୌଣସି ଶିଳ୍ପ ପ୍ରକଳ୍ପ ପ୍ରତିଷ୍ଠା କରିବାକୁ ଆଗ୍ରହୀ ହୋଇଥିଲେ । କିନ୍ତୁ...

ସେ ଅଟକିଲେ । ତାଙ୍କ ମୁଖରେ ଘୃଣା, କ୍ରୋଧ ଓ ରୋକ୍‌ଠୋକ୍ ଭାଷା, 'ଓଡ଼ିଶା ସରକାର କିନ୍ତୁ ଶିକ୍ଷାୟନରେ ବିଶ୍ୱାସ କରନ୍ତି ନାହିଁ ।'

ମୁଁ ପ୍ରତିବାଦ କଲି । 'ଓଡ଼ିଶା ସରକାର ତ ଶିଳ୍ପ ପ୍ରତିଷ୍ଠାକୁ ବେଶ୍ ଉତ୍ସାହିତ କରୁଛନ୍ତି । ନୂତନ ଶିଳ୍ପ ପ୍ରତିଷ୍ଠା ପାଇଁ ଅଜସ୍ର ଅର୍ଥ ଯୋଗାଇ ଦିଆଯାଉଛି ।'

ମହାନ୍ତିବାବୁଙ୍କ ସ୍ୱର ଉଚ୍ଚକୁ ଉଠିଗଲା, 'ତେବେ ଶୁଣନ୍ତୁ । ମୁଁ ସେଥର ଓଡ଼ିଶା ଯାଇଥିବା ସମୟରେ କୌଣସି ଶିଳ୍ପଯୋଜନା ସମ୍ପର୍କରେ ଆଲୋଚନା ପାଇଁ ଜଣେ ପଦସ୍ଥ ହାକିମଙ୍କୁ

ଭେଟିଥିଲି । ତାଙ୍କ ସହିତ ଆପଏଣ୍ଟ୍‌ମେଣ୍ଟ କରି ତାଙ୍କୁ ସାକ୍ଷାତ କରିବାକୁ ଗଲି । ମାତ୍ର ସେ ମୋତେ ତିନିଘଣ୍ଟା ଅପେକ୍ଷା କରାଇଲେ ଓ ତା'ପରେ କହିଲେ, ତାଙ୍କର ସପିଂ କରିବାକୁ ବଜାର ଯିବାର ଅଛି । ଅଳ୍ପ କେତେ ମିନିଟ୍‌ରେ ମୁଁ ତାଙ୍କୁ ମୋ ପରିକଳ୍ପନା ସମ୍ପର୍କରେ କହିଲି । ମୋଠାରୁ କିଛି ଶୁଣିବାପାଇଁ ହାକିମଙ୍କର କିନ୍ତୁ ଧୈର୍ଯ୍ୟ ନ ଥିଲା । ସେ ଏସବୁ ପୂର୍ବରୁ ଜାଣନ୍ତି ବୋଲି ମୋତେ ଶୁଣାଇଦେଇ ସପିଂ କରିବାପାଇଁ ବାହାରିଗଲେ ।'

ମୁଁ ସ୍ୱର ନରମାଇଲି, 'ଅମଲାତନ୍ତ୍ର ଓ ରାଜନୀତିକ ଦଳମାନଙ୍କର ଦେଶର ଉନ୍ନତିର ଆନ୍ତରିକତା ଥିବା ନିଶ୍ଚିତରେ ସନ୍ଦେହଜନକ । କିନ୍ତୁ ଇଂରେଜମାନଙ୍କ ଶୋଷଣ ଆମ ଦାରିଦ୍ର୍ୟ ପାଇଁ ଅନେକ ପରିମାଣରେ ଦାୟୀ ନୁହେଁ କି ?'

'ହୋଇପାରେ ।' କହିଲେ ମହାନ୍ତିବାବୁ; 'କିନ୍ତୁ ସ୍ୱାଧୀନତା ପରେ କ'ଣ ହୋଇଛି ? ଭାରତର ଶହେ କୋଡ଼ିଏଟି ଗୁରୁଶିଳ୍ପ ମଧ୍ୟରୁ ନବେଟି କ୍ଷତିରେ ଚାଲିଛି କାହିଁକି ?'

ସୁଦୀପ୍ତ ଏଯାଏଁ ନୀରବରେ ଆମ ଆଲୋଚନା ଶୁଣୁଥିଲା । ସେ ଲଣ୍ଡନ୍‌ର ଜଣେ ଫଟୋଗ୍ରାଫର୍ ଓ ସ୍କୁଲ୍ ଶିକ୍ଷକ । କୋଡ଼ିଏ ବର୍ଷ ହେଲା ସେ ଲଣ୍ଡନ୍‌ରେ ରହିଆସିଛି । କିନ୍ତୁ ଓଡ଼ିଶାର ପ୍ରଗତିରେ ତା'ର ଆଗ୍ରହ କିଛି କମ୍ ନୁହେଁ ।

ସେ ଏଇଠାରେ ଆମ ଆଲୋଚନାରେ ଯୋଗଦେଲା, 'ଓଡ଼ିଶାର ସରକାରୀକଳ ଏମିତି ଯେ, ସରକାରୀ ଦପ୍ତରକୁ ପ୍ରସ୍ତାବଟିଏ ପଠାଇଲେ ତାହାର ପ୍ରାପ୍ତି ସ୍ୱୀକାର ମଧ କରାଯାଏ ନାହିଁ । ଥରେ ମୁଁ ବ୍ରିଟିଶ୍ ସରକାରଙ୍କ କୌଣସି ନୀତି ସମ୍ପର୍କରେ ବ୍ରିଟେନ୍‌ର ପ୍ରଧାନମନ୍ତ୍ରୀଙ୍କ ନିକଟକୁ ଚିଠିଟିଏ ଲେଖିଲି । ପ୍ରଧାନମନ୍ତ୍ରୀଙ୍କ ସେକ୍ରେଟାରୀ ସରକାରୀ ନୀତିର ଯଥାର୍ଥତା ବୁଝାଇ ମୋତେ ଦୁଇପୃଷ୍ଠାର ଉତ୍ତରଟିଏ ଲେଖିଲେ । ଓଡ଼ିଶାର ମୁଖ୍ୟମନ୍ତ୍ରୀଙ୍କ ନିକଟକୁ ଥରେ କୌଣସି ପ୍ରସ୍ତାବଟିଏ ପଠାଇଥିଲି । ମାତ୍ର ମୁଖ୍ୟମନ୍ତ୍ରୀଙ୍କ ଦପ୍ତରରୁ ଚିଠିଟିର ପ୍ରାପ୍ତି ସ୍ୱୀକାର କରାଗଲା ନାହିଁ ।' ××× 

ବିଲାତ, ୟୁରୋପ୍ ବା ଆମେରିକାରେ ମହାନ୍ତିବାବୁଙ୍କ ଭଳି ଯୋଗ୍ୟତାସମ୍ପନ୍ନ ଓଡ଼ିଆ ବେଶ୍ ସଂଖ୍ୟାରେ ଅଛନ୍ତି । ସେମାନଙ୍କ ସହିତ ଆଳାପକଲେ ସେମାନେ ନିଃସନ୍ଦେହରେ ପ୍ରକାଶ କରନ୍ତି ଓଡ଼ିଶା ସମ୍ପର୍କରେ ବିପୁଳ ଆଗ୍ରହ । ଦେଶପ୍ରୀତିରେ ସେମାନେ ଆମମାନଙ୍କଠାରୁ କଦାଚିତ୍ ପଛରେ ପଡ଼ି ନାହାନ୍ତି । ସେମାନଙ୍କ ମନରେ ମଧ ଓଡ଼ିଶାର ପ୍ରଗତି ପାଇଁ ମହତ୍ତ୍ୱଦ୍ ଅଛି ଅନେକ ପରିକଳ୍ପନା ।

ବୀରେନ୍ଦ୍ରବାବୁ ପଶ୍ଚିମ ଜର୍ମାନୀରେ କୌଣସି ଇସ୍ପାତ୍ ପ୍ରକଳ୍ପରେ ଉଚ୍ଚପଦରେ ଅବସ୍ଥାପିତ । ତାଙ୍କ ସହିତ ସାକ୍ଷାତ ହୋଇଥିଲା ବ୍ରିକ୍‌ଷ୍ଟନ୍ ହୋଟେଲ୍‌ରେ । ଲଣ୍ଡନ୍‌ରେ ସେ

ଚାରୋଟି ଫ୍ଲାଟ୍ କିଣିଛନ୍ତି; ପଶ୍ଚିମ ଜର୍ମାନରେ ମଧ୍ୟ ତାଙ୍କର ଘରଟିଏ ଅଛି । ମାସିକ ଆଠଶହ ପାଉଣ୍ଡ (ବାରହଜାର ଟଙ୍କା) ଖର୍ଚ୍ଚରେ ପୁଅକୁ ପଢ଼ାଉଛନ୍ତି ହ୍ୟାରୋ ଅର୍ଥାତ୍ ଜବାହରଲାଲ୍ ନେହେରୁ ପଢ଼ିଥିବା ପବ୍ଲିକ୍ ସ୍କୁଲ୍‌ରେ । ସେ କେବଳ ପ୍ରଭୂତ ସମ୍ପତ୍ତିର ମାଲିକ ନୁହନ୍ତି, ନିଜକୁ ଜଣେ ଆରିଷ୍ଟୋକ୍ରାଟ୍ ଅର୍ଥାତ୍ ଅଭିଜାତ ବ୍ୟକ୍ତିତ୍ୱରେ ପରିଣତ କରିବାକୁ ମଧ୍ୟ ସତତ ଚେଷ୍ଟିତ ।

ଓଡ଼ିଶାର ଉନ୍ନତି ପାଇଁ ବୀରେନ୍ଦ୍ରବାବୁଙ୍କ ଆନ୍ତରିକତା ଓ ଆକୁଳତା ତାଙ୍କ ସହିତ ଆଳାପରେ ସ୍ପଷ୍ଟ ହୋଇଥିଲା । ଓଡ଼ିଶା ସମ୍ପର୍କରେ ତାଙ୍କର ଯୋଜନାସବୁ ସେ କୌଣସି ଓଡ଼ିଆ ଦୈନିକରେ 'ବିଜ୍ଞାପନ' ଭାବରେ ଇଂରାଜୀରେ ପ୍ରକାଶ କରିଥିଲେ । ପଶ୍ଚିମ ଜର୍ମାନୀରୁ ସେଇ ବିଜ୍ଞାପନ ଫଟୋଷ୍ଟାଟ୍ କପିଟିଏ ପଠାଇ ଦେଇଥିଲେ ମୋ ନିକଟକୁ ।

'ଆପଣଙ୍କ ପରି ବିଶେଷଜ୍ଞମାନେ ଓଡ଼ିଶା ଫେରିଯାଉ ନାହାନ୍ତି କାହିଁକି ? ଓଡ଼ିଶା କିମ୍ବା ଭାରତରେ ଆପଣମାନେ ନିଜ ଯୋଜନାସବୁକୁ କାର୍ଯ୍ୟକାରୀ କରିବା ଉଚିତ ନୁହେଁ କି ?' ଏଇ ପ୍ରଶ୍ନ ମୁଁ ପଚାରିଥିଲି ମହାନ୍ତିବାବୁଙ୍କୁ । ପୁଣି ବୀରେନ୍ଦ୍ରବାବୁଙ୍କୁ ।

ସେଥିପାଇଁ ସେମାନଙ୍କର ଥିଲା ନିର୍ଦ୍ଦିଷ୍ଟ ଉତ୍ତର । ଯେ ଓଡ଼ିଶା କିମ୍ବା ଭାରତ ଭଳି ଦୁର୍ନୀତି ଏବଂ ଅମଲାକବଳିତ ଦେଶରେ କିଏ ବୁଝିବ ସେମାନଙ୍କ ଯୋଗ୍ୟତା କିମ୍ବା ସେମାନଙ୍କ ଯୋଜନାର ମୂଲ୍ୟ ? କି ସୁଯୋଗ ସେମାନେ ପାଇବେ ଓଡ଼ିଶାରେ ନିଜ ପ୍ରତିଭାର ବିନିଯୋଗ ଲାଗି ?

ଏବଂ ସେମାନଙ୍କ ଉତ୍ତର ଯଥାର୍ଥ । ଫିନ୍‌ଲ୍ୟାଣ୍ଡ ବା ପଶ୍ଚିମଜର୍ମାନୀର ଅର୍ଥ ବା ସୁଯୋଗ ଓଡ଼ିଶା କିମ୍ବା ଭାରତରେ କଳ୍ପନା କରାଯାଇ ନ ପାରେ !

କିନ୍ତୁ ମହାନ୍ତିବାବୁ ବା ବୀରେନ୍ଦ୍ରବାବୁଙ୍କ ଭଳି ବିଶେଷଜ୍ଞମାନଙ୍କ ବ୍ୟକ୍ତିଗତ ଉପସ୍ଥିତି ଓ ପ୍ରଚେଷ୍ଟା ଓଡ଼ିଶାର ପ୍ରଗତିରେ ଏକ ନୂତନ ଦିଗ୍‌ଦର୍ଶନ ଦେଇପାରିବାର ସମ୍ଭାବନା ଉଜ୍ଜ୍ୱଳ । ସେମାନଙ୍କ ଦେଶପ୍ରୀତିରେ ଆମର ସନ୍ଦେହ ନାହିଁ । କିନ୍ତୁ ଦେଶପ୍ରୀତି କ'ଣ ଶେଷକଥା ? ସେମାନଙ୍କ ପରିକଳ୍ପନାକୁ କାର୍ଯ୍ୟରେ ଅନୂଦିତ କରିବାକୁ ହେଲେ ସେମାନଙ୍କୁ ସ୍ୱୀକାର କରିବାକୁ ହେବ ବିପୁଳ ସ୍ୱାର୍ଥତ୍ୟାଗ । ସ୍ୱାର୍ଥତ୍ୟାଗ ବ୍ୟତୀତ ଦେଶପ୍ରୀତିର ବା କି ଅର୍ଥ ? ପାଶ୍ଚାତ୍ୟ ଜଗତର ସମୃଦ୍ଧି ଓ ବିଳାସରେ ବୁଡ଼ିରହି ନିଜ ଦେଶର ପ୍ରଗତିର କେବଳ ସ୍ୱପ୍ନ ଦେଖିବା କ'ଣ ଯଥେଷ୍ଟ ? ଯେଉଁମାନଙ୍କ ପାଇଁ ଦେଶର ପ୍ରଗତି ବ୍ୟର୍ଥ ହେଉଛି ବୋଲି ମହାନ୍ତିବାବୁ ବା ବୀରେନ୍ଦ୍ରବାବୁ ମନେକରନ୍ତି, ସେମାନଙ୍କ ଭୟରେ ବିଦେଶରେ ନ ରହି ସେମାନଙ୍କୁ ନିଜ ଦେଶମାଟିରେ ସାମନା କରିବା ଅଧିକ ଶ୍ରେୟସ୍କର ନୁହେଁ କି ?



# ଲଣ୍ଡନ୍‌ରେ ଏକଲବ୍ୟ

୧୯୮୩ ନଭେମ୍ବର ମାସରେ ଟାନା ଆର୍ଟସ୍ ଗ୍ରୁପ୍ ଦ୍ୱାରା ଆୟୋଜିତ ନାଟକଟିଏ ଦେଖିଥିଲି । ନାଟକଟି ଲଣ୍ଡନ୍‌ରେ ରହୁଥିବା ଭାରତୀୟ ବଂଶୋଦ୍ଭବ ତରୁଣତରୁଣୀଙ୍କ ସମ୍ପର୍କରେ । ନାଟକଟି ଲେଖିଥିଲେ ଜଣେ ଭାରତୀୟ; ନାଟକର ସମସ୍ତ ପାତ୍ରପାତ୍ରୀ ମଧ୍ୟ ଥିଲେ ଭାରତୀୟ ।

ନାଟକଟି ଅଭିନୀତ ହେଉଥାଏ ଲଣ୍ଡନ୍‌ର ବ୍ରିକ୍ସ୍‌ଟନ୍ ଅଞ୍ଚଳରେ – ଗୋଟିଏ ବହୁ ପୁରୁଣା ଚର୍ଚ୍ଚ୍‌ରେ । ଚର୍ଚ୍ଚ୍ ଅଭ୍ୟନ୍ତରରେ ବିଗତ ଶତାବ୍ଦୀମାନଙ୍କରେ ମୃତବ୍ୟକ୍ତିମାନଙ୍କ ସ୍ମୃତିଫଳକ । ସେଥିମଧ୍ୟରେ ଗୋଟିଏ ସ୍ମୃତିଫଳକ ଥିଲା ଇଷ୍ଟଇଣ୍ଡିଆ କମ୍ପାନୀ ପାଇଁ କାର୍ଯ୍ୟ କରିଥିବା ଜଣେ ସୈନିକର । ନାଟକ ଦେଖିବାକୁ ଆସିଥିବା ଦର୍ଶକଙ୍କ ସଂଖ୍ୟା କୋଡ଼ିଏରୁ ଅଧିକ ନ ଥିଲା । ଟିକେଟ୍ ଓ ଚା' ଇତ୍ୟାଦି ବିକ୍ରି କରୁଥିଲେ କେତେଜଣ ୱେଷ୍ଟଇଣ୍ଡିଆନ୍ । ସମଗ୍ର ପରିବେଶଟିକୁ କେଜାଣି କାହିଁକି ଆବୋରି ରଖିଥିଲା ଗୋଟାଏ ବିମର୍ଷ ଓ ନିରାନନ୍ଦଭାବ ! ଏଇ ବ୍ରିକ୍ସ୍‌ଟନ୍ ଅଞ୍ଚଳଟିରେ ରହନ୍ତି ବହୁ ୱେଷ୍ଟଇଣ୍ଡିଆନ୍ । ୱେଷ୍ଟଇଣ୍ଡିଆନ୍ ଓ ଇଂରେଜମାନଙ୍କ ମଧ୍ୟରେ କେବେ କିପରି ସଂଘର୍ଷ ଘଟି ଏଇ ଅଞ୍ଚଳଟି ହୋଇସାରିଥିଲା କୁଖ୍ୟାତ । ହୁଏତ ଚର୍ଚ୍ଚର ପରିବେଶ ତଥା ନାଟକଟି ପାଇଁ ଦର୍ଶକମାନଙ୍କ ନିରୁତ୍ସାହର କାରଣ ଥିଲା ଏଇ ଅଞ୍ଚଳର କୁଖ୍ୟାତି । ଟିଉବ୍ ବା ବସ୍‌ରେ ଅଧିକ ରାତ୍ରିରେ ବ୍ରିକ୍ସ୍‌ଟନ୍‌କୁ ଯିବା ନିରାପଦ ନୁହେଁ ବୋଲି ମୋର ବନ୍ଧୁ ଶର୍ମାଜୀ ମୋତେ ଅବଶ୍ୟ ସତର୍କ କରି ଦେଇଥିଲେ !

ଇଂରେଜ ସମାଜରେ ଭାରତୀୟ ତରୁଣତରୁଣୀମାନେ କିଭଳି ପ୍ରତି କ୍ଷେତ୍ରରେ ଲାଞ୍ଛିତ ଓ ଅବହେଳିତ, ତାହା ଥିଲା ନାଟକର ବିଷୟବସ୍ତୁ । ଭାରତୀୟମାନେ ଇଂରେଜମାନଙ୍କ ତୁଳନାରେ କୌଣସିମତେ ନ୍ୟୂନ ନୁହନ୍ତି, କିନ୍ତୁ ସେମାନେ ଯେ ଭାରତୀୟ ଏହା ସେମାନଙ୍କ ଅକ୍ଷମଣୀୟ ଅପରାଧ ଏବଂ ସେଇଥିପାଇଁ ଯେପରି ଇଂରେଜ ସମାଜ ସେମାନଙ୍କଠାରୁ ଚାହେଁ 'କଇଫତ୍' !

ନାଟ୍ୟକାର ଲଣ୍ଡନ୍‌ର ଭାରତୀୟ ତରୁଣତରୁଣୀମାନଙ୍କ ଜୀବନ ସହିତ ସମାନ୍ତରାଳ ଭାବରେ ପରିବେଷଣ କରିଥିଲେ ମହାଭାରତର ଏକଲବ୍ୟ ଉପାଖ୍ୟାନଟି । ଶବର ବାଳକ ଏକଲବ୍ୟ ଧନୁର୍ବିଦ୍ୟାରେ ପାଣ୍ଡବମାନଙ୍କ ତୁଳନାରେ ନ୍ୟୂନ ନ ଥିଲା, ବରଂ ଥିଲା ଅଧିକ ପାରଙ୍ଗମ । କିନ୍ତୁ ତା' ବିରୁଦ୍ଧରେ ଅଭିଯୋଗ ଥିଲା ଯେ ସେ ଆଦିବାସୀ; ଅତଏବ କ୍ଷତ୍ରିୟମାନଙ୍କ ସହିତ ସମକକ୍ଷ ହେବାର ଅଧିକାର ତା'ର ନାହିଁ । ସେଥିପାଇଁ ବ୍ରାହ୍ମଣଗୁରୁ ଦ୍ରୋଣାଚାର୍ଯ୍ୟ ଏକଲବ୍ୟକୁ ମାଗିଥିଲେ 'କଇଫତ୍' – ଯାହାର ପ୍ରତାରଣାପୂର୍ଣ୍ଣ ପ୍ରତିଶବ୍ଦ

'ଗୁରୁଦକ୍ଷିଣା' । ଏକଲବ୍ୟର ରକ୍ତାକ୍ତ ବୃଦ୍ଧଅଙ୍ଗୁଷ୍ଠି ସହିତ ବ୍ରାହ୍ମଣ-ଗୁରୁ ଛଡ଼ାଇ ନେଇଥିଲେ ଆଦିବାସୀମାନେ ଆର୍ଯ୍ୟମାନଙ୍କ ସଙ୍ଗେ ସମକକ୍ଷ ହେବାର ଅଧିକାର !

ନାଟକଟିରେ ଅବଶ୍ୟ ଅନେକ ଦୋଷତ୍ରୁଟି ଥିଲା । କିନ୍ତୁ ଇଂରାଜୀ ଓ ହିନ୍ଦୀ ଉଭୟଭାଷାର ସଂଳାପରେ ରଚିତ ନାଟକର ବିଷୟବସ୍ତୁ ଉପସ୍ଥିତ ଦର୍ଶକମାନଙ୍କ ମନରେ ରେଖାପାତ କରିଥିବ ନିଶ୍ଚୟ । ନାଟକଟି ଯଥାର୍ଥରେ ପ୍ରକାଶ କରିଥିଲା ଇଂରେଜ ସମାଜରେ ଅସ୍ପୃଶ୍ୟ ଭଳି ଅନୁଭବ କରୁଥିବା ଭାରତୀୟ ତରୁଣତରୁଣୀମାନଙ୍କର ଗ୍ଲାନି ଓ ବ୍ୟର୍ଥତା ! × × ×

ଏକଲବ୍ୟ କାହାଣୀଟି ସହିତ ଶିକ୍ଷିତ ଭାରତୀୟମାନେ ମୋଟାମୋଟି ପରିଚିତ । ସ୍କୁଲ୍ ପାଠ୍ୟପୁସ୍ତକମାନଙ୍କରେ ଅନେକ ସମୟରେ ଏଇ କାହାଣୀଟି ଅନ୍ତର୍ଭୁକ୍ତ ହୋଇଥାଏ । ଗୁରୁଙ୍କ ପ୍ରତି ଅତୁଟ ଭକ୍ତିର ନିଦର୍ଶନ ରୂପେ ଅଧିକାଂଶ ଗ୍ରହଣ କରନ୍ତି କାହାଣୀଟି ।

କିନ୍ତୁ ଏକଲବ୍ୟ କାହାଣୀଟି ସାମନ୍ତବାଦୀ ଭାରତୀୟ ଜୀବନଧାରା ଓ ମୂଲ୍ୟବୋଧର ଏକ ପ୍ରଚଣ୍ଡ ସମାଲୋଚନା ବୋଲି କହିବା ହୁଏତ ଅଧିକ ଯୁକ୍ତିସମ୍ମତ ହେବ !

ଆଶା କରାଯାଉ, ଲଣ୍ଡନ୍‌ର ଭାରତୀୟମାନେ ଏକଲବ୍ୟର ବ୍ୟଥା ଓ ଗ୍ଲାନିକୁ ଯଥାର୍ଥ ସମ୍ମାନ ଦେଇ ଶିଖିବେ । ଭାରତୀୟମାନେ ଦିନେ ସେମାନଙ୍କ ନିଜ ସମାଜରେ ଏକଲବ୍ୟ ପରି ନିରୀହ ଓ ଦୁର୍ବଳ ଚରିତ୍ରମାନଙ୍କୁ ଲାଞ୍ଛିତ କରିଥିଲେ । ଇତିହାସର ଘୂର୍ଣ୍ଣାୟମାନ ଚକ୍ରରେ ଆଜି ସେଇ ଭାରତୀୟମାନେ ଇଂରେଜ ସମାଜରେ ସେହିପରି ଲାଞ୍ଛିତ ହେଉଛନ୍ତି ! ଇତିହାସ ଯେ କି ଭୟଙ୍କର ପ୍ରତିଶୋଧ ନେଇପାରେ, ଏଥିରୁ ତାହାହିଁ ପ୍ରମାଣିତ ହୁଏ !!



## ମିଷ୍ଟର୍ ଜ୍ୟାକ୍‌ସନ୍ ଓ ଶ୍ରୀମତୀ ରାଓ

ଇଣ୍ଡିଆ ଅଫିସ୍ ଲାଇବ୍ରେରୀ ରିସେପ୍‌ସନ୍ କାଉଣ୍ଟର୍‌ରେ ବସିଥିଲେ ଜଣେ ଭାରତୀୟ ଭଦ୍ରମହିଳା । ଶାଢ଼ି-ସିନ୍ଦୂର ପରିହିତା ମାତୃସୁଲଭ ଚେହେରା । ସମ୍ମୁଖ ନାମ ଫଳକରେ ଲିଖିତ ଥିଲା – ଶ୍ରୀମତୀ ରାଓ ।

କେନ୍ଦ୍ର ଲଣ୍ଡନ୍‌ର ବ୍ଲାକ୍‌ଫ୍ରାୟାର୍ ଅଞ୍ଚଳରେ ଟେମ୍‌ସ୍ ନଦୀକୂଳରେ ଅବସ୍ଥିତ ଚାରିମହଲାବିଶିଷ୍ଟ ଏଇ ପାଠାଗାରଟିରେ କେବଳ ଭାରତୀୟ ଗ୍ରନ୍ଥ, ପତ୍ରପତ୍ରିକା, ରେକର୍ଡ଼୍ ଓ ଅନ୍ୟାନ୍ୟ ନଥିପତ୍ର ମହଜୁଦ ଥାଏ । ଭାରତ ଉପମହାଦେଶ ସମ୍ପର୍କରେ ଗବେଷଣାରତ ଯେକୌଣସି ବ୍ୟକ୍ତି ପାଇଁ ଏହାର ଉପଯୋଗିତା ପ୍ରଭୂତ ।

ଶ୍ରୀମତୀ ରାଓଙ୍କୁ ନମସ୍କାର ଜଣାଇ କହିଲି, 'ପାଞ୍ଚବର୍ଷ ତଳେ ମୁଁ ଏ ପାଠାଗାରର ସଭ୍ୟ ଥିଲି । ଗବେଷଣା ପାଇଁ ପୁଣି ଥରେ ଆସିଛି ଇଂଲାଣ୍ଡ । ବର୍ତ୍ତମାନ ପାଠାଗାରଟି

ବ୍ୟବହାର କରିବାରେ ଅସୁବିଧା ଅଛି କି ? ଲାଇବ୍ରେରୀ କାର୍ଡ୍‌ଟି ଅବଶ୍ୟ ଏ ଯାଏଁ ମୋ ନିକଟରେ ଅଛି ।'

'ଆପଣଙ୍କୁ ପୁଣିଥରେ ଲାଇବ୍ରେରୀ କାର୍ଡ୍ ପାଇଁ ଦରଖାସ୍ତ ଦେବାକୁ ପଡ଼ିବ । ବର୍ତ୍ତମାନ ଆପଣ ଆଉ ସଭ୍ୟ ନାହାନ୍ତି ।' ବ୍ୟାବହାରିକ ରୀତିରେ କହିଲେ ଶ୍ରୀମତୀ ରାଓ ।

ମୁଁ ଯୁକ୍ତି କଲି, 'ଜଣେ ପାଞ୍ଚବର୍ଷ ଆପଣଙ୍କ ପାଠାଗାରରୁ ବହିଟିଏ ଧାର ନ କରିଥିଲେ ତା'ର ସଭ୍ୟପଦ ଖାରଜ ହୋଇଯିବ ବୋଲି ଆପଣଙ୍କର ତ ନିୟମ ନାହିଁ !'

ଶ୍ରୀମତୀ ରାଓଙ୍କ ଚାହାଣି କଠୋର ହେଲା । 'ସେ ଯାହାହେଉ, ଆପଣଙ୍କୁ ପୁଣି ଥରେ ସଭ୍ୟ ହେବାକୁ ପଡ଼ିବ !' ଦୋଷୀ ପ୍ରତି ବିଚାରପତିଙ୍କ ଅନ୍ତିମ ରାୟ ଭଳି ଥିଲା ତାଙ୍କର ଘୋଷଣା !

'ଶୁଣନ୍ତୁ ।' ସଧୀରେ କେହି ଜଣେ ଏଇ ସମୟରେ ସ୍ପର୍ଶକଲେ ମୋର କାନ୍ଧ । ଥ୍ରୀ-ପିସ୍ – ସୁଟ୍ ପରିହିତ ଇଂରେଜ ଭଦ୍ରବ୍ୟକ୍ତି । ଆମେ ଦୁହେଁ ଘୁଞ୍ଚିଗଲୁ କ୍ୟାଟ୍‌ଲଗ୍ ସେକ୍‌ସନ୍‌କୁ ।

ମୋ ଅସୁବିଧା ଓ ଆବଶ୍ୟକତା ବୁଝିବା ପରେ ଶ୍ରୀମତୀ ରାଓଙ୍କୁ କହିଲେ ସେ, 'ନା, ତାଙ୍କର ଆଉଥରେ ପାଠାଗାରର ସଭ୍ୟ ହେବା ଲୋଡ଼ା ନାହିଁ । ସେ ପାଠାଗାର ବ୍ୟବହାର କରିପାରନ୍ତି ।'

'କିନ୍ତୁ ସାର୍, ସେ ତ ପୁଣି ଥରେ ଦରଖାସ୍ତ କରିବା ଉଚିତ ।' ସ୍ୱର ନୁଆଇଁ ଯୁକ୍ତି ଆରମ୍ଭ କରିଦେଲେ ମିସେସ୍ ରାଓ ।

'ସେପରି ଆବଶ୍ୟକତା ମୁଁ ଦେଖୁ ନାହିଁ...' କହିଲେ ଇଂରେଜ ଭଦ୍ରବ୍ୟକ୍ତି ଓ ଶ୍ରୀମତୀ ରାଓଙ୍କ ପ୍ରତିକ୍ରିୟାକୁ ଅପେକ୍ଷା ନ ରଖି ସେଠାରୁ ପ୍ରସ୍ଥାନ କଲେ ନିକଟବର୍ତ୍ତୀ ରୁମ୍‌କୁ ।

ମୋତେ ଇଣ୍ଡିଆ ଅଫିସ୍ ଲାଇବ୍ରେରୀର ସଭ୍ୟପଦ ପାଇଁ ଆଉ ଦରଖାସ୍ତ ଦେବାକୁ ପଡ଼ି ନ ଥିଲା । ଜାଣିଲି ସେ ଇଂରେଜ ଭଦ୍ରବ୍ୟକ୍ତି ଥିଲେ ମିଷ୍ଟର୍ ଜ୍ୟାକ୍‌ସନ୍ – ଇଣ୍ଡିଆ ଅଫିସ୍ ଲାଇବ୍ରେରୀର ମୁଖ୍ୟ ଲାଇବ୍ରେରୀଆନ୍ । × × ×

ମିଷ୍ଟର୍ ଜ୍ୟାକ୍‌ସନ୍ ଓ ଶ୍ରୀମତୀ ରାଓ ରହନ୍ତି ଲଣ୍ଡନ୍‌ରେ, କାର୍ଯ୍ୟ କରନ୍ତି ଗୋଟିଏ ଅନୁଷ୍ଠାନରେ । କିନ୍ତୁ ସେମାନଙ୍କ ପଶ୍ଚାତରେ ଶତାବ୍ଦୀ ଶତାବ୍ଦୀ ବ୍ୟାପୀ ଦୁଇଟି ଭିନ୍ନ ଇତିହାସ ଓ ପରମ୍ପରା । ସେମାନଙ୍କର ଆଚାର ବ୍ୟବହାର, ସେମାନଙ୍କ ଚରିତ୍ର ତେଣୁ ସମ୍ପୂର୍ଣ୍ଣ ଭିନ୍ନ ହେବାରେ ଆଶ୍ଚର୍ଯ୍ୟକର କିଛି ନାହିଁ !

ଭାରତ ଉପମହାଦେଶରେ ଯେକୌଣସି ସରକାରୀ/ବେସରକାରୀ ଅଫିସ୍‌ର ଦ୍ୱାରସ୍ଥ ହେଲେ ପଦାସୀନ ଅଫିସର୍‌ଠାରୁ କିରାଣୀ ଯାଏଁ ଆଗେଇ ଆସନ୍ତି ଆପଣଙ୍କୁ ହଇରାଣ କରିବାକୁ । ଆପଣଙ୍କ କାର୍ଯ୍ୟଟି ଯେପରି ନ ହୋଇପାରେ, ଆପଣ ଯେପରି ବାରମ୍ବାର

ସେମାନଙ୍କ ନିକଟରେ ଗୋଡ଼ଭାଙ୍ଗି ଠିଆହୁଅନ୍ତି, ସେଥିପାଇଁ ସେମାନେ କେତେ ଉପାୟ ସୃଷ୍ଟି ନ କରନ୍ତି, କେତେ କୌଶଳ ନ ଖଞ୍ଜନ୍ତି !

ଶତ ଶତ ବର୍ଷ ବ୍ୟାପୀ ଭାରତୀୟମାନେ ଶାସିତ ହୋଇ ଆସିଥିଲେ ବିଦେଶୀ ଆଫଗାନ୍, ମଙ୍ଗୋଲ୍, ତୁର୍କ ବା ଇଂରେଜମାନଙ୍କଦ୍ୱାରା । ବିଦେଶୀ ଶାସକମାନେ ଭାରତୀୟ 'ଭୃତ୍ୟ'ମାନଙ୍କ ପ୍ରତି ସ୍ୱାଭାବିକ ଭାବେ ପ୍ରକାଶ କରୁଥିଲେ ହେୟଭାବ । ସ୍ୱାଧୀନତା ପରେ ମଧ ପଦସ୍ଥ ଭାରତୀୟମାନେ ସେମାନଙ୍କ ପୂର୍ବତନ ଶାସକମାନଙ୍କୁ ଅନୁକରଣ କଲେ; ଆପଣା ଦେଶବାସୀଙ୍କ ପ୍ରତି ପ୍ରକଟ କରିବାରେ ଲାଗିଲେ ଅନୁରୂପ ଘୃଣା ଓ ତାଚ୍ଛଲ୍ୟ ! ଭୃତ୍ୟଟି ମାଲିକକୁ ଅନୁକରଣ କରେ – ସମାଜ ବିଜ୍ଞାନ ଓ ମନସ୍ତତ୍ତ୍ୱର ଏହା ଏକ ସ୍ୱାଭାବିକ ପ୍ରକ୍ରିୟା ।

ଶ୍ରୀମତୀ ରାଓ ଅନ୍ୟଜଣେ ଭାରତୀୟକୁ ସାହାଯ୍ୟ ନ କରିବାଟା ତେଣୁ ଯଥାର୍ଥରେ ଭାରତୀୟ ନୀତି ।

ମିଷ୍ଟର୍ ଜ୍ୟାକ୍‌ସନ୍‌ଙ୍କ ଦେଶରେ କିନ୍ତୁ ଆପଣଙ୍କୁ ସାହାଯ୍ୟ କରିବା ପାଇଁ ଆଗେଇ ଆସିବା ଯେକୌଣସି ସରକାରୀ/ବେସରକାରୀ ଅନୁଷ୍ଠାନର ପରମ୍ପରା । ଭାରତୀୟମାନଙ୍କ ଭଳି ବିଦେଶୀମାନଙ୍କ ଗୋଲାମି କରିବାରେ ଅଭ୍ୟସ୍ତ ନୁହେଁ ଇଂରେଜ ଜାତି । ଜଣେ ଅନ୍ୟ ଜଣକୁ ଅଯଥା ହଇରାଣ କରିବା ମୂଳ୍ଯ ଇଂରେଜ ସମାଜରେ ଦେଖାଯାଏ କ୍ୱଚିତ୍ । ଇଂଲାଣ୍ଡର ସରକାରୀ/ବେସରକାରୀ ଅନୁଷ୍ଠାନ, ରାସ୍ତାଘାଟରେ ତେଣୁ ଆପଣ ଯେଉଁମାନଙ୍କୁ ଭେଟିବେ, ସେମାନେ ଜଣେ ଜଣେ ମିଷ୍ଟର୍ ଜ୍ୟାକ୍‌ସନ୍ ହୋଇଥିବାର ସମ୍ଭାବନା ହିଁ ଅଧିକ !!



## କଳା ମଣିଷ ଧଳା ମଣିଷ – ୧

ଗଟେନ୍‌ବର୍ଗ୍ ବିଶ୍ୱବିଦ୍ୟାଳୟ ଦ୍ୱାରା ଆୟୋଜିତ ଆଲୋଚନାଚକ୍ରଟିଏରେ ଯୋଗ ଦେଇସାରି ସୁଇଡ଼େନ୍‌ରୁ ଫେରୁଥାଏ ଲଣ୍ଡନ୍ । ସଙ୍ଗରେ ଥାଆନ୍ତି ଜଣେ ବନ୍ଧୁ – ପିଟର୍ ପୋଟର୍ । ପୋଟର୍ ମହାଶୟ ଇଂଲାଣ୍ଡର ଜଣେ ପ୍ରତିଷ୍ଠିତ କବି; 'ଟାଇମ୍‌ସ୍' ପତ୍ରିକାର କବିତା ସମାଲୋଚନା ଦାୟିତ୍ୱରେ ଅଛନ୍ତି ।

ଲଣ୍ଡନ୍‌ରେ ହିଥ୍ରୋ ଏୟାର୍‌ପୋର୍ଟ୍‌ରେ ପହଞ୍ଚି ଆମେ ଦୁଇଜଣ ଆଗେଇ ଚାଲିଲୁ ଚେକିଂ କାଉଣ୍ଟର୍ ଅଭିମୁଖେ । ମହିଳା ଅଫିସର୍ ପୋଟର୍‌ଙ୍କ ଜିନିଷପତ୍ର ଚେକିଂ ନ କରି ସେହିପରି ଛାଡ଼ିଦେଲେ । ମୋତେ କିନ୍ତୁ ଅଟକାଇ ତନ୍ନ ତନ୍ନ କରି ଚେକିଂ କଲେ ମୋର

ସୁଟ୍‌କେଶ୍ ଓ ହ୍ୟାଣ୍ଡବ୍ୟାଗ୍ । ମୁଁ ଅପ୍ରସ୍ତୁତ ହେଲି । ମୋ ଚେକିଂ ସରିବାଯାଏ ମୋ ପାଇଁ ଅପେକ୍ଷା କଲେ କବି ପୋଟର୍ । ମୋ ଜିନିଷପତ୍ର ଚେକିଂ ହେବା ଦେଖି ସେ ମଧ ସାମାନ୍ୟ ଅପ୍ରସ୍ତୁତ ମନେକଲେ ନିଜକୁ ।

ଅନ୍ୟ ଏକ ଘଟଣା । ସ୍ପେନ୍ ଯିବାପାଇଁ ଭିସା ବା ପ୍ରବେଶ ଅନୁମତି ସଂଗ୍ରହ କରିବା ପାଇଁ ଲଣ୍ଡନ୍‌ର ସ୍ପାନିଶ୍ କନ୍‌ସ୍ୟୁଲେଟ୍‌କୁ ଯାଇଥାଏ । ଇଂରେଜ ଓ ଗୋରାଲୋକେ ଅଳ୍ପ କେତେ ମିନିଟ୍ ମଧ୍ୟରେ ପାଇଯାଉଥାନ୍ତି ସେମାନଙ୍କର ଭିସା । ଭିସା ପ୍ରଦାନ ଦାୟିତ୍ୱରେ ଥିବା ଅଫିସର୍ ମୋ ଦରଖାସ୍ତଟିକୁ ଉତ୍ତମରୂପେ ନିରୀକ୍ଷଣ କରି ପଚାରିଲେ, 'ଆପଣ ଭାରତୀୟ ?' 'ହଁ' – ମୁଁ କହିଲି । ତେବେ ଆପଣଙ୍କ ଦରଖାସ୍ତ ଆମକୁ ପଠାଇବାକୁ ପଡ଼ିବ ମାଦ୍ରିଦ୍ । ଭିସା ପାଇଁ ଆପଣଙ୍କୁ ଅପେକ୍ଷା କରିବାକୁ ହେବ ଗୋଟିଏ ସପ୍ତାହ ।'

ମୁଁ ପ୍ରତିବାଦ କଲି, 'ଦେଖନ୍ତୁ, ଆପଣଙ୍କ ଦେଶର ଗୋଟିଏ ବିଶ୍ୱବିଦ୍ୟାଳୟ ଦ୍ୱାରା ପ୍ରବନ୍ଧଟିଏ ପଢ଼ିବା ପାଇଁ ମୁଁ ନିମନ୍ତ୍ରିତ ହୋଇଛି । ମୋତେ ତେଣୁ ଭିସା ଦେବାରେ ବିଳମ୍ବ କରିବାର କୌଣସି କାରଣ ନାହିଁ ।'

'ଆପଣଙ୍କ ପାଇଁ ମୁଁ ଦୁଃଖିତ', 'ସ୍ପାନିଶ୍' ଉଚ୍ଚାରଣରେ ଇଂରାଜୀ କହୁଥିଲେ ମହିଳା ଅଫିସର୍ । 'କିନ୍ତୁ ସବୁ ଏସିଆନ୍ ଓ ଆଫ୍ରିକାନ୍‌ମାନଙ୍କ ଦରଖାସ୍ତ ମାଦ୍ରିଦ୍ ପଠାଇବା ପାଇଁ ଆମକୁ ନିର୍ଦ୍ଦେଶ ଆସିଛି ।' × × ×

କଳାମଣିଷ ଓ ଧଳାମଣିଷ – ଆଜିର ତଥାକଥିତ ସଭ୍ୟ ପାଶ୍ଚାତ୍ୟ ପୃଥିବୀରେ ଏ ଦୁଇଟି ଶ୍ରେଣୀ ପାଇଁ ଦୁଇଟି ଭିନ୍ନ ଆଇନ, ଭିନ୍ନ ମନୋବୃତ୍ତି ବର୍ତ୍ତମାନ । ଚମଡ଼ାର ରଙ୍ଗ କଳା ବା ସାବନା ଯେଉଁମାନଙ୍କର, ୟୁରୋପ୍ ମହାଦେଶରେ ସେମାନେ ଦ୍ୱିତୀୟ ଶ୍ରେଣୀର ନାଗରିକ । ସରକାରୀ, ବେସରକାରୀ, ସାମାଜିକ, ସାଂସ୍କୃତିକ କ୍ଷେତ୍ରରେ କଳାମଣିଷମାନଙ୍କୁ ବହୁ ସମୟରେ ଅପମାନ, ହତାଦର, ଲାଞ୍ଛନାର ସମ୍ମୁଖୀନ ହେବାକୁ ପଡ଼େ । ଉପରୋକ୍ତ ଘଟଣା ଦୁଇଟି ତାହାର ହିଁ ଦୃଷ୍ଟାନ୍ତ ।

ୟୁରୋପ୍ ମହାଦେଶର ଅଧିବାସୀଙ୍କମାନଙ୍କର ଚମଡ଼ାର ରଙ୍ଗ ଅବଶ୍ୟ ଧଳା । କିନ୍ତୁ ଇତିହାସର ବିବର୍ତ୍ତନରେ ଏସିଆ ଓ ଆଫ୍ରିକାରୁ ଆଗତ ବହୁ ପରିବାର ଆଜି ପୁରୁଷାନୁକ୍ରମେ ୟୁରୋପ୍ ମାଟିରେ ସ୍ଥାୟୀ ବାସିନ୍ଦା । ସେମାନଙ୍କ ସଂଖ୍ୟା ଓ ସେମାନଙ୍କ ପ୍ରତି ଧଳାଲୋକଙ୍କ ମନୋବୃତ୍ତି ଭିନ୍ନ ଭିନ୍ନ ଦେଶରେ ଅବଶ୍ୟ ଭିନ୍ନ ଭିନ୍ନ । ଇଂଲାଣ୍ଡ ଓ ଫ୍ରାନ୍ସ ଭଳି ଶକ୍ତିଶାଳୀ ପୂର୍ବତନ ଉପନିବେଶକାରୀ ଦେଶମାନଙ୍କରେ କଳାଲୋକଙ୍କ ସଂଖ୍ୟା ଅପେକ୍ଷାକୃତ ବେଶି, ତେବେ କଳା ଲୋକଟିଠାରୁ ଧଳାଲୋକଟି ସବୁ କ୍ଷେତ୍ରରେ ଉତ୍କୃଷ୍ଟ – ଏଇ ମନୋବୃତ୍ତି ସମଗ୍ର ୟୁରୋପ୍‌ର ଆକାଶକୁ ଅନ୍ଧାରିଆ କୁହୁଡ଼ି ପରି ଘୋଡ଼ାଇ ରଖିଛି ।

ମଣିଷର ଚମଡ଼ାର ରଙ୍ଗ ନିର୍ଣ୍ଣୟ କରେ ଜଳବାୟୁ ବା ବଂଶଗତ ଭିନ୍ନତା । ଏହା ସହିତ ଆପାତତଃ ମଣିଷର ପ୍ରଜ୍ଞା ବା ସାମର୍ଥ୍ୟର କୌଣସି ସମ୍ପର୍କ ନାହିଁ । କିନ୍ତୁ ଶତାବ୍ଦୀ ଶତାବ୍ଦୀ ଧରି ନିର୍ଦ୍ଦିଷ୍ଟ ଚମଡ଼ାର ରଙ୍ଗ ପ୍ରତି ନିର୍ଦ୍ଦିଷ୍ଟ ମନୋବୃତ୍ତିଟିଏ ବିସ୍ତାରିତ ହୋଇଛି । ଏହା ଯେପରି ଆଶ୍ଚର୍ଯ୍ୟକର, ସେହିପରି ଭୟାନକ ।

ତେବେ ଏହି ମନୋବୃତ୍ତିଟି ବୁଝିବାରେ ଆଧୁନିକ ଇତିହାସ ଓ ଅର୍ଥନୀତି କେତେକାଂଶରେ ସାହାଯ୍ୟ କରିପାରେ । ଗତ ଦୁଇ ଶତାବ୍ଦୀର ମଣିଷ ଜାତିର ଇତିହାସ ମୋଟାମୋଟି ଉପନିବେଶବାଦର ଇତିହାସ । ଉପନିବେଶବାଦର ଅର୍ଥ ଗୋଟିଏ ଦେଶ ବା ଗୋଷ୍ଠୀର ଅନ୍ୟ ଏକ ଦେଶ ବା ଗୋଷ୍ଠୀ ଉପରେ ରାଜନୀତିକ ଓ ଆର୍ଥନୀତିକ କ୍ଷମତା ଜାହିର୍ । ଗତ ଦୁଇ ଶହ ବର୍ଷରେ ଘଟଣାକ୍ରମେ ୟୁରୋପୀୟମାନେ ହିଁ ଏସିଆ, ଆଫ୍ରିକା, ଅଷ୍ଟ୍ରେଲିଆ ଓ ଆମେରିକା ମହାଦେଶମାନଙ୍କ ଉପରେ ନିଜର କର୍ତ୍ତୃତ୍ୱ ଜାହିର୍ କରିଥିଲେ (ବା, ତଥାପି କରିଛନ୍ତି ।)

ୟୁରୋପୀୟମାନଙ୍କ ଚମଡ଼ାର ରଙ୍ଗ ଧଳା; କିନ୍ତୁ ଅନ୍ୟ ମହାଦେଶର ଅଧିବାସୀମାନଙ୍କ ଚମଡ଼ାର ରଙ୍ଗ କଳା, ସାବନା ବା ହଳଦିଆ । ମୋଟାମୋଟି ତେଣୁ ଉପନିବେଶବାଦ କହିଲେ ବୁଝାଉଛି କଳାମଣିଷ ଉପରେ ଧଳାମଣିଷର ମାଲିକାନା ଓ ଆପାତତଃ ଏଇଥିରୁ ସୃଷ୍ଟି ହୋଇଛି ମନୋବୃତ୍ତିଟିଏ – ଯେ ଧଳା ମଣିଷ କଳା ମଣିଷଠାରୁ ଉତ୍କୃଷ୍ଟ ।

ବିଂଶ ଶତାବ୍ଦୀର ପ୍ରାରମ୍ଭରୁ ଅବଶ୍ୟ ଭାଙ୍ଗିପଡ଼ିବାରେ ଲାଗିଛି ଉପନିବେଶବାଦର ଦୁର୍ଗ । କିନ୍ତୁ ଶହ ଶହ ବର୍ଷର ଦୃଢ଼ୀଭୂତ ମନୋବୃତ୍ତି ଭାଙ୍ଗିଯିବା କ'ଣ ଏତେ ସହଜ ? ତା' ଛଡ଼ା ଅତୀତର ଉପନିବେଶକାରୀ ଧଳାମଣିଷମାନେ ହିଁ ତଥାପି ନିୟନ୍ତ୍ରଣ କରିବାରେ ଲାଗିଛନ୍ତି ପୃଥିବୀର ଅର୍ଥନୀତି ଓ ରାଜନୀତି । ସେହିମାନଙ୍କ ଭାଷା, ସଂସ୍କୃତି, ରାଜନୀତି ବ୍ୟାପିଚାଲିଛି ପୃଥିବୀ ସାରା । ତେଣୁ ଧଳାମଣିଷ କଳାମଣିଷଠାରୁ ଉତ୍କୃଷ୍ଟ – ଏଥିରେ ମଧ୍ୟ ବିଶ୍ୱାସ କରୁଛନ୍ତି ବହୁ କଳାମଣିଷ ! ×××

କଳାମଣିଷମାନଙ୍କ ପ୍ରତି ଧଳା ମଣିଷଙ୍କ ଘୃଣା ଓ ହତାଦର ସତ୍ତ୍ୱେ ୟୁରୋପ୍ ମହାଦେଶରେ ବସବାସ କରିବା ପାଇଁ କଳାମଣିଷଙ୍କ ବ୍ୟାକୁଳତା ତଥାପି ହ୍ରାସପାଇ ନାହିଁ । ନିଜର ଅନୁନ୍ନତ ପୈତୃକ ଭିଟାମାଟି ଛାଡ଼ି ଉନ୍ନତ ଦେଶରେ ବସବାସ କରିବା ସେମାନଙ୍କ ମଧ୍ୟରୁ ଅନେକଙ୍କ ପାଇଁ ଏକ ସ୍ୱାଭାବିକ ଆକର୍ଷଣ ! ତେବେ ଧଳାମଣିଷଙ୍କ ମନୋବୃତ୍ତି ବିରୁଦ୍ଧରେ ସଂଗ୍ରାମ କରିବା ଆଜି ୟୁରୋପ୍‌ର ବାସିନ୍ଦା ବା ୟୁରୋପ୍‌ରେ ବସବାସ କରିବାକୁ ଚାହୁଁଥିବା କଳା ମଣିଷ ପାଇଁ ଜରୁରୀ ହୋଇପଡ଼ିଛି । ଏଇ ସଂଗ୍ରାମରେ କଳାମଣିଷକୁ ସାହାଯ୍ୟ କରୁଛି ମାନବିକ ଅଧିକାରର ଆଇନ୍ ତଥା ବର୍ଣ୍ଣବୈଷମ୍ୟରେ ବିଶ୍ୱାସ କରୁ ନ ଥିବା ବିବେକବାନ୍ ନିର୍ଭୀକ ମୁଷ୍ଟିମେୟ ଧଳାମଣିଷ । ବିଲାତର ଦୁଇଟି ବହୁପ୍ରସାରିତ

ସମ୍ବାଦପତ୍ରରେ ପ୍ରକାଶିତ ଏଇ ସଂଗ୍ରାମର କାହାଣୀ ସଂକ୍ଷେପରେ ଏଠାରେ ଉଦ୍ଧାର କରାଗଲା ।

## ଅବ୍‌ଜରଭର୍

(୨୬ ଫେବୃଆରୀ, ୧୯୮୪)

ଜଣେ ସୁନାମଧନ୍ୟ ଭାରତୀୟ ଡାକ୍ତରଙ୍କ ବିଧବା ମାଆ ତାଙ୍କ ପୁଅକୁ ଭେଟିବାପାଇଁ ବିଲାତରେ ପ୍ରବେଶ ଅନୁମତି ପାଇ ନାହାନ୍ତି । ଡାକ୍ତରଙ୍କ ନାମ ସଞ୍ଜୟ ରାୟଚୌଧୁରୀ । ପରିବାରର ବନ୍ଧୁ ସାର୍ ହ୍ୟାରୀବୟେନ୍ ଡାକ୍ତରଙ୍କ ମାଆଙ୍କୁ ଭିସା ପ୍ରଦାନ ଲାଗି ହୋମ୍ ଅଫିସ୍‌କୁ ଆବେଦନ କରିଛନ୍ତି ।

ମାଆଙ୍କୁ ପ୍ରବେଶ ଅନୁମତି ନ ମିଳିବାରେ ଡାକ୍ତର ରାୟଚୌଧୁରୀ ମର୍ମାହତ । କଲିକତାର ବ୍ରିଟିଶ୍ ହାଇକମିଶନ୍ ତଥା ଲଣ୍ଡନ୍‌ରେ ଡାକ୍ତର ମାଆଙ୍କ ଭିସା ପାଇଁ ପ୍ରାର୍ଥନା ଖାରଜ ହୋଇଛି । ହୋମ୍ ଅଫିସର୍ ଜଣେ ମୁଖପାତ୍ର କହିଛନ୍ତି, ଡାକ୍ତରଙ୍କ ମାଆ କାଳେ ବିଲାତରେ ସ୍ଥାୟୀ ଭାବରେ ରହିଯିବେ, ସେହି ଭୟରେ ତାଙ୍କୁ ପ୍ରବେଶ ଅନୁମତି ଦିଆଯାଇ ନାହିଁ ।

ହୋମ୍ ଅଫିସ୍ ସୂତ୍ରରୁ ପ୍ରକାଶ, ୧୯୮୨ରେ ୫୩୪୪ଜଣ ଗୋରା ଲୋକ ବିଲାତରେ ପ୍ରବେଶ ଅନୁମତି ଚାହିଁଥିଲେ । ସେମାନଙ୍କ ମଧ୍ୟରୁ କେବଳ ଜଣକୁ ପ୍ରବେଶ ଅନୁମତି ମିଳି ନ ଥିଲା । କିନ୍ତୁ ପ୍ରବେଶ ଅନୁମତି ପାଇଁ କଳାଲୋକଙ୍କ ମଧ୍ୟରେ ଏହି ଅନୁପାତର ହାର ୧୫୯ରେ ଜଣେ ।

'ଦି ଟାଇମ୍‌ସ୍' (୨୮ ସେପ୍ଟେମ୍ବର, ୧୯୮୩)

ବିଲାତରେ ରହୁଥିବା ଶ୍ରୀମତୀ ମଞ୍ଜୁଳା ପଟେଲ୍ ଅବଶେଷରେ ତାଙ୍କର ତିନିପୁଅ ଜଏସ୍ (ବୟସ କୋଡ଼ିଏ) ସୁଜେଶ୍ (ବୟସ ସତର), ଦୀପ୍ତେଶ୍ (ବୟସ ଚଉଦ)ଙ୍କ ସହିତ ମିଳିତ ହୋଇ ପାରିଛନ୍ତି । ୧୯୭୯ରେ ଏହି ତିନି ପୁଅଙ୍କୁ ବିଲାତ ସରକାର ବିଲାତରୁ ବିତାଡ଼ନ କରିଥିଲେ । ସେତେବେଳେ କ୍ୟାଣ୍ଟରବରୀର ଅର୍ଚ୍ଚ୍ ବିଶପ୍ ମହାମାନ୍ୟ ଡକ୍ଟର୍ ରୋନାଲ୍ଡ଼୍ କୋଗାନ୍ ଏହାର ପ୍ରତିବାଦ କରିଥିଲେ ।

ଶ୍ରୀମତୀ ପଟେଲ୍‌ଙ୍କ ବୟସ ୪୩ । ସେ ସ୍ୱାମୀ ପରିତ୍ୟକ୍ତା ଓ ରହନ୍ତି କେଣ୍ଟର ଗିଲିଂହମ୍‌ରେ । ସେ କହନ୍ତି, ପିଲାମାନେ ସେମାନଙ୍କ ଘରକୁ ଫେରିଆସିଛନ୍ତି, ସେଥିପାଇଁ ମୁଁ ଖୁବ୍ ଆନନ୍ଦିତ ।



# କଳାମଣିଷ ଧଳାମଣିଷ – ୨

ଲଣ୍ଡନ୍ । ୧୯୮୪ ମେ ମାସ ୪ ଓ ୫ ତାରିଖ କମନ୍‌ୱେଲ୍‌ଥ୍ ଇନ୍‌ଷ୍ଟିଚ୍ୟୁଟ୍‌ରେ ଅନୁଷ୍ଠିତ ହେଉଥାଏ ଆଲୋଚନାଚକ୍ରଟିଏ – 'ଆଫ୍ରିକା ବାହାରେ ଆଫ୍ରିକା' । ଆଫ୍ରିକା, ଆମେରିକା, ୱେଷ୍ଟଇଣ୍ଡିଜ୍, ୟୁରୋପ୍‌ର ବିଭିନ୍ନ ଦେଶରୁ ସମବେତ ହୋଇଥା'ନ୍ତି ବହୁ ଆଫ୍ରିକାନ୍ ଓ ଆଫ୍ରିକା ମହାଦେଶର ଆଗ୍ରହୀ ଅଧ୍ୟାପକ, ଗବେଷକ, ଲେଖକ ଓ ଛାତ୍ର । ଆଫ୍ରିକାନ୍‌ମାନଙ୍କ କଳା, ସାହିତ୍ୟ, ସଙ୍ଗୀତ ଓ ଜୀବନଯାତ୍ରା କିପରି ଆଫ୍ରିକାର ସୀମା ଅତିକ୍ରମ କରି ଅନ୍ୟ ଦେଶମାନଙ୍କୁ ପ୍ରଭାବିତ କରିଛି, ତାହା ଥାଏ ଆଲୋଚନାର ବିଷୟବସ୍ତୁ ।

ଲଣ୍ଡନ୍‌ର ସ୍କୁଲ୍ ଅଫ୍ ଓରିଏଣ୍ଟାଲ୍ ଆଣ୍ଡ୍ ଆଫ୍ରିକାନ୍ ଷ୍ଟଡ଼ିଜ୍‌ର ଆଫ୍ରିକା ବିଭାଗର ଜଣେ ଗବେଷକ ଭାବରେ ମୋତେ ମିଳିଥାଏ ନିମନ୍ତ୍ରଣ ପତ୍ରଟିଏ ।

ସମାବେଶରେ ଅବଶ୍ୟ ଆଫ୍ରିକାର ବା ଆଫ୍ରିକାନ୍ ବଂଶୋଦ୍‌ଭବମାନଙ୍କ ସଂଖ୍ୟା ଥାଏ ଅଧିକ । କିନ୍ତୁ ଆଲୋଚନାଚକ୍ରରେ ମୁଖ୍ୟଭାଗ ନେଉଥା'ନ୍ତି ଅଣଆଫ୍ରିକାନ୍ ୟୁରୋପୀୟମାନେ । ଆଫ୍ରିକାର କଳା ଓ ସ୍ଥାପତ୍ୟ ସମ୍ପର୍କରେ ଭିତ୍ତିପ୍ରବନ୍ଧ ପାଠକ ଡେନିସ୍ ଡୁଏଡ୍ରେବ୍, ଆଫ୍ରିକାର କବିତା ସମ୍ପର୍କରେ କ୍ଲାଇଭ୍ ୱେକ୍ – ଏମାନେ ଥା'ନ୍ତି ଇଂରେଜ । ଆଲୋଚନାଚକ୍ରର ଉଦ୍ୟୋକ୍ତାମାନେ ମଧ୍ୟ ଥା'ନ୍ତି ସ୍ୱାଭାବିକ ଭାବରେ କମନ୍‌ୱେଲ୍‌ଥ୍ ଇନ୍‌ଷ୍ଟିଚ୍ୟୁଟ୍‌ର ଇଂରେଜ ଅଫିସରମାନେ ।

ଏପରି ଆଲୋଚନାଚକ୍ରଟିର ଆୟୋଜନ କରିପାରିଥିବାରୁ ଆଲୋଚକମାନେ ଉଦ୍ୟୋକ୍ତାମାନଙ୍କୁ ଅଭିନନ୍ଦନ ଜଣାଉଥା'ନ୍ତି ଓ ଆଫ୍ରିକାର ଗୌରବମୟ ସାଂସ୍କୃତିକ ପରମ୍ପରା ତଥା ଆଫ୍ରିକା ବାହାରେ ତାହାର ପ୍ରସାର ସମ୍ପର୍କରେ ପ୍ରଜ୍ଞାଦୀପ୍ତ ପ୍ରବନ୍ଧମାନ ପାଠ କରୁଥା'ନ୍ତି ।

ଆଲୋଚନାର ସ୍ୱାଭାବିକ ଧାରାକୁ ହଠାତ୍ ବିପର୍ଯ୍ୟସ୍ତ କରିପକାଇଲେ ଜଣେ କ୍ଷୁଦ୍ରକାୟ, ବୃଦ୍ଧ କଳାମଣିଷ । ଆଫ୍ରି–ବିଶେଷଜ୍ଞ ଧଳା ମଣିଷମାନଙ୍କ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି ଏକାନ୍ତ ଭାବପ୍ରବଣ, ଉତ୍ତେଜନାମୟ ଭାଷାରେ ସେ ଉଠାଇଲେ ମୌଳିକ ପ୍ରଶ୍ନଟିଏ – ଯେ ଆଫ୍ରିକା ସମ୍ପର୍କରେ ଧଳାମଣିଷମାନଙ୍କର କି ଅଧିକାର ଅଛି ଲମ୍ବାଚଉଡ଼ା ଭାଷଣମାନ ଅଝାଡ଼ି ଦେବାର ? ଶତାବ୍ଦୀ ଶତାବ୍ଦୀ ଧରି ଯେଉଁମାନେ ଲୁଣ୍ଠନ କରିଆସିଛନ୍ତି କଳାମଣିଷର ସମ୍ମାନ ଓ ସମ୍ପଦ, ସେହିମାନେ ହିଁ ଆଜି ହଠାତ୍ ଆଫ୍ରିକାର ଶୁଭାକାଂକ୍ଷୀ ସାଜି ଆଫ୍ରିକା ସମ୍ପର୍କରେ ଶୁଣାଉଛନ୍ତି ତତ୍ତ୍ୱଜ୍ଞାନ ! ଏଣେ ଲଣ୍ଡନ୍‌ରେ ଧଳା ମଣିଷମାନେ ଆଫ୍ରିକା ସମ୍ପର୍କରେ ଆଲୋଚନାଚକ୍ରଟିଏ ଆୟୋଜନ କରୁଥିବାବେଳେ ସେଆଡ଼େ ଯୁକ୍ତରାଷ୍ଟ୍ର ଆମେରିକାର ସୈନ୍ୟମାନେ କ୍ଷୁଦ୍ର ଗ୍ରେନେଡ଼ା ଦ୍ୱୀପରେ କଳାମଣିଷମାନଙ୍କୁ ହତ୍ୟାକରି ଚାଲିଛନ୍ତି ବୁଲା

କୁକୁର ବା ଘୁଷୁରିପରି ! ଏ ଆଲୋଚନାଚକ୍ର ତେଣୁ ଏକ ପ୍ରହସନ, ଏକ ଭାଣ୍ଡାମି – ଏଥିରେ ଧଳାମଣିଷର କୌଣସି ଆନ୍ତରିକତା ନାହିଁ, ବୃଦ୍ଧ କଳାମଣିଷ ଦୋହରାଉଥିଲେ । ତାଙ୍କ ମତରେ ରାଜନୀତିକ ଉପନିବେଶବାଦର ଦ୍ରୁତଗତିରେ ବିଲୟ ଘଟୁଥିବାରୁ ଧଳାମଣିଷ ଆଜି ଚକ୍ରାନ୍ତ ଆରମ୍ଭ କରିଦେଇଛି କଳାମଣିଷର ଅର୍ଥନୀତି, ସଂସ୍କୃତି ଉପରେ ନିଜର ମାଲିକାନା ଜାହିର କରିବା ପାଇଁ । ସେଥିପାଇଁ କଳାମଣିଷକୁ ତା' ନିଜର ଇତିହାସ ଓ ସଂସ୍କୃତି ସମ୍ପର୍କରେ ଶିକ୍ଷାଦେବାକୁ ଉଦ୍ୟମ ଆରମ୍ଭ କରିଦେଇଛି ଧଳାମଣିଷ !!

ସେ କହିଥିଲେ, ଧଳାମଣିଷ ତା' ଦେଶରେ କଳାମଣିଷକୁ ମଣିଷର ସ୍ଥାନ ଦିଏ ନାହିଁ । ମନେକରେ, କଳାମଣିଷ ଅସଭ୍ୟ, ବର୍ବର – ଧଳାମଣିଷର ବୋଝ । ତେଣୁ କଳାମଣିଷର ଇତିହାସ ଓ ସଂସ୍କୃତିର ଅଧ୍ୟୟନ ପାଇଁ ଉଦ୍ଦିଷ୍ଟ ସ୍କୁଲ୍ ଅଫ୍ ଓରିଏଣ୍ଟାଲ୍ ଏଣ୍ଡ ଆଫ୍ରିକାନ୍ ଷ୍ଟଡ଼ିଜ୍‌ରେ ପ୍ରାୟ ସମସ୍ତ ଅଧ୍ୟାପକ ୟୁରୋପୀୟ । ଅଥଚ କଳାମଣିଷକୁ ଭଣ୍ଡାଇବା ପାଇଁ କଳାମଣିଷ ଗୌରବ ଓ ଉତ୍କର୍ଷତା ସମ୍ପର୍କରେ ଧଳାମଣିଷ ଆୟୋଜନ କରିପାରେ ଆଲୋଚନାଚକ୍ର !! ×××

ସେ ଦିନର ସେହି ବକ୍ତାଙ୍କ ନାମ ଥିଲା ପିଟର୍ ବ୍ଲାକ୍‌ମ୍ୟାନ୍ । ପିଚୁ ପରି କଳା, ସମ୍ପୂର୍ଣ୍ଣ ଚନ୍ଦା, ସୁଟ୍-ପରିହିତ, ଆଖି ଓ କଣ୍ଠରୁ ତାଙ୍କର ଝରୁଥିଲା ନିଆଁ ଓ କ୍ରୋଧ – ଧଳାମଣିଷ ବିରୁଦ୍ଧରେ । ଅତ୍ୟାଚାରିତ, ଧର୍ଷିତ ଆଫ୍ରିକା ମହାଦେଶର ପୁଞ୍ଜିଭୂତ ବ୍ୟଥା ଓ ଗ୍ଲାନି ଯେପରି ପ୍ରଥମଥର ପାଇଁ ସେ ଦିନ ଶୁଣିବାକୁ ପାଇଥିଲା ଧଳାମଣିଷ !

ପ୍ରଚଣ୍ଡ ଉତ୍ତେଜନାରେ କରତାଳି ଦେଇ ଚାଲିଥିଲେ ସମବେତ କଳାମଣିଷମାନେ ! ଧଳାମଣିଷମାନେ ଦିଶୁଥିଲେ ଗମ୍ଭୀର, ଅପ୍ରସ୍ତୁତ । ×××

ପିଟର୍ ବ୍ଲାକ୍‌ମ୍ୟାନଙ୍କ ଜନ୍ମଭୂମି ବାର୍‌ବାଡ଼ସ୍ – ଆଟ୍‌ଲାଣ୍ଟିକ୍ ମହାସାଗରର କ୍ଷୁଦ୍ର ଦ୍ୱୀପଟିଏ । ଷୋଡ଼ଶ ଶତାବ୍ଦୀରୁ ୟୁରୋପୀୟମାନଙ୍କର ଏହା ହୋଇ ଆସିଥିଲା ଉପନିବେଶ । ଦେଶରେ କିନ୍ତୁ ୟୁରୋପୀୟମାନଙ୍କ ସଂଖ୍ୟା ଶତକଡ଼ା ଚାରି; ଶତକଡ଼ା ଛୟାନବେ କଳାମଣିଷ । ବାର୍‌ବାଡ଼ସ୍‌ର ଇତିହାସ ତେଣୁ ସଂକ୍ଷେପରେ କଳାମଣିଷ ଉପରେ ଧଳାମଣିଷର ଅତ୍ୟାଚାର ଓ ଶୋଷଣର ବିବରଣୀ । ୧୯୬୬ରେ ଅବଶ୍ୟ ବାର୍‌ବାଡ଼ସ୍ ସ୍ୱାଧୀନତାଲାଭ କରିଛି । କିନ୍ତୁ ପିଟର୍ ବ୍ଲାକ୍‌ମ୍ୟାନ୍‌ଙ୍କ ପରି ବୃଦ୍ଧମାନେ ଇତିହାସକୁ ଏତେ ଶୀଘ୍ର ଭୁଲି ଯାଆନ୍ତେ କିପରି ? ପୁଣି, ବାର୍‌ବାଡ଼ସ୍‌ର ସ୍ୱାଧୀନତା ସଂଗ୍ରାମରେ ବ୍ଲାକ୍‌ମ୍ୟାନ୍ ନିଜେ ଥିଲେ ଜଣେ ଯୋଦ୍ଧା । ଅନେକଗୁଡ଼ିଏ ଦେଶାତ୍ମବୋଧକ କବିତାର ମଧ୍ୟ ସେ ସ୍ରଷ୍ଟା ।

ଏହି ପରିପ୍ରେକ୍ଷୀରେ ସେଦିନର ଉତ୍ତେଜନାମୟ ଭାଷଣ ବ୍ଲାକ୍‌ମ୍ୟାନ୍‌ଙ୍କ ପକ୍ଷରେ ସମ୍ପୂର୍ଣ୍ଣ ସ୍ୱାଭାବିକ ଥିଲା ନିଶ୍ଚୟ । ×××

ଇତିହାସ କିନ୍ତୁ ଏକ ଦୁଇଧାରୁଆ ଖଣ୍ଡା ! ଧଳାମଣିଷ ବିରୁଦ୍ଧରେ ପିଟର୍ ବ୍ଲାକ୍‌ମ୍ୟାନ୍ ବା କଳାମଣିଷମାନଙ୍କ ଅଭିଯୋଗ ଅବଶ୍ୟ ଯଥାର୍ଥ । କିନ୍ତୁ ଧଳାମଣିଷ କଳାମଣିଷ ସମ୍ପର୍କ କେବଳ ଅଭିଯୋଗ ବା ଘୃଣାର ସମ୍ପର୍କ ନୁହେଁ – ଏହା ଏକାଧାରରେ ଘୃଣା ଓ ପ୍ରେମର ସମ୍ପର୍କ ଏବଂ ସେଥିପାଇଁ ଏକାନ୍ତ ଜଟିଳ ଓ ରହସ୍ୟମୟ !

କଳାମଣିଷ ପାଇଁ ପିଟର୍ ବ୍ଲାକ୍‌ମ୍ୟାନ୍‌ଙ୍କ ପ୍ରାଣ କାନ୍ଦୁଥିଲେହେଁ, ସେ ନିଜେ ରହନ୍ତି ଧଳାମଣିଷର ଦେଶ ଇଂଲାଣ୍ଡରେ । ବାର୍‌ବାଡ଼ସ୍‌ର ସ୍ୱାଧୀନତା ପାଇଁ ସଂଗ୍ରାମ କରିଥିଲେ ସେ । କିନ୍ତୁ ବାର୍‌ବାଡ଼ସ୍ ସ୍ୱାଧୀନ ହେବା ପରେ ସେ ପଳାଇ ଆସିଛନ୍ତି ପୂର୍ବତନ ଉପନିବେଶକାରୀ ଇଂରେଜମାନଙ୍କ ସମାଜକୁ – ଯେଉଁମାନଙ୍କ ବିରୁଦ୍ଧରେ ଭାଷଣ ଦେବା ଓ କବିତା ଲେଖିବାରେ ସେ ଅଭ୍ୟସ୍ତ ଥିଲେ ଓ ଏବେବି ଅଛନ୍ତି, ସେମାନଙ୍କ ନିକଟକୁ ।

କାହିଁକି ? ତାହାର ସଠିକ୍ ଉତ୍ତର ଅବଶ୍ୟ ବ୍ଲାକ୍‌ମ୍ୟାନ୍ ନିଜେ ହିଁ ଦେଇପାରିବେ । ତେବେ ଅନୁମାନ କରିବା ସହଜ ଯେ ବ୍ଲାକ୍‌ମ୍ୟାନ୍ ନିଜେ ଚାହାନ୍ତି ଧଳାମଣିଷର ଦେଶ ଯୋଗାଇ ଦେଉଥିବା ଆର୍ଥନୀତିକ ଓ ସ୍ୱାଚ୍ଛନ୍ଦ୍ୟ ବାକ୍‌ସ୍ୱାଧୀନତା । ବାର୍‌ବାଡ଼ସ୍‌ର କଳାମଣିଷର ଅଧିକାର ସପକ୍ଷରେ ଭାଷଣ ଦେବା ବା କବିତା ଲେଖିବା ଯେତେ ସହଜ, ବାର୍‌ବାଡ଼ସ୍‌ର ଦାରିଦ୍ର୍ୟ ଓ ଆବର୍ଜନା ମଧ୍ୟରେ ଜୀବନ ବିତାଇବା ଅବଶ୍ୟ ସେତେ ସହଜ ନୁହେଁ ! ତା'ଛଡ଼ା ଧଳାମଣିଷ ହିଁ ବିଶ୍ୱାସ କରେ ଗଣତନ୍ତ୍ର ଓ ବାକ୍ ସ୍ୱାଧୀନତାରେ । ଧଳାମଣିଷର ଦେଶରେ ହିଁ ତେଣୁ ଧଳାମଣିଷକୁ ଯଥେଚ୍ଛା ଗାଳି ଦେଇହୁଏ । ନିଜର ଦେଶ ବାର୍‌ବାଡ଼ସ୍‌ରେ କିନ୍ତୁ କଳା ଶାସକକୁ ଭର୍ତ୍ସନା କରିବା ଏତେ ସହଜ ନୁହେଁ । ଉପନିବେଶକାରୀ ଶକ୍ତିମାନଙ୍କୁ ନିଜ ଦେଶରୁ ହଟାଇ ଦେଇଥିବା କଳାମଣିଷମାନଙ୍କ ଦେଶରେ ଆଜି ଏକଚ୍ଛତ୍ରବାଦ ବା ସାମରିକ ଶାସନ ହିଁ ପ୍ରଚଣ୍ଡ ହୋଇଛି । କଳାମଣିଷ ୟୁରୋପୀୟମାନଙ୍କଠାରୁ ସ୍ୱାଧୀନତା ହାସଲ କରିଛି, କିନ୍ତୁ ନିଜ ଦେଶରେ ହରାଇ ବସିଛି ତା' ନିଜର ବାକ୍ ସ୍ୱାଧୀନତା । ଇତିହାସର କି ଭୟଙ୍କର ବିଦ୍ରୂପ !!

'ଧଳାମଣିଷ ବିରୁଦ୍ଧରେ ବିଦ୍ରୋହ କର, ଅଥଚ ସେଇ ଧଳାମଣିଷର ହିଁ ଆଶ୍ରୟ ନିଅ' – ପିଟର୍ ବ୍ଲାକ୍‌ମ୍ୟାନ୍‌ଙ୍କ କର୍ମମୟ ଜୀବନ ଯେପରି ଏଇ ବାର୍ତ୍ତା ହିଁ ପ୍ରଚାର କରୁଛି । ସେଦିନର ତାଙ୍କ ଭାଷଣରେ କିନ୍ତୁ ଏଇ ବାର୍ତ୍ତାଟିର କେବଳ ପ୍ରଥମ ଅଂଶଟି ହିଁ ଉଚ୍ଚାରିତ ହେଉଥିଲା !!!



# ଲଣ୍ଡନ୍ ଓ ଓଡ଼ିଆ ଭାଷା

ଲଣ୍ଡନ୍ ବିଦ୍ୟାଳୟର ସ୍କୁଲ ଅଫ୍ ଓରିଏଣ୍ଟାଲ୍ ଏଣ୍ଡ୍ ଆଫ୍ରିକାନ୍ ଷ୍ଟଡ଼ିଜ୍‌ର ୪୮୨ ନମ୍ବର ରୁମ୍ । ସେହି ରୁମ୍‌ରେ ଅନେକ ସମୟ ମୁଁ କଟାଇଛି । ସେହି ରୁମ୍‌ଟି ଡକ୍ଟର ଜନ୍ ବୋଲ୍‌ଟନ୍‌ଙ୍କର । ସେ ହେଉଛନ୍ତି ଲଣ୍ଡନ୍ ବିଶ୍ୱବିଦ୍ୟାଳୟର ଓଡ଼ିଆ ଅଧ୍ୟାପକ ।

ବୋଲ୍‌ଟନ୍‌ଙ୍କ ରୁମ୍‌ରେ ପହଞ୍ଚିଲେ ସେ ଅବିଳମ୍ବେ ପ୍ରସ୍ତୁତ କରନ୍ତି କଳା କଫି ଓ ପ୍ଲାଷ୍ଟିକ୍ ବ୍ୟାଗ୍‌ରୁ ବାହାର କରନ୍ତି ବିଭିନ୍ନ ଫଳ । କଫି ଓ ଫଳ ସାଙ୍ଗକୁ ତାଙ୍କ ରୁମ୍‌ର ଆଉ ଗୋଟିଏ ଆକର୍ଷଣ ଥାଏ ସାପ୍ତାହିକ 'ସମାଜ' । ଲଣ୍ଡନ୍‌ରେ ରହୁଥିବା ସମୟରେ ଅନ୍ତତଃ ଓଡ଼ିଶା ସହିତ ସମ୍ପର୍କ ରଖିବା ପାଇଁ ଗୋଟିଏ ମାଧ୍ୟମ ଥାଏ ସାପ୍ତାହିକ 'ସମାଜ' । ବିଦେଶୀ ପାଠକମାନଙ୍କ ପାଇଁ ଉଦ୍ଦିଷ୍ଟ ସାପ୍ତାହିକ 'ସମାଜ'ର କପିଟିଏ ନିୟମିତ ପହଞ୍ଚୁ ଥାଏ ବୋଲ୍‌ଟନ୍‌ଙ୍କ ନିକଟରେ ।

ଆମେ କଫି ଓ ଫଳ ଖାଉ ଓ ଘଣ୍ଟା ଘଣ୍ଟା ଆଲୋଚନା କରୁ ଓଡ଼ିଆ ଓ ଭାରତୀୟ ସାହିତ୍ୟ ସମ୍ପର୍କରେ । ଡକ୍ଟର୍ ବୋଲ୍‌ଟନ୍ ବହୁ ସମୟରେ ଓଡ଼ିଆ ଓ ବଙ୍ଗଳା ଭାଷାର ତୁଳନାତ୍ମକ ଆଲୋଚନା କରନ୍ତି ଓ ରାମାୟଣ ସମ୍ପର୍କରେ ତାଙ୍କର ମୌଳିକ ବିଚାରଟି ଦୋହରାନ୍ତି । ତାଙ୍କ ମତରେ ରାମାୟଣ ମୂଳତଃ ଦ୍ରାବିଡ଼ ସଂସ୍କୃତିର ଅଂଶ । ଆର୍ଯ୍ୟମାନେ ଏହା ଦ୍ରାବିଡ଼ମାନଙ୍କଠାରୁ ଆହରଣ କରିଛନ୍ତି ।

ବୋଲ୍‌ଟନ୍‌ଙ୍କ ବୟସ ପ୍ରାୟ ପଚାଶ, ମେଳାପୀ, ହସ ହସ ଓ ଆଳାପପ୍ରିୟ । ଥରେ ତାଙ୍କ ରୁମ୍‌ରେ ପହଞ୍ଚିଲେ ସହଜରେ ଛାଡ଼ନ୍ତି ନାହିଁ । ଓଡ଼ିଶା ଓ ଓଡ଼ିଆ ଭାଷା-ସାହିତ୍ୟ ପ୍ରତି ତାଙ୍କର ଶ୍ରଦ୍ଧା ଯଥେଷ୍ଟ । ତାଙ୍କ ରୁମ୍‌ର କାନ୍ଥରେ ରଥଯାତ୍ରା କୋଣାର୍କର ଚିତ୍ର । ଆଲମିରାରେ ଥାକ ଥାକ ଓଡ଼ିଆ ବହି । ଲଣ୍ଡନ୍ ମହାନଗରୀ ତଥା ସମଗ୍ର ପାଶ୍ଚାତ୍ୟ ପୃଥିବୀରେ ଓଡ଼ିଆ ଭାଷା ଓ ସାହିତ୍ୟରେ ବ୍ୟୁତ୍ପତ୍ତି ଲାଭ କରିଥିବା ଏକମାତ୍ର ୟୁରୋପୀୟ ଜନ୍.ଭି. ବୋଲ୍‌ଟନ୍ ।

୧୯୬୪ରେ ଲଣ୍ଡନ୍ ବିଶ୍ୱବିଦ୍ୟାଳୟରେ ଇଣ୍ଡୋଲୋଜି ଅର୍ଥାତ୍ ଭାରତୀୟ ବିଦ୍ୟା ବିଭାଗରେ ପାଞ୍ଚଟି ପ୍ରାଚୀନ ଓ ନଅଟି ଆଧୁନିକ ଭାରତୀୟ ଭାଷା ଅଧ୍ୟୟନର ବ୍ୟବସ୍ଥା କରାଯାଇଥିଲା । ପ୍ରାଚୀନ ଭାଷାଗୁଡ଼ିକ ହେଲେ ସଂସ୍କୃତ, ବୌଦ୍ଧଯୁଗର ସଂସ୍କୃତି, ପାଲି, ପ୍ରାକୃତ ଓ ଦ୍ରାବିଡ଼ ଭାଷା । ଆଧୁନିକ ଭାଷାଗୁଡ଼ିକ ହେଲେ ବଙ୍ଗଳା, ଗୁଜରାଟୀ, ହିନ୍ଦୀ, ମରାଠୀ, ନେପାଳୀ, ଓଡ଼ିଆ, ସିଂହଳୀ, ତାମିଲ ଓ ଉର୍ଦ୍ଦୁ । ଭାରତୀୟ ବିଭାଗରେ ମୋଟ୍‌ରେ ୨୭ଜଣ ଅଧ୍ୟାପକ ନିଯୁକ୍ତ ହେଲେ । ଭାରତୀୟ ଭାଷାଗୁଡ଼ିକ ବ୍ୟତୀତ ଭାରତୀୟ କଳା, ସଙ୍ଗୀତ, ଧର୍ମ, ସ୍ଥାପତ୍ୟ ପ୍ରଭୃତିରେ ମଧ୍ୟ ପାଠକ୍ରମ ପ୍ରବର୍ତ୍ତିତ ହେଲା ।

ଆମର ସୌଭାଗ୍ୟ, ଲଣ୍ଡନ୍ ବିଶ୍ୱବିଦ୍ୟାଳୟରେ ମାତ୍ର ନଅଟି ଭାରତୀୟ ଭାଷା ମଧ୍ୟରେ ସ୍ଥାନ ପାଇଲା ଓଡ଼ିଆ ଏବଂ ଗତ କୋଡ଼ିଏ ବର୍ଷ ହେଲା ଲଣ୍ଡନ୍ ବିଶ୍ୱବିଦ୍ୟାଳୟର ପ୍ରସ୍‌ପେକ୍ଟସ୍‌ରେ ଓଡ଼ିଆ ଭାଷା ଅଧ୍ୟୟନର ସୁଯୋଗ ଘୋଷଣା କରାଯାଇଛି । ପ୍ରଥମରୁ ଡକ୍ଟର ବୋଲ୍‌ଟନ୍ ଓଡ଼ିଆ ଭାଷାର ଦାୟିତ୍ୱରେ ଅଛନ୍ତି ଏବଂ ଜର୍ମାନ୍ ଭାଷାରେ ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ଇତିହାସଟିଏ ପ୍ରକାଶ କରିଛନ୍ତି । ଜର୍ମାନୀରୁ ପ୍ରକାଶିତ Journal of South East Asian Studiesରେ ଓଡ଼ିଆ ଭାଷା ଓ ସାହିତ୍ୟ ସମ୍ପର୍କରେ କେତେକ ଆଲୋଚନା ମଧ୍ୟ ସେ ପ୍ରକାଶ କରିଛନ୍ତି । ବେଶ୍ କିଛି ବର୍ଷ ତଳେ ପ୍ରଜାତନ୍ତ୍ର ପ୍ରଚାର ସମିତିର ନିମନ୍ତ୍ରଣରେ ସେ ଓଡ଼ିଶା ଆସିଥିଲେ । ଓଡ଼ିଶାରେ ମଧ୍ୟ ତାଙ୍କର କେତୋଟି ପ୍ରବନ୍ଧ ପ୍ରକାଶିତ । ପି.ଏଚ୍.ଡ଼ି. ପାଇଁ ତାଙ୍କ ଗବେଷଣାର ବିଷୟବସ୍ତୁ ଥିଲା ଫକୀରମୋହନ ସାହିତ୍ୟ । ଫକୀରମୋହନଙ୍କ ସମ୍ପର୍କରେ ତାଙ୍କର ଏକ ଭାଷଣ ଓଡ଼ିଶା ସାହିତ୍ୟ ଏକାଡେମୀ ପ୍ରକାଶ କରିଛନ୍ତି ।

ସ୍କୁଲ୍ ଅଫ୍ ଓରିଏଣ୍ଟାଲ୍ ଏଣ୍ଡ୍ ଆଫ୍ରିକାନ୍ ଷ୍ଟଡ଼ିଜ୍ ପାଠାଗାରରେ ବେଶ୍ କିଛି ସଂଖ୍ୟକ ଓଡ଼ିଆ ବହି ଅଛି ଏବଂ ବିଶେଷତଃ ଓଡ଼ିଶାର ପାଠାଗାରମାନଙ୍କରେ ଦୁର୍ଲ୍ଲଭ କେତେକ ଓଡ଼ିଆ ବହି ଏଠାରେ ଦେଖିବାକୁ ମିଳେ । ଇଣ୍ଡିଆ ଅଫିସ୍ ପାଠାଗାରରେ ମଧ୍ୟ ଓଡ଼ିଆ ବିଭାଗଟିଏ ଅଛି ।

କିନ୍ତୁ ଜଣେ ସୁଯୋଗ୍ୟ ଅଧ୍ୟାପକଙ୍କ ଉପସ୍ଥିତି ଏବଂ ପାଠାଗାରର ସୁବିଧା ସହ ଲଣ୍ଡନ୍ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ନିକଟ ଅତୀତରେ ଘୋଷଣା କରିଛନ୍ତି ଯେ ସେମାନେ ବିଶ୍ୱବିଦ୍ୟାଳୟ ପାଠ୍ୟକ୍ରମରୁ ଓଡ଼ିଆ ଭାଷା ଅଧ୍ୟୟନକୁ ବାଦ୍‌ଦେବେ । ସ୍କୁଲ୍ ଅଫ୍ ଓରିଏଣ୍ଟାଲ୍ ଏଣ୍ଡ୍ ଆଫ୍ରିକାନ୍ ଷ୍ଟଡ଼ିଜ୍ ଦ୍ୱାରା ପ୍ରକାଶିତ Development of a Strategy for Higher Education in to the 1995 ପୁସ୍ତିକାରେ ଏହା ଘୋଷଣା କରାଯାଇଛି । × × ×

ଲଣ୍ଡନ୍ ବିଶ୍ୱବିଦ୍ୟାଳୟରୁ ଓଡ଼ିଆ ଭାଷା ଉଠିଯିବା ସମ୍ବନ୍ଧରେ ସଂସ୍କୃତିପ୍ରେମୀ ଓଡ଼ିଆମାନେ ବ୍ୟଥିତ ହେବା ନିଶ୍ଚିତ । ଡକ୍ଟର ବୋଲଟନ୍ ନିଜେ ଏଥିରେ କମ୍ ଦୁଃଖିତ ନୁହନ୍ତି । ମାତ୍ର କୋଡ଼ିଏ ବର୍ଷ ପରେ ଲଣ୍ଡନ୍ ବିଶ୍ୱବିଦ୍ୟାଳୟରୁ ଓଡ଼ିଆ ଭାଷା ଉଠିଯିବାର ଆବଶ୍ୟକତା ପଡ଼ିଲା କାହିଁକି ?

ଏ ସମ୍ପର୍କରେ ବୋଲ୍‌ଟନ୍‌ସାହେବଙ୍କ ସହିତ ଦୀର୍ଘ ଆଲୋଚନା କରିବାର ସୁଯୋଗ ମିଳିଥିଲା ।

ଲଣ୍ଡନ୍ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କ ଅଭିଯୋଗ, ଓଡ଼ିଆ ବିଭାଗରେ ଗତ କୋଡ଼ିଏ ବର୍ଷ ଭିତରେ ହୋଇଥିବା ଶିକ୍ଷା ଓ ଗବେଷଣା ବିଭାଗଟିଏ ଚାଲୁ ରଖିବା ପାଇଁ ଯଥେଷ୍ଟ ନୁହେଁ । ସେମାନଙ୍କ ଅଭିଯୋଗର ଯଥାର୍ଥତା ସ୍ୱୀକାର କରିବାକୁ ହେବ । ଓଡ଼ିଆ ବିଭାଗରେ

କେବେ କିପରି ଜଣେ ଦୁଇଜଣ ଇଂରେଜ ଛାତ୍ର ଯୋଗଦେଇ ପାରନ୍ତି । ମାତ୍ର ଓଡ଼ିଆ ଭାଷା ଓ ସାହିତ୍ୟର ଗବେଷଣା ତଥା ଅନୁବାଦରେ ଏହି ବିଭାଗ ଏକ ମୂଲ୍ୟବାନ ଭୂମିକା ଗ୍ରହଣ ନ କଲେ ବିଭାଗଟି ତିଷ୍ଠି ରହିବା ସହଜ ନୁହେଁ । ହିନ୍ଦୀ, ଉର୍ଦ୍ଦୁ ଓ ବଙ୍ଗଳା ପ୍ରଭୃତି ବିଭାଗରେ ଅତୀତରେ ଉଲ୍ଲେଖଯୋଗ୍ୟ ଗବେଷଣା ଓ ଅନୁବାଦ କାର୍ଯ୍ୟ ସମ୍ଭବ ହୋଇପାରିଛି । ମାତ୍ର ଓଡ଼ିଆ ବିଭାଗରେ ସେପରି ହୋଇପାରି ନାହିଁ । ଓଡ଼ିଆ ବିଭାଗ ପ୍ରତି ଏଯାବତ୍ ଓଡ଼ିଶା ସରକାର, ସାହିତ୍ୟ ଏକାଡେମୀ କିମ୍ବା ଓଡ଼ିଶାର ବିଶ୍ୱବିଦ୍ୟାଳୟମାନଙ୍କର ଦୃଷ୍ଟି ପଡ଼ି ନାହିଁ । ଓଡ଼ିଆମାନଙ୍କ ସମର୍ଥନ ଓ ଆଗ୍ରହ ବ୍ୟତୀତ ଲଣ୍ଡନ୍ ଭଳି ମହାନଗରୀରେ ଓଡ଼ିଆ ବିଭାଗଟି ଭୁଷୁଡ଼ି ପଡ଼ିବାକୁ ବାଧ୍ୟ, ଏହା ବୁଝିବା ଖୁବ୍ କଠିନ ନୁହେଁ ।

ଲଣ୍ଡନ୍ ବିଶ୍ୱବିଦ୍ୟାଳୟରୁ ଓଡ଼ିଆ ଭାଷା ଉଠିଯିବା ସମ୍ପର୍କରେ ଓଡ଼ିଆ ସାହିତ୍ୟ ଓ ସଂସ୍କୃତିରେ ଆଗ୍ରହୀ ଲଣ୍ଡନର ଜଣେ ଓଡ଼ିଆ ବନ୍ଧୁଙ୍କୁ କହିଲେ, 'ଯେଉଁମାନେ ଓଡ଼ିଆ ପଢ଼ିବାକୁ ଚାହାନ୍ତି, ସେମାନେ ଓଡ଼ିଶା ଯିବା ଉଚିତ । ଲଣ୍ଡନ୍‌ରେ କି ଓଡ଼ିଆ ପଢ଼ାଯିବ ?' ପୂର୍ବରୁ ପ୍ରସ୍ତୁତ ଥିଲା ଭଳି ବନ୍ଧୁଙ୍କ ରୋକ୍‌ଠୋକ୍ ଉତ୍ତର ।

ଇଂଲାଣ୍ଡର ଓଡ଼ିଆମାନେ ଲଣ୍ଡନ୍ ବିଶ୍ୱବିଦ୍ୟାଳୟରେ ସେମାନଙ୍କ ଭାଷା ଓ ସଂସ୍କୃତିର ପ୍ରତିନିଧିତ୍ୱ କରୁଥିବା ବିଭାଗଟି ପ୍ରତି ସହାନୁଭୂତିଶୀଳ ଥିବାର ଆପାତତଃ କୌଣସି ପ୍ରମାଣ ନାହିଁ ।

ଅବଶ୍ୟ ବିଳମ୍ବ ହୋଇ ସାରିଛି । ତଥାପି ଆଶା କରାଯାଉ, ଲଣ୍ଡନ୍ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଶିକ୍ଷା କାର୍ଯ୍ୟକ୍ରମ ଚାଲୁ ରଖିବା ପାଇଁ ଓଡ଼ିଶାର ସରକାର, ସାହିତ୍ୟ ଏକାଡେମୀ ଓ ବିଶ୍ୱବିଦ୍ୟାଳୟମାନେ ଆବଶ୍ୟକୀୟ ଆଗ୍ରହ ଓ ଉତ୍ସାହ ପ୍ରକାଶ କରିବେ । ସେମାନଙ୍କ ବିଚାର ପାଇଁ ଏଠାରେ ୩ଟି ପ୍ରସ୍ତାବ ପେଶ୍ କରାଯାଇଛି ।

(୧) ଓଡ଼ିଶା ସରକାର ଡକ୍ଟର୍ ବୋଲ୍‌ଟନ୍‌ଙ୍କୁ ଛ' ମାସ ପାଇଁ ଓଡ଼ିଶା ଆସିବାକୁ ନିମନ୍ତ୍ରଣ କରନ୍ତୁ ଓ ତାଙ୍କ ସହଯୋଗରେ ପ୍ରତିନିଧିମୂଳକ ଓଡ଼ିଆ ଲେଖାର ସଂକଳନଟିଏ ଇଂରାଜୀ ଭାଷାରେ ପ୍ରସ୍ତୁତ କରନ୍ତୁ । (କହିବା ବାହୁଲ୍ୟ, ଅଣଓଡ଼ିଆ ପାଠକମାନଙ୍କ ପାଇଁ ଏପରି ସଂକଳନଟିଏ ନିହାତି ଆବଶ୍ୟକ ।)

(୨) ଓଡ଼ିଶାର ବିଶ୍ୱବିଦ୍ୟାଳୟମାନେ ଓଡ଼ିଆ ଭାଷା ଓ ସାହିତ୍ୟର ଗବେଷଣା କ୍ଷେତ୍ରରେ ଲଣ୍ଡନ୍ ବିଶ୍ୱବିଦ୍ୟାଳୟ ସହିତ ଅବିଳମ୍ବେ ଯୋଗସୂତ୍ର ସ୍ଥାପନ କରନ୍ତୁ ।

(୩) ଓଡ଼ିଶା ସରକାର ଜଣେ ଓଡ଼ିଆ ଗବେଷକ/ଲେଖକଙ୍କୁ ଅନ୍ତତଃ କିଛି ମାସ ଅଧ୍ୟୟନ ଓ ଗବେଷଣା ପାଇଁ ଲଣ୍ଡନ୍ ବିଶ୍ୱବିଦ୍ୟାଳୟକୁ ପଠାନ୍ତୁ ।



# ଶତାବ୍ଦୀର ଜଘନ୍ୟତମ ନରହନ୍ତା

ଡେନିସ୍ ନିଲ୍ସେନ୍ । ବୟସ ସଇଁତିରିଶି । ଗମ୍ଭୀର । ଚଷମା ପରିହିତ । ଲଣ୍ଡନ୍‌ର ମସ୍‌ୱେଲ୍ ହିଲ୍‌ରେ ଛୋଟ ଫ୍ଲାଟ୍‌ଟିରେ ଏକାକୀ ରହେ । କୌଣସି ସରକାରୀ ଅଫିସ୍‌ରେ କିରାଣୀ ।

ସାଧାରଣ ଇଂରେଜ ଭଦ୍ରବ୍ୟକ୍ତିଟିଏ ପରି ଅଫିସ୍‌ରୁ ଫେରି ସନ୍ଧ୍ୟାରେ ଯାଏ ପବ୍ ବା ପାନଶାଳାକୁ । ତା'ର ପ୍ରିୟ ପାନୀୟ ରମ୍ ଓ କୋଲା । ରକ୍ ସଙ୍ଗୀତ ଶୁଣି ସେ ନାଚି ଉଠେ । କେବେ କିପରି ନିଜ ଫ୍ଲାଟ୍‌କୁ ନିମନ୍ତ୍ରଣ କରି ଆଣେ ଜଣେ ତରୁଣ ବନ୍ଧୁକୁ ।

ମହାନଗରୀ ଲଣ୍ଡନ୍‌ରେ ଏକାନ୍ତ ଅଖ୍ୟାତ, ନଗଣ୍ୟ ମଣିଷଟିଏ – ନିଲ୍ସେନ୍ । କିଏ କଳ୍ପନା କରିଥିଲା ୟୁରୋପ୍‌ର ପ୍ରତ୍ୟେକ ସମ୍ବାଦପତ୍ର, ରେଡ଼ିଓ ଓ ଟେଲିଭିଜନ୍‌ର ପ୍ରତି ଚାନେଲ୍ ଦିନେ ସମସ୍ୱରରେ ଚିତ୍କାର କରି ଉଠିବେ – ଶତାବ୍ଦୀର ଜଘନ୍ୟତମ ନରହନ୍ତା, ଅପରାଧୀ ଡେନିସ୍ ନିଲ୍ସେନ୍... । କିଏ କଳ୍ପନା କରିଥିଲା ସପ୍ତାହ ସପ୍ତାହ ବ୍ୟାପୀ ମାସ୍-ମେଡ଼ିଆରେ ଆଲୋଚିତ ବିତର୍କିତ ହେବ ସେଇ ନଗନ୍ୟ ମଣିଷଟିର କାହାଣୀ !

୧୯୮୩ ଅକ୍ଟୋବର ମାସ । ନିଲ୍ସେନ୍ ଫ୍ଲାଟ୍‌ର ତଳମହଲାର ଅଧିବାସୀ ଆଲାନ୍ ଗ୍ରୀନ୍ ଅଭିଯୋଗ କଲେ – ତାଙ୍କ ଡ୍ରେନ୍ ପାଇପରେ ମଇଳା ଜମିଛି । ମଇଳା ସଫା କରାଗଲା । ମଇଳା କିନ୍ତୁ ଥିଲା ଖଣ୍ଡ ଖଣ୍ଡ ସଡ଼ା ମଣିଷ ମାଂସ ଓ ହାଡ଼... ।

ନରହତ୍ୟାର ଲୋମହର୍ଷଣକାରୀ କାହାଣୀ ପ୍ରଚାରିତ ହେଲା ଇଂଲାଣ୍ଡ ଓ ୟୁରୋପ୍‌ରେ । ସନ୍ଧ୍ୟାରେ ପବ୍‌ରୁ ଜଣକ ପରେ ଜଣେ ତରୁଣ ବନ୍ଧୁକୁ ନିମନ୍ତ୍ରଣ କରିଆଣେ ନିଲ୍ସେନ୍ । ନିଜ ଫ୍ଲାଟ୍‌ରେ ପୁଣି ମଦ୍ୟପାନ, ଆଳାପ ଓ ଡିନର୍ । ତାହା ହିଁ କିନ୍ତୁ ଥାଏ ନିଲ୍ସେନ୍ ଅତିଥିର ଶେଷ ରାତ୍ରୀ । ତା' ପରଦିନ ପ୍ରଭାତରେ ନିଲ୍ସେନ୍ ଫ୍ଲାଟ୍‌ରୁ ଆଉ ସେ ଓହ୍ଲାଇ ଯାଏ ନାହିଁ ଲଣ୍ଡନ୍‌ର ରାଜପଥକୁ ।

ଡଗ୍‌ଲାସ୍ ଷ୍ଟୁଆର୍ଟ୍ ଅଣତିରିଶି ବର୍ଷର ତରୁଣ । ନିଲ୍ସେନ୍ ସମ୍ପର୍କରେ ବିଚାରାଳୟରେ ତାହାର ବୟାନ ଏହିପରି – ମୋତେ ସେ ରାତ୍ରୀଯାପନ ପାଇଁ ଫ୍ଲାଟ୍‌କୁ ନିମନ୍ତ୍ରଣ କଲା । ବିଛଣାରେ ତା' ନିକଟରେ ଶୋଇବାକୁ କହିଲା । ମୁଁ କିନ୍ତୁ ସେଥିରେ ରାଜି ନ ହୋଇ ଚେୟାର୍‌ରେ ଆଉଜି ଶୋଇପଡ଼ିଲି । ଖୁବ୍ ସକାଳୁ ମୋ ନିଦ ଭାଙ୍ଗିଯାଏ ତ ଦେଖେ ମୋ ପାଦ ଦୁଇଟି ବନ୍ଧା ହୋଇଛି ଓ ନିଲ୍ସେନ୍ ତା' ଟାଇରେ ମୋ ତଣ୍ଟି ଚିପି ଦେବାର ଉଦ୍ୟମ କରୁଛି... ।'

ଡଗ୍‌ଲାସ ଭାଗ୍ୟବାନ୍ ନିଶ୍ଚୟ । ଧସ୍ତାଧସ୍ତି ପରେ ନିଲ୍ସେନ୍ କବଳରୁ ଜୀବନ ବଞ୍ଚାଇ ସେ ପଳାଇଗଲା । କିନ୍ତୁ ତା'ପରି ବହୁ ତରୁଣ ଶ୍ୱାସରୁଦ୍ଧ ହୋଇ ଶବ ପାଲଟି ଗଲେ ନିଲ୍ସେନ୍‌ର ମସ୍‌ୱେଲ୍ ଫ୍ଲାଟ୍‌ରେ । ପୁଣି ନିଲ୍ସେନ୍ ପୂର୍ବରୁ ରହୁଥିବା ମେଲ୍‌ରୋଜ୍ ଆଭିନ୍ୟୁ ଫ୍ଲାଟ୍‌ରେ, କେତେ ସେମାନଙ୍କ ସଂଖ୍ୟା ?

କେତେଜଣ ତରୁଣଙ୍କୁ ତଣ୍ଟିଚିପି ହତ୍ୟା କରିଛି, ନିଲସେନ୍‌କୁ ସେତେକ ମଧ ଜଣା ନାହିଁ । ବିଚାରାଳୟରେ ତା'ର ଜେରାର କିୟଦଂଶ ।

ପ୍ର : ଏକାସଙ୍ଗେ କେତୋଟା ଶବ ତୁମ ଫ୍ଲାଟ୍‌ରେ ପଡ଼ିଥାଏ ? ପାଞ୍ଚଟା ? ନିଲ୍‌ସେନ୍ : ହଁ, ... ତେବେ ମୁଁ ନିଶ୍ଚିତ ନୁହେଁ, ମୁଁ କେବେ ଶବଙ୍କ ସଂଖ୍ୟା ଗଣି ନାହିଁ... ଧରି ନେଇଥିଲି, ମୁଁ ଏମିତି ହତ୍ୟାକରି ଚାଲିଯିବି । ମୁଁ ମଧ ଜାଣିଥିଲି, ଦିନେ ନା ଦିନେ ମୁଁ ଧରାପଡ଼ିବି । ...ମୁଁ ଯଦି ପଞ୍ଚଷଠି ବର୍ଷରେ ଧରା ପଡ଼ିଥା'ନ୍ତି, ତେବେ ହୁଏତ ମୋ ପଛରେ ଛାଡ଼ି ଯାଇଥା'ନ୍ତି ହଜାର ହଜାର ଶବ । ହତ୍ୟା କରିବା ପରେ ନିଲ୍‌ସେନ୍ କ'ଣ କରେ ଶବଗୁଡ଼ିକୁ ? ପିଟର ହୋଲେଟ୍ ନାମଧେୟ ତରୁଣଟିକୁ ହତ୍ୟାକରି ସାରିବା ପରେ ନିଲ୍‌ସେନ୍ ହୋଲେଟ୍‌ର ଶବଟିକୁ କିପରି ନଷ୍ଟ କରିଥିଲା, ବିଚାରାଳୟରେ ତାହାର ବିବରଣୀ ତା' ନିଜ ମୁଖରୁ ଶୁଣନ୍ତୁ :

'ତା' ଶବଟିକୁ ଗାଧୁଆଘରେ ଖଣ୍ଡ ଖଣ୍ଡ କରି କାଟି ଲାଭାଟୋରୀରେ ମାଂସ ଖଣ୍ଡସବୁ ଫ୍ଲଶ୍ କରିଦେବାକୁ ସ୍ଥିର କଲି । ଏଥିରେ କିନ୍ତୁ ବିଳମ୍ବ ହେଲା । ତେଣୁ ମୁଣ୍ଡ ସମେତ ଶବର କିଛି ଅଂଶ ସିଝାଇଲି । ବଡ଼ ବଡ଼ ହାଡ଼ ସବୁ ଫିଙ୍ଗି ଦେଲି ଅଳିଆ ବ୍ୟାଗ୍‌ରେ ।' × × ×

ଲଣ୍ଡନ୍‌ରେ କିରାଣୀ ଚାକିରି କରିବା ପୂର୍ବରୁ ନିଲ୍‌ସେନ୍ କିଛିବର୍ଷ ପୋଲିସ୍ ଓ ଆର୍ମିରେ ମଧ କାର୍ଯ୍ୟ କରିଥିଲା । ଅପରାଧୀ ସାବ୍ୟସ୍ତ ହେବା ପରେ ଜୀବନର ପରବର୍ତ୍ତୀ ପଚିଶିବର୍ଷ ତାକୁ ବିତାଇବାକୁ ହେବ ଜେଲ୍‌ରେ, ଏହା ହିଁ ଥିଲା ଲଣ୍ଡନ୍‌ରେ ଉଚ୍ଚତମ ନ୍ୟାୟାଳୟର ଓଲ୍ଡ଼୍ ବେଲୀଙ୍କ ରାୟ । × × ×

କିନ୍ତୁ ଅପରାଧ ଓ ଶାସ୍ତି – ଏହାହିଁ କ'ଣ ସମସ୍ୟା ଓ ସମାଧାନ ? ନିଲ୍‌ସେନ୍ ଉପାଖ୍ୟାନ ଯଥାର୍ଥରେ ବିଚଳିତ କରିଥିଲା ଇଂଲାଣ୍ଡର ବହୁ ବୁଦ୍ଧିଜୀବୀ, ମନସ୍ତତ୍ତ୍ୱବିତ୍‌ମାନଙ୍କୁ । ପୁଣି ଥରେ ସେଇ ମୂଳପ୍ରଶ୍ନ ଉଗ୍ରରୂପରେ ସାମ୍ନା କରିଥିଲା ୟୁରୋପ୍‌ର ସଭ୍ୟ ମଣିଷ ସମାଜକୁ – କାହିଁକି ମଣିଷ ହୁଏ ଅପରାଧୀ ? କାହିଁକି ?

ନିଲ୍‌ସେନ୍‌ର ଜୀବନୀ ଖିନ୍‌ଭିନ୍ ବିଶ୍ଳେଷଣ କରିଥିଲେ ସାମ୍ବାଦିକ, ସମାଜବିତ୍ ମନସ୍ତତ୍ତ୍ୱବିତ୍‌ମାନେ । ସେମାନେ ଦର୍ଶାଇଲେ – ନିଲ୍‌ସେନ୍ ଥିଲା ଭୟଙ୍କର ଏକ ନିଃସଙ୍ଗ ଚରିତ୍ର । ଖ୍ରୀସ୍‌ମସ୍ ପରି ଉତ୍ସବ ଦିନରେ ବି ଗ୍ରିଟିଙ୍ଗ୍ କାର୍ଡ଼୍‌ଟିଏ ପାଉ ନ ଥିଲା; ଜଣେ ବି କେହି ନ ଥିଲେ ତା'ର ଅତିଥି । ସେ ପୁଣି ଥିଲା ହୋମୋସେକ୍‌ସୁଆଲ୍; ନିଜ ପରିବାର ସହିତ ତୁଟି ଯାଇଥିଲା ତା'ର ସମ୍ପର୍କ । ହୁଏତ ତା'ର ମସ୍ତିଷ୍କ ବିକୃତ ମଧ ଥିଲା, ଅନ୍ୟକୁ ହତ୍ୟା କରିବାରେ ସେ ପାଉଥିଲା କିପରି ଗୋଟାଏ ପୈଶାଚିକ ଆନନ୍ଦ... ! (ଓଲ୍ଡ଼୍ ବେଲୀଙ୍କ ପଚିଶ ବର୍ଷ କାରାଦଣ୍ଡ ରାୟ ଶୁଣିବା ପରେ ତା'ଠାରେ ଦେଖାଯାଇ ନ ଥିଲା ସାମାନ୍ୟତମ ଏମୋସନ୍ !)

ସାମ୍ବାଦିକ, ସମାଜବିତ୍, ମନସ୍ତତ୍ତ୍ୱବିତ୍‌ମାନଙ୍କ ବିଶ୍ଳେଷଣ ତଥାପି ମନେହୁଏ ଅସଂପୂର୍ଣ୍ଣ ! ନିଃସଙ୍ଗ, ହୋମୋସେକ୍‌ସୁଆଲ୍ ନ ହୋଇଥିଲେ ନିଲ୍‌ସେନ୍ ଯେ ନରଘାତକଟିଏ ବନି ନ ଥା'ନ୍ତା, ଏହାର କି ନିଶ୍ଚିତ ପ୍ରମାଣ ଥାଇପାରେ ? ଅପରାଧୀ ନିଲ୍‌ସେନ୍‌କୁ ଜେଲ୍ ଭିତରକୁ ଠେଲି ଦେବାକୁ ହୁଏ ତ ଆମେ ବାଧ । କିନ୍ତୁ ଅପରାଧ ମନୋବୃତ୍ତିର ମୂଳକାରଣଟି ଚିହ୍ନଟ ନ କରିବା ଯାଏଁ ନିଲ୍‌ସେନ୍‌ମାନଙ୍କ ସମସ୍ୟା ସୁଦୂର ପରାହତ !!



# ନରବଳି : ବିଲାତୀ ପଦ୍ଧତି

## ଗଳାକାଟି ଚାରୋଟି ଶିଶୁଙ୍କୁ ହତ୍ୟା

ରସ୍ ସୟାର୍‌ର ଡିଙ୍ଗ୍‌ୱାଲ୍‌ଠାରେ ଗଳାକଟା ହୋଇଥିବା ଚାରୋଟି ଶିଶୁଙ୍କ ଶବ ସେମାନଙ୍କ ଶୋଇବାଘରେ ପଡ଼ିଥିବାର ଦେଖାଯାଇଥିଲା ।

ଅନ୍ୟ ଗୋଟିଏ ବଖରାରେ ସେମାନଙ୍କ ପିତା ମାଇକେଲ୍ ୱେନର୍ ମସ୍ତକରେ ଭୟଙ୍କର ଆଘାତପ୍ରାପ୍ତ ହୋଇ ପଡ଼ିଥିଲା । ବର୍ତ୍ତମାନ ସେ ଡାକ୍ତରଖାନାରେ ।

ମୃତ ଶିଶୁମାନେ ହେଉଛନ୍ତି ମାଇକେଲ୍ (ଆଠବର୍ଷ), ମୁନ୍ନଡ଼ି (ଚାରି), ଟୁଡ଼ି (ତିନି) ଏବଂ ସାଇମନ୍ (ଦୁଇ) । ଅଣଚାଶ ବର୍ଷ ବୟସ୍କ ଶ୍ରୀ ୱେନର୍‌ଙ୍କର ଆବର୍‌ଡ଼ିନ୍ ରାଜକୀୟ ଚିକିତ୍ସାଳୟରେ ଜରୁରୀ ଅସ୍ତ୍ରୋପଚାର କରାଯାଇଛି ।

ଶିଶୁଗୁଡ଼ିକଙ୍କର ଗୃହ ନିକଟରେ ରହୁଥିବା ସେମାନଙ୍କ ଜେଜେମା' ଶ୍ରୀମତୀ ଜେସି ମୌକ୍ ଲଲ୍‌ହିବ୍ ଦିନର ବହୁ ସମୟ ପର୍ଯ୍ୟନ୍ତ ୱେନର୍‌ଙ୍କ ଗୃହର ଝର୍କାପର୍ଦ୍ଦାସବୁ ଟଣାଯାଇ ନ ଥିବା ଲକ୍ଷ୍ୟ କରିଥିଲେ ।

ଶ୍ରୀ ୱେନର୍‌ଙ୍କ ସ୍ତ୍ରୀ ତେତିଶି ବର୍ଷ ବୟସ୍କା ମାର୍ଗାରେଟ୍ କେତେଦିନ ହେଲା ତାଙ୍କର କେତେଜଣ ବନ୍ଧୁଙ୍କ ସହିତ ରହୁଛନ୍ତି (ଟାଇମ୍‌ସ୍, ୧୯୮୩) ମେରୀର ପିତାମାତା ତଥାପି ଆଶା ହରାଇ ନାହାନ୍ତି ।

ହଜିଯାଇଥିବା ଚାରିବର୍ଷ ବୟସର ଶିଶୁ ମେରୀ ପେବ୍‌ର ପିତାମାତା ତଥାପି ଆଶା ରଖିଛନ୍ତି ଯେ, ସେମାନଙ୍କ ଝିଅଟି ଜୀବିତ ଅଛି ।

ମେରୀର ପୋଷାକ ଏପିଙ୍ଗ୍ ଜଙ୍ଗଲରେ ଗୋଟିଏ ବିଚ୍ ବୃକ୍ଷ କୋରଡ଼ରୁ ଉଦ୍ଧାର କରାଯାଇଛି ।

ଆଜି ମେରୀର ପିତା ଜବ୍ ପେବ୍ କହିଛନ୍ତି, 'ଝିଅର ଶବ ତ ଏ ଯାଏଁ ମିଳି ନାହିଁ । ଆମେ ଆଶା କରୁଛୁ, ପିଲାଟିଏ ଖୋଜୁଥିବା କେହି ଜଣେ ତାକୁ ନେଇ ଯାଇଛି ।' ×××

ମେରୀ ଡଗେନ୍‌ହାମ୍‌ରେ ତା' ଘର ସାମ୍ନା ଖେଳପଡ଼ିଆରୁ କୁଆଡ଼େ ହଜିଯାଇଛି । ସେ ତା' କୁକୁରଟି ସଙ୍ଗେ ଖେଳୁଥିଲା ଓ ନିକଟରେ ମାଆ ନ ଥିଲେ । ପୋଲିସ୍‌ର ବିଶ୍ୱାସ, ଗୋଟିଏ ମୋଟର ଗାଡ଼ିରେ ତାକୁ କୁଆଡ଼େ ନିଆଯାଇଛି । ×××

ପୋଲିସ୍ ସୂତ୍ରରୁ ପୁଣି ପ୍ରକାଶ, ଏପିଙ୍ଗ୍ ଜଙ୍ଗଲରେ ମେରୀକୁ ପୋତି ଦିଆଯାଇ ନାହିଁ । ତଥାପି ସେ ଅଞ୍ଚଳରେ ତନ୍ନତନ୍ନ ଅନୁସନ୍ଧାନ କରାଯାଉଛି ।

ଚିଫ୍ ଇନସ୍‌ପେକ୍ଟର ଜନ୍ ହଡ଼୍‌ସନ୍ କହନ୍ତି, ମନେହେଉଛି, ଆମେ ନୂଆ ଏ ହତ୍ୟାଘଟଣା ତଦନ୍ତ କରିବାକୁ ଯାଉଛୁ । ଆଉ ଗୋଟିଏ ସ୍କୁଲ୍ ଝିଅ ସୁଶାନ୍ ମାକ୍ସ୍‌ୱେଲ୍ ଠିକ୍ ସେହି ଶୁକ୍ରବାର ଦିନ ଅଟ୍‌କଷ୍ଟର୍‌ଠାରେ ନିଖୋଜ ହୋଇଯାଇଥିବ ବା ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ । ସ୍ମରଣ କରାଇ ଦିଆଯାଇପାରେ, କିଛିଦିନ ତଳେ ଆଉ ଏକ ଶୁକ୍ରବାରରେ ଟୁଇକ୍ରସ୍‌ଲେସ୍‌ଠାରେ କେରୋଲିନୀ ହଗ୍‌କୁ ମଧ୍ୟ ହତ୍ୟା କରାଯାଇଥିଲା ।

(ଦ ଷ୍ଟାଣ୍ଡାର୍ଡ଼୍, ୧୦ ଅକ୍ଟୋବର, ୧୯୮୩)

## ଗୃହଠାରୁ ଅଳ୍ପ ଦୂରରେ ହତ୍ୟା

ଜଣେ ଶୋକାକୁଳ ପିତା ଆଜି ତାଙ୍କର କିଶୋରୀ ଝିଅଟିକୁ ନିଜ ଗୃହର ଅଳ୍ପ ଦୂରରେ ହତ୍ୟା କରାଯାଇଥିବା ପ୍ରକାଶ କରିଛନ୍ତି ।

ଗତକାଲି ସତର ବର୍ଷ ବୟସ୍କ ବେଲିଣ୍ଡା ଗ୍ରୀଭ୍‌ସ୍‌ଙ୍କ ଶବ ନର୍ଟିଂହିଲ୍‌ଠାରେ ଜଣେ ପଡ଼ୋଶୀଙ୍କ ଗୃହ ନିକଟରେ ସକାଳ ପାଞ୍ଚଟା ତିରିଶିରେ ଦେଖିବାକୁ ମିଳିଥିଲା ।

ବେଉଲିଣ୍ଡାଙ୍କ ମସ୍ତକକୁ କିଛି ଗୋଟାଏ ଓଜନିଆ ବସ୍ତୁ (ସମ୍ଭବତଃ ଗୋଟାଏ ବୋତଲ) ଦ୍ୱାରା ଆଘାତ କରାଯାଇଥିବା ଓ ମସ୍ତକ – ଆଘାତରେ ସେ ପ୍ରାଣ ହରାଇଥିବା ଆଶଙ୍କା କରାଯାଉଛି ।

ବେଉଲିଣ୍ଡାଙ୍କ ପିତା ଶ୍ରୀ କୋଲ୍‌ଷ୍ଟୋନ୍ ଗ୍ରୀଭ୍‌ସ୍ କହନ୍ତି, 'ସବୁଠାରୁ ମର୍ମନ୍ତୁଦ କଥା ହେଉଛି, ଆମରି ଘର ସାମ୍ନାରେ ଏହା ଘଟିଲା ଏବଂ ସେ ଆମକୁ ଏହା ଜଣାଇବା ପାଇଁ ଚିତ୍କାର ମଧ୍ୟ କରିପାରିଲା ନାହିଁ । ××× ସେ ଅତ୍ୟନ୍ତ ଲାଜକୁଳି ଓ ଗମ୍ଭୀର ପ୍ରକୃତିର ଝିଅ

ଥିଲା ଏବଂ ଅପରିଚିତ କାହା ସହିତ ସେ ଅନ୍ୟ କାହା ଘରକୁ କେବେହେଲେ ଯାଇ ନ ଥିବ ।' ×××

ରବିବାର ଦିନ ଖୁବ୍ ସକାଳେ ଶ୍ରୀ ଗ୍ରୀଭ୍‌ସ୍‌ଙ୍କ ପଡ଼ୋଶୀମାନେ ବେଭଲିଣ୍ଡା ଓ ଜଣେ କେହି ପୁରୁଷଲୋକ ଗପସପ କରୁଥିବା ଶୁଣିଥିଲେ ଏବଂ ଶ୍ରୀମତୀ ଗ୍ରୀଭ୍‌ସ୍ ଏଥିରେ ଆପତ୍ତି କରିଥିଲେ ।

ବେଭଲିଣ୍ଡା ଓ ପୁରୁଷ ଲୋକଟି ସ୍ୱର ନରମାଇ କଥାଭାଷା ହେଉଥିଲେ । ସେ ପୁରୁଷ ଲୋକଟି ସେଠାରୁ ଚାଲିଯିବାରେ କେହି କିଛି ଗୁରୁତ୍ୱ ଦେଇ ନ ଥିଲେ । ପରେ କିନ୍ତୁ ନିଜ କୁକୁର ସହିତ ବୁଲି ବାହାରିଥିବା ଜଣେ ପଡ଼ୋଶୀ ବେଭଲିଣ୍ଡାର ଶବଟି ଦେଖିବାକୁ ପାଇଲେ । ××× (ଦ ଷ୍ଟାଣ୍ଡାର୍ଡ୍, ୧୦ ଅକ୍ଟୋବର, ୧୯୮୩)

ମାତ୍ର କିଛି ସପ୍ତାହ ତଳେ ଓଡ଼ିଶାର ରଣପୁର ଅଞ୍ଚଳରେ ତିନୋଟି ଶିଶୁଙ୍କ ନାରକୀୟ ହତ୍ୟା ପରିପ୍ରେକ୍ଷୀରେ ବିଲାତର ସମ୍ବାଦପତ୍ରମାନଙ୍କରୁ ଏହି ଉଦ୍ଧୃତି ପ୍ରକାଶ କରୁଛୁ, ଲକ୍ଷ୍ୟ କରନ୍ତୁ, ଉପରୋକ୍ତ ଜଘନ୍ୟ ହତ୍ୟା ସମ୍ବାଦସବୁ ପ୍ରକାଶ ପାଇଛି ପ୍ରାୟ ଗୋଟିଏ ପ୍ରସ୍ତାବ ମଧ୍ୟରେ । ଏପରି ସମ୍ବାଦମାନ ଯେ ବିଲାତରେ ପ୍ରାୟ ନିୟମିତ, ଏଥିରେ ସନ୍ଦେହର ଅବକାଶ ନାହିଁ ।

ରଣପୁର ଏକ ଅନଗ୍ରସର, ଅନ୍ଧାରୁଆ ରାଜ୍ୟ । ରଣପୁରର ହତ୍ୟାକାଣ୍ଡକୁ ତେଣୁ ସ୍ୱାଭାବିକ ଭାବେ କୁସଂସ୍କାର, ତନ୍ତ୍ରମନ୍ତ୍ର ତଥା ଦାରିଦ୍ର୍ୟ ସହିତ ସମ୍ପର୍କିତ କରାଯାଉଛି । ବିଲାତର ତଥା ୟୁରୋପ୍‌ର ସମ୍ବାଦପତ୍ରମାନେ ରଣପୁର ହତ୍ୟା ସମ୍ବାଦକୁ ହୁଏତ ଭାରତୀୟ କୁସଂସ୍କାରର ଚରମ ନିଦର୍ଶନ ବୋଲି ପ୍ରଚାର କରିଥିବେ ଏବଂ ସେମାନଙ୍କ ପ୍ରଚାର ଯଥାର୍ଥ ।

କିନ୍ତୁ ଆପାତତଃ କୁସଂସ୍କାର, ତନ୍ତ୍ରମନ୍ତ୍ର ତଥା ଦାରିଦ୍ର୍ୟରୁ ମୁକ୍ତ ବିଲାତ ବା ୟୁରୋପ୍‌ରେ ସଙ୍ଗଠିତ ଏଇ ହତ୍ୟାକାଣ୍ଡକୁ କିପରି ବ୍ୟାଖ୍ୟା କରାଯାଇପାରେ ? କାରଣ ଯାହାହେଉ ନା କାହିଁକି, ମନେହୁଏ, ହିଂସା ଓ ଘୃଣା ଉଭୟ ଆଦିମ ଓ ଉନ୍ନତ ସମାଜରେ ସମାନ ଭାବରେ ନିଜକୁ ଜାହିର୍ ରଖିପାରିଛି । ବରଂ ଉନ୍ନତ ସମାଜରେ ହିଂସା ଓ ଘୃଣାର ପରିମାଣ ବେଶି !

ଅନୁନ୍ନତ ଓ ଉନ୍ନତ ସମାଜରେ ସଙ୍ଘଟିତ ଏପରି ହତ୍ୟାକାଣ୍ଡସବୁ ଉପରେ ଅବଶ୍ୟ ଭିନ୍ନ ଭିନ୍ନ ଲ୍ୟାବେଲ୍ ବା ଛାପ ମାରିଦିଆଯାଉଛି । ରଣପୁରର ହତ୍ୟାକାଣ୍ଡ ଅନ୍ଧବିଶ୍ୱାସର ପରିଣତି ବୋଲି କୁହାଯାଉଥିବାବେଳେ ବିଲାତୀ ହତ୍ୟାକାଣ୍ଡକୁ ମନସ୍ତାତ୍ତ୍ୱିକ ବ୍ୟାଧିର ପ୍ରକାଶ ବୋଲି ପାଶ୍ଚାତ୍ୟ ପଣ୍ଡିତମାନେ ଚିହ୍ନିତ କରୁଛନ୍ତି । ଏ ସବୁ ସତ୍ତ୍ୱେ ଉଭୟ ସମାଜରେ ନୃଶଂସ ଏବଂ ନାରକୀୟତା ନିଶ୍ଚିତ ଭାବରେ ସମାନ । ଅନୁନ୍ନତ ସମାଜର 'କୁସଂସ୍କାର' ଏବଂ ଉନ୍ନତ ସମାଜର 'ମାନସିକ ବ୍ୟାଧି' ମଧ୍ୟରେ ତେଣୁ ଦୂରତା କେତେ ବେଶି ?



# ଶ୍ରୀମତୀ ଟାଇସନ୍‌ଙ୍କ ଗାଁଆରେ ଦିନଟିଏ

ଗାଁଆର ପ୍ରଥମ ଘରଟି ଥିଲା ଶ୍ରୀମତୀ ଟାଇସନ୍‌ଙ୍କର । ତେଣୁ ଘର ପାଇବାରେ କୌଣସି ଅସୁବିଧା ହେଲା ନାହିଁ । ଘର ସାମ୍ନାରେ ଧଳାରଙ୍ଗର କାର୍‌ଟିଏ; ପ୍ରକାଣ୍ଡକାୟ କୁକୁରଟି ଚିହ୍ନାଲୋକ ପରି ମୁଣ୍ଡଟେକି ଆମକୁ ଅନାଇଲା । ଘର ସାମ୍ନା ସାଇନ୍‌ବୋର୍ଡ୍‌ରେ ଲେଖାଥିଲା – 'ଶ୍ରୀମତୀ ଜନ୍ ଟାଇସନ୍ । ବେଡ୍ ଏଣ୍ଡ ବ୍ରେକ୍‌ଫାଷ୍ଟ । ଷ୍ଟେପ୍ ଏଣ୍ଡ ଫାର୍ମ୍ । ୱାଟେଣ୍ଡଲାଥ୍, ବରୋଡ଼େଲ୍, କମ୍ବ୍ରିଆ ।'

ଇଂଲାଣ୍ଡର ଉତ୍ତର-ପଶ୍ଚିମ ଅଞ୍ଚଳରେ ଅସଂଖ୍ୟ ପାହାଡ଼, ଉପତ୍ୟକା, ହ୍ରଦ ଓ ଝରଣାମୟ କାଉଣ୍ଟି ବା ଜିଲ୍ଲା କମ୍ବ୍ରିଆ । ପୃଥିବୀର ସୁନ୍ଦରତମ ପ୍ରାକୃତିକ ଅଞ୍ଚଳ ମଧ୍ୟରେ କମ୍ବ୍ରିଆ ଅନ୍ୟତମ । ଏଇ ଅଞ୍ଚଳଟି କିନ୍ତୁ ହ୍ରଦମାନଙ୍କ ଦେଶ ବା ଲେକ୍ ଡିଷ୍ଟ୍ରିକ୍ଟ ନାମରେ ଅଧିକ ପରିଚିତ । ପ୍ରକୃତି-ପର୍ଯ୍ୟବେକ୍ଷଣକାରୀ, ପର୍ବତାରୋହୀ, କବି ଓ କଳାକାରମାନଙ୍କର ଅତି ପ୍ରିୟ ଏଇ ଅଞ୍ଚଳଟି । ବିଶେଷତଃ ଊନବିଂଶ ଶତାବ୍ଦୀର ପ୍ରସିଦ୍ଧ ଇଂରେଜ କବି ୱର୍ଡ୍‌ସ୍‌ୱାର୍ଥଙ୍କ ବହୁ କବିତାର ପ୍ରେରଣା ଓ ବିଷୟବସ୍ତୁ ଏଇ ହ୍ରଦମାନଙ୍କ ଦେଶ । ବସ୍ତୁତଃ ଇଂରାଜୀ ସାହିତ୍ୟର ଛାତ୍ର ଓ ଅଧ୍ୟାପକମାନଙ୍କ ପାଇଁ ୱର୍ଡ୍‌ସ୍‌ୱାର୍ଥ ଓ ରୋମାଣ୍ଟିକ୍ ଆନ୍ଦୋଳନ ହ୍ରଦମାନଙ୍କ ଦେଶ ସହିତ ଅଙ୍ଗାଙ୍ଗୀଭାବେ ଜଡ଼ିତ ।

ଏଇ ହ୍ରଦମାନଙ୍କ ଦେଶରେ ଇଷ୍ଟର୍ ଛୁଟି କଟାଇବା ପାଇଁ ବହୁଦିନୁ ଯୋଜନା କରିଥିଲୁ ସୁଦୀପ୍ତ ଓ ମୁଁ । ଅଙ୍କାବଙ୍କା ଅଣଓସାରିଆ ରାସ୍ତାମାନଙ୍କରେ କାର୍ ଚଳାଉଥିଲା ସୁଦୀପ୍ତ । ନିବିଡ଼ ସବୁଜିମାରେ ମଣ୍ଡିତ ପାହାଡ଼ ପରେ ଉପତ୍ୟକା, ପୁଣି ଉପତ୍ୟକା ପରେ ପାହାଡ଼ । ଅସରନ୍ତି ଯେମିତି ସେମାନଙ୍କ ବିସ୍ତୃତି । ଧଳାରଙ୍ଗର ଦଳ ଦଳ ହୃଷ୍ଟପୁଷ୍ଟ ମେଷ ଦୂରରୁ ଦିଶୁଥାନ୍ତି ମେଞ୍ଚା ମେଞ୍ଚା ଉଲ୍‌ପରି । ଏପ୍ରିଲ୍‌ର ଉଜ୍ଜ୍ୱଳ ପାଗରେ ଆକାଶରେ ଲାଗିରହିଥାଏ ଆଲୋକ, ରଙ୍ଗ ଓ ମେଘମାନଙ୍କ ଅପୂର୍ବ ଉତ୍ସବ ।

ସନ୍ଧ୍ୟାରେ ବିଶ୍ରାମ ପାଇଁ ନିଭୃତ ଗାଁଆଟିଏ ଖୋଜି ପହଞ୍ଚିଲୁ ଶ୍ରୀମତୀ ଟାଇସନ୍‌ଙ୍କ ଘରେ ।

କଲିଂ ବେଲ୍ ଟିପନ୍ତେ ଆମକୁ ସମ୍ଭାଷଣ ଜଣାଇଲେ ଶ୍ରୀମତୀ ଟାଇସନ୍ । ସ୍ଥୂଳ ଚେହେରା, ସ୍ୱଳ୍ପଭାଷିଣୀ ବୃଦ୍ଧା ଆମକୁ ନେଇଗଲେ ଉପର ମହଲାକୁ ।

'ଆପଣମାନେ ବିଳମ୍ବରେ ଆସିଲେ । ଗାଁଆର କେଫେଟି ବନ୍ଦ ହୋଇ ସାରିଲାଣି । ଆପଣଙ୍କ ନିକଟରେ ଖାଇବା ପାଇଁ କିଛି ଅଛି ?'

ସେତେବେଳକୁ ସନ୍ଧ୍ୟା ପ୍ରାୟ ସାତଟା । ୱାଟେଣ୍ଡଲାଥ୍ ଗାଁଆର ଏକମାତ୍ର କେଫେ ଛଅଟାରେ ବନ୍ଦ ହୋଇଯାଏ । ଅନ୍ଧାର ବେଶ୍ କ୍ଷିପ୍ର ବେଗରେ କ୍ଷୁଦ୍ର ଗାଆଁଟିକୁ ଘୋଡ଼ାଇ ପକାଉଥାଏ ରହସ୍ୟ ଓ ନିରବତାରେ ।

ବିନା ଖାଦ୍ୟରେ ରାତିଟି ଚଳାଇନେବୁ ବୋଲି ଆମେ ପ୍ରସ୍ତାବ ଦେଲୁ । 'ଆଚ୍ଛା, ମୁଁ ଦେଖେ' – ଶ୍ରୀମତୀ ଟାଇସନ୍ ବାହାରିଗଲେ ଗାଁଆକୁ ।

କିଛି ସମୟ ପରେ ସେ ପୁଣି ଆମ କୋଠରିକୁ ଫେରିଲେ ଗାଁଆର ଆଉ ଜଣେ ଦୀର୍ଘକାୟ ଲୋକ ସହିତ । ଟ୍ରେରେ ଆମ ପାଇଁ ପ୍ରଚୁର ପାଉଁରୁଟି, ବେକନ୍ ଓ ଚା' ।

କେବଳ ବିଛଣା ଓ ସକାଳର ଜଳଖିଆ ଯୋଗାଇଦେବା ପାଇଁ ଶ୍ରୀମତୀ ଟାଇସନ୍ ଅବଶ୍ୟ ଥିଲେ ପ୍ରତିଶ୍ରୁତିବଦ୍ଧ । କିନ୍ତୁ ବ୍ୟାବସାୟିକ ସଂକୀର୍ଣ୍ଣତାକୁ ଏଡ଼ାଇ ଆମ ପାଇଁ ତାଙ୍କର ସ୍ନେହ ଓ ଆତିଥେୟତା ଆମକୁ ସ୍ପର୍ଶକଲା । ମହାନଗରୀର ହୋଟେଲ୍‌ମାନଙ୍କରେ ଏଇ ମାନବିକ ସ୍ପର୍ଶ ବିରଳ । ଶିଳ୍ପ ଓ ନଗର ସଭ୍ୟତାର କୃତ୍ରିମତାରୁ ଯେପରି ମୁକ୍ତ ଶ୍ରୀମତୀ ଟାଇସନ୍‌ଙ୍କ ଗାଁ' । × × ×

ୱାଟେଣ୍ଡଲାଥ୍ ଗାଁଆଟି ବୁଲି ଦେଖିଲୁ ପରଦିନ ସକାଳେ । ପଥର ତିଆରି ଅଳ୍ପ କେତୋଟି ଘର ଚତୁର୍ଦ୍ଦିଗର ପ୍ରାକୃତିକ ପରିବେଶର ଅଂଶ ପରି ମନେହେଉଥିଲା । କୌଣସି କୋଳାହଳ ନ ଥିଲା – ଅଦୂରରେ କଙ୍କରିଳ ପାର୍ବତ୍ୟ ଶଯ୍ୟାରେ ପ୍ରବାହିତ ଝରଣାଟିର ସଙ୍ଗୀତ ଛଡ଼ା । କେହି ଜଣେ ବ୍ୟାନିୟନ୍‌ଟାଏ ପିନ୍ଧି ଗାଁ' ରାସ୍ତାରେ ଦୌଡୁଥିଲା । ଅଳ୍ପ କେତେଟା କୁକୁର ଓ ଛୁଟି କଟାଇବାକୁ ଆସିଥିବା ସହରୀ ମଣିଷ ପାହାଡ଼ ଉପରେ ଚଢୁଥିଲେ । ବେଶ୍ କିଛି ବ୍ୟବଧାନରେ ଗାଁ' ରାସ୍ତାରେ ଧାଇଁ ଚାଲିଗଲେ ଗୋଟାଏ ଟ୍ରାକ୍ଟର୍ ଓ ଗୋଟାଏ କାର୍ ।

ଶ୍ରୀମତୀ ଟାଇସନ୍‌ଙ୍କ ଘରଟି ଥିଲା ପାଞ୍ଚଶହ ବର୍ଷର ପୁରୁଣା । ମୂଳତଃ ଏହା ଥିଲା ଗୋଟିଏ ଖଳାଘର ବା ଫାର୍ମ୍ ହାଉସ୍ । ମୋଟା ପଥରକାନ୍ଥ, ଓକ୍ କାଠର ଚଟାଣ । କାଠର ବ୍ୟବହାର ହେତୁ ଥଣ୍ଡାରେ ଘରଟି ଗରମ ରଖିବାର ବ୍ୟବସ୍ଥା ନ ଥିଲା । ଶ୍ରୀମତୀ ଟାଇସନ୍ ତେଣୁ ଆମକୁ ଯୋଗାଇ ଦେଇଥିଲେ ମୋଟା ମୋଟା ତୁଳାଗଦି ।

ଘରଟିର ତଳବଖରାରେ ଟଙ୍ଗା ହୋଇଥିଲା ନବବିବାହିତା ଶ୍ରୀମତୀ ଟାଇସନ୍‌ଙ୍କ ଫଟୋଟି – ଶୁଭ୍ରବସ୍ତ୍ର ପରିହିତା ଶ୍ରୀମତୀ ଟାଇସନ୍ ତାଙ୍କ ସ୍ୱାମୀଙ୍କ ବାହୁରେ ବାହୁ ଛନ୍ଦି ସ୍ମିତ ହସୁଛନ୍ତି । ଏତେବର୍ଷ ପରେବି ଶ୍ରୀମତି ଟାଇସନ୍‌ଙ୍କ ମୁଖମଣ୍ଡଳରେ ବିଶେଷ ପରିବର୍ତ୍ତନ ଘଟି ନାହିଁ । ଗୃହ ଶଯ୍ୟାର ଉପକରଣ ମଧ୍ୟରେ ସହଜରେ ଦୃଷ୍ଟି ଆକର୍ଷଣ କରୁଥିଲେ ତମ୍ବାର କେତୋଟି ପୁରୁଣା ପାତ୍ର ।

ମୋଟ ଉପରେ ଶିଳ୍ପାୟିତ ଇଂଲାଣ୍ଡରେ ଯେ ତଥାପି ଅନେକ ଅଞ୍ଚଳର ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ପରିବେଶ ଅକ୍ଷୁର୍ଣ୍ଣ ରହିପାରିଛି ଓ ଅନେକାଂଶରେ ଅକ୍ଷୁର୍ଣ୍ଣ ରହିପାରିଛି ଗାଉଁଲୀ ଲୋକଙ୍କ ପାରମ୍ପରିକ ସହଜ ସ୍ୱଚ୍ଛନ୍ଦ ଜୀବନଯାତ୍ରା – ତାହାର ପ୍ରମାଣ ୱାଟେଣ୍ଡଲାଥ୍ ଗାଁଆ ଓ ଶ୍ରୀମତୀ ଟାଇସନ୍ । ଶିଳ୍ପ ଧୂଆଁରେ ଅଣନିଃଶ୍ୱାସୀ ନଗରବାସୀ ମଣିଷ ପାଇଁ ଏପରି

ଗାଁ ଓ ଗାଁଉଲି ଲୋକଙ୍କ ଆକର୍ଷଣ ସ୍ୱାଭାବିକ । କିନ୍ତୁ ନଗରବାସୀଙ୍କ ପ୍ରଭାବରେ ଏଭଳି ଗାଁଗୁଡ଼ିକ ଦିନେ କ୍ଷୁଦ୍ର କ୍ଷୁଦ୍ର ନଗରରେ ପରିଣତ ହୋଇଯିବାର ଆଶଙ୍କାରେ ଭୟଭୀତ ହେବାକୁ ପଡ଼େ !!



## ଜାତି, ଗୋତ୍ର ଓ ଲଣ୍ଡନ୍

କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ଛାତ୍ର ଥିବା ସମୟରେ ଗବେଷଣା କାର୍ଯ୍ୟରେ କେବେ କିପରି ଲଣ୍ଡନ୍ ଆସିବାକୁ ପଡୁଥିଲା । ଲଣ୍ଡନ୍‌ରେ ପ୍ରାୟତଃ ରାତ୍ରିଯାପନ କରୁଥିଲି ଇଣ୍ଡିଆନ୍ ଷ୍ଟୁଡ଼େଣ୍ଟ୍‌ସ୍ ହଷ୍ଟେଲ୍‌ରେ ।

ଲଣ୍ଡନ୍ ବିଶ୍ୱବିଦ୍ୟାଳୟ ଅଞ୍ଚଳରେ ରସେଲ୍ ସ୍କୋୟାର୍‌ରେ ଦୁଇଟି ଫ୍ଲାଟ୍‌ରେ ଇଣ୍ଡିଆନ୍ ଷ୍ଟୁଡ଼େଣ୍ଟ୍‌ସ୍ ହଷ୍ଟେଲ୍ । କୋଠରିଗୁଡ଼ିକ ମଇଳା ଓ ସନ୍ତସନ୍ତିଆ, କିଚେନ୍‌ରୁ ଦୁର୍ଗନ୍ଧ ବାହାରେ; ଚଟାଣରେ ଗାଲିଚା ଧୂଳିମୟ ଓ ଛିଣ୍ଡା । ଭାରତୀୟମାନେ ସେମାନଙ୍କ ସରକାରୀ ଅଫିସ୍ ଓ କୋଠାବାଡ଼ିର ଯେପରି ଯତ୍ନ ନେବାରେ ହେଳା କରୁ ନଥା'ନ୍ତି ନିଶ୍ଚୟ ! ତେବେ ଭାରତ ସରକାରଙ୍କ ପୃଷ୍ଠପୋଷକତାରେ ପରିଚାଳିତ ହଷ୍ଟେଲ୍‌ରେ ରହିବା ଖର୍ଚ୍ଚ ଓ ଖାଦ୍ୟପେୟ ଯଥେଷ୍ଟ ଶସ୍ତା । ତା'ଛଡ଼ା ଅକ୍ଳେଶରେ ବହୁ ଭାରତୀୟଙ୍କ ସାନ୍ନିଧ ମଧ ମିଳିଯାଏ । ସେଥିପାଇଁ ସେଠାରେ ରହିବାକୁ ମୁଁ ପସନ୍ଦ କରୁଥିଲି ।

ଗୋଟିଏ ସନ୍ଧ୍ୟାର ଘଟଣା ।

ଲଣ୍ଡନ୍ ବିଶ୍ୱବିଦ୍ୟାଳୟ ଲାଇବ୍ରେରୀରେ ଦିନଟି କଟାଇ ସନ୍ଧ୍ୟାରେ ପହଞ୍ଚିଲି ଇଣ୍ଡିଆନ୍ ଷ୍ଟୁଡ଼େଣ୍ଟ୍‌ସ୍ ହଷ୍ଟେଲ୍‌ରେ । ଅଫିସ୍ ରୁମ୍‌ରେ ବସିଥିଲେ ସୁଟ୍-ପରିହିତ ଗମ୍ଭୀର ମଧ୍ୟବୟସ୍କ ଭାରତୀୟ ଜଣେ । ହଷ୍ଟେଲ୍‌ର ସୁପରିଣ୍ଟେଡ଼େଣ୍ଟ୍ ହୁଏତ । କହିଲି, ଆଜ୍ଞା, ରାତିଟି ଏଠାରେ ରହିପାରେ କି ?'

ଚେୟାର୍‌ରେ ବସିବାକୁ ଅନୁରୋଧ ଜଣାଇବାତ ଦୂରର କଥା, ଭଦ୍ରବ୍ୟକ୍ତି ମୁହଁ ଟେକି ମୋତେ ଅନାଇଲେବି ନାହିଁ । ଅବଜ୍ଞା ସୂଚକ ସ୍ୱରରେ କହିଲେ, 'ଆପଣଙ୍କ ପାସ୍‌ପୋର୍ଟ ?'

ପାସ୍‌ପୋର୍ଟ୍‌ଟି ତାଙ୍କ ହସ୍ତକୁ ବଢ଼ାଇ ଦେଲି । କ୍ଷଣକ ପରେ – କି ଆଶ୍ଚର୍ଯ୍ୟ ! – ବଦଳିଗଲା ତାଙ୍କର ମୁଖଭଙ୍ଗୀ । ପ୍ରସନ୍ନତାରେ ସେ ଉଚ୍ଛୁଳି ଉଠିଲେ । ହାଉଳି ଖାଇଲା ପରେ କହି ଉଠିଲେ ହିନ୍ଦୀରେ – 'ବସନ୍ତୁ ବସନ୍ତୁ ଆଜ୍ଞା । ଆମ୍ଭେ ମିଶ୍ର, ଆପଣ କି ମିଶ୍ର । 'ତାଙ୍କ ମୁଖରେ ଚଉଡ଼ା ଅର୍ଥପୂର୍ଣ୍ଣ' ହସଟିଏ !

ମୁଁ ଚେୟାର୍‌ରେ ବସିଲି । ଭଦ୍ରବ୍ୟକ୍ତି ମୋ ପାସ୍‌ପୋର୍ଟ୍‌ଟିକୁ ମୋତେ ଫେରାଇ ଦେଉ ଦେଉ କହିଲେ, ଆପଣ ବ୍ରାହ୍ମଣ ନିଶ୍ଚୟ ! ହେଁ ହେଁ ହେଁ – କ'ଣ ଆଜ୍ଞା ଆପଣଙ୍କ ଗୋତ୍ର ?'

'ଗୋତ୍ରର ଆଉ କି ଆବଶ୍ୟକତା ?' – ଉତ୍ତର ଦେଲି ମୁଁ । 'ଆମେ ଦୁହେଁ ଯେ ମିଶ୍ର, ଏଥିରୁ ଜଣାପଡୁଛି ଆମେ ପରସ୍ପରର ବେଶ୍ ନିକଟବର୍ତ୍ତୀ ଓ ମୋତେ ହଷ୍ଟେଲ୍‌ରେ ରହିବାକୁ ଅନୁମତି ମିଳିଯିବାଟା ନିଶ୍ଚିତ !'

ଅଠାପରି ଚଉଡ଼ା ହସଟି ଲାଗି ରହିଥାଏ ତାଙ୍କ ମୁଖ ମଣ୍ଡଳରେ । ମୋତେ ଅବଶ୍ୟ ତୁରନ୍ତ ଅନୁମତି ମିଳିଗଲା ହଷ୍ଟେଲ୍‌ରେ ରାତ୍ରିଯାପନ ପାଇଁ । × × ×

ଭାରତରେ ଆପଣଙ୍କୁ ଜାତି, ଗୋତ୍ର ଇତ୍ୟାଦି ସମ୍ପର୍କରେ ପ୍ରଶ୍ନ କରାଯିବା ନିହାତି ବିରଳ ଅନୁଭୂତି ନୁହେଁ । ଆଶା କରାଯାଏ, ସମୟ ଓ ଶିକ୍ଷା ସଭ୍ୟତାର ବିବର୍ତ୍ତନରେ ଭାରତ ଅଧିକ ମୁକ୍ତ ଓ ଉଦାର ହେବ । ଜାତି, ଧର୍ମ, ବର୍ଣ୍ଣର ମଧ୍ୟଯୁଗୀୟ ନିରାପତ୍ତାବୋଧ ଓ କୁସଂସ୍କାର ଊର୍ଦ୍ଧ୍ୱକୁ ଉତ୍ତୀର୍ଣ୍ଣ ହୋଇପାରିବ ।

କିନ୍ତୁ ଲଣ୍ଡନ୍‌ରେ ମଧ ତଥାକଥିତ ଉଚ୍ଚ ଶିକ୍ଷିତ ସୋଫିଷ୍ଟିକେଟେଡ୍ ଭାରତୀୟ ସମାଜରେ ସେହି ପ୍ରଶ୍ନ – ଜାତି ଓ ଗୋତ୍ର ସମ୍ପର୍କରେ । କ'ଣ ହୋଇପାରେ ଏପରି ପ୍ରଶ୍ନର ହେତୁ ?

ଅତୀତରେ ଯାହା ବା ହୋଇଥାଉ ଜାତି-ଗୋତ୍ରର ସୃଷ୍ଟି ଓ ବିକାଶର କାରଣ, ବର୍ତ୍ତମାନ ଓ ଭବିଷ୍ୟତ ପାଇଁ ଏହା କୁସଂସ୍କାର, ଘୃଣା ଓ ଅଜ୍ଞତାର ହିଁ ପ୍ରତୀକ । ଭାରତୀୟମାନେ ଏହାର ପଚାଗନ୍ଧ ମହାନଗରୀ ଲଣ୍ଡନ୍ ଓ ପୃଥିବୀର କୋଣ ଅନୁକୋଣକୁ ବୋହିନେଲେ ଏହା ହେବ ଭାରତ ଓ ତା'ର ଭବିଷ୍ୟତ ପାଇଁ ଚରମ ବିଶ୍ୱାସଘାତକତା !



# ସୁଖର ସନ୍ଧାନେ ଦଳେଇବାବୁ

ପ୍ରାୟ ଏକଘଣ୍ଟା ବିଳମ୍ବରେ ଦଳେଇବାବୁଙ୍କ ଫ୍ଲାଟ୍‌ରେ ପହଞ୍ଚିଲୁ ଶର୍ମାଜୀ, ହେନ୍‌ରୀ ଓ ମୁଁ । ରାସ୍ତାରେ ଡିସେମ୍ବରର ଅସହ୍ୟ ଥଣ୍ଡା, କୁହୁଡ଼ି ଓ ବର୍ଷା । କାର୍ ଚଳାଉଥିଲେ ହେନ୍‌ରୀ । ଯଦିଓ ତାଙ୍କ ଜନ୍ମ ଲଣ୍ଡନ୍‌ରେ, ତଥାପି ଦୁଇଥର ସେ ବାଟ ଭୁଲିଲେ । ତାଙ୍କର ସ୍ୱୀକାରୋକ୍ତି – 'ମୋତେ ମାନିବାକୁ ହେବ ଓମ୍‌ବ୍ଲି ଅଞ୍ଚଳ ମୋ ପାଇଁ ଅପରିଚିତ !' ଦଳେଇବାବୁ

ରହୁଥିଲେ ଓମ୍‌ବ୍ଲିରେ – ସ୍ତ୍ରୀ ଓ ଏକମାତ୍ର ପୁତ୍ରଟି ସହ । ଓମ୍‌ବ୍ଲି ଲଣ୍ଡନ୍‌ର ଅନ୍ୟତମ ଭାରତୀୟ ତଥା ଗୁଜରାଟୀବହୁଳ ଇଲାକା । ମୟୂର ରେସ୍ତୋରାଁ, ବ୍ୟାଙ୍କ ଅଫ୍ ବରୋଦା, ସୁନା ଓ ରୁପାର ଉଜ୍ଜ୍ୱଳ ଅଳଙ୍କାର ଦୋକାନସବୁ । ଖ୍ରୀସ୍‌ମାସ୍ ଥାଏ ଅଳ୍ପ କେତୋଟି ଦିନ । ଦୋକାନ ବଜାରମାନଙ୍କରେ ତେଣୁ ବିପୁଳ ଆଲୋକସଜ୍ଜା ଓ ଜନସମାଗମ ।

ଆମର ବିଳମ୍ବରେ ଦଳେଇ ପରିବାର ବିଚଳିତ ହୋଇପଡ଼ିଥିଲେ ହୁଏତ କାଚ ଝରକାବାଟେ ରାସ୍ତାକୁ ଅନାଇ ରହିଥିଲେ ପିତା ଓ ପୁତ୍ର... ।

ପ୍ରକାଣ୍ଡ ସୋଫାରେ ଆମେ ବସିଯିବାକ୍ଷଣି କହିଉଠିଲେ ଶ୍ରୀମତୀ ଦଳେଇ, 'କ'ଣ ପିଇବେ କହନ୍ତୁ ।' ଡାଇନିଂ ଟେବୁଲ୍ ଉପରେ ଧାଡ଼ି ଧାଡ଼ି ସଜ୍ଜିତ ଓ ବିଭିନ୍ନ ରଙ୍ଗର ବୋତଲ, ଗ୍ଲାସ୍ ଓ ଟିନ୍ । ହେନ୍‌ରୀ ଓ ଶର୍ମାଜୀ ପସନ୍ଦ କଲେ ହୁଇସ୍କି; ମୁଁ ସପୁରୀରସ ।

ଦଳେଇବାବୁଙ୍କ ଫ୍ଲାଟ୍‌ର ଅଭ୍ୟନ୍ତର ଷ୍ଟୁଡ଼ିଓ ପରି ଉଜ୍ଜ୍ୱଳ ଓ ଦୃଷ୍ଟିକଟୁ । ଆବଶ୍ୟକତାଠାରୁ ଅଧିକ ଉଷ୍ମ । ପ୍ରକାଣ୍ଡ ରଙ୍ଗୀନ୍ ଟେଲିଭିଜନ୍‌ରେ ବୃହଦାକାର ଚଳମାନ ଚିତ୍ରସବୁ । ଆମକୁ ଆପ୍ୟାୟିତ କରିବା ଅଭିପ୍ରାୟରେ ଟେଲିଭିଜନ୍ ବନ୍ଦକରି ଭିଡ଼ିଓରେ ଶସ୍ତା ହିନ୍ଦୀ ଛବିଟିଏ ଚଳାଇବା ଆରମ୍ଭ କରିଦେଲେ ସେ । ଭୟଙ୍କର ମାରପିଟ୍, ଉତ୍କଣ୍ଠା, କର୍ଣ୍ଣଫଟା ଚିତ୍କାର ଓ ଶସ୍ତା ଗୀତ । କାନ୍ଥମାନଙ୍କରେ ୱାଲ୍‌ପେପର୍ ଉପରେ ବହୁ ନିମ୍ନରୁଚିର ପେଣ୍ଟିଂ ଓ ଡେକୋରେଟିଭ୍ ପ୍ଲାଣ୍ଟ୍ । ପବନରେ ସଦ୍ୟପ୍ରସ୍ତୁତ ଖାଦ୍ୟର ଓଜନିଆ ତେଲ ମସଲା ବାସ୍ନା ।

ଶ୍ରୀମତୀ ଦଳେଇ ଆମ ପାଇଁ ପ୍ରସ୍ତୁତ କରିଥିଲେ ପୁରି – (ଭାରତରୁ ଆନୀତ ଡାଲ୍‌ଦାରେ), ବିଭିନ୍ନ ମସଲାରେ ଅତିଷ୍ଠ ତରକାରି, ଆଚାର, ପାମ୍ପଡ଼ ଇତ୍ୟାଦି । ଭୋଜନ ମଝିରେ ପୁଣି ଦୁଇ ଜାତୀୟ ମଦ୍ୟ ଲାଲ୍ ଓ ଧଳା । ଖାଦ୍ୟଶେଷରେ ଟୋନିଆକା, ଆଇସ୍‌କ୍ରିମ୍, ସିଗାରେଟ୍ ଓ ସିଗାର । ପୁଣି ଉଚ୍ଚସ୍ୱରରେ ଶସ୍ତା ହିନ୍ଦୀଗୀତ ଓ ସେଇ ଗର୍ଜନ ମଧ୍ୟରେ ଆମର କଷ୍ଟସାଧ୍ୟ ଆଳାପ । × × ×

ଦଳେଇବାବୁଙ୍କ ଘର ଓଡ଼ିଶାର କୌଣସି ଅନୁନ୍ନତ ପାହାଡ଼ିଆ ଜିଲ୍ଲାରେ । ଖର୍ବକାୟ କୁଞ୍ଚିତ କେଶ, ସାବନା ରଙ୍ଗର ପୁରୁଷ । ସ୍ତ୍ରୀଙ୍କ ଚେହେରାଟି ସ୍ୱାମୀଙ୍କୁ ସୁହାଇଲା ଭଳି । ଉଭୟଙ୍କ ଚେହେରାରେ ଆଦିବାସୀ-ଆଦିବାସୀ ଠାଣି । ପୁତ୍ରଟି କିନ୍ତୁ ଡେଙ୍ଗା ଓ ଅପେକ୍ଷାକୃତ ଗୋରା ।

ଗରିଷ୍ଠ ଭୋଜନଟି ପରେ ଚୁରୁଟ୍‌ଟି ଶୋଷୁ ଶୋଷୁ କହିଲେ ଦଳେଇବାବୁ, 'ମୋ ଜୀବନରେ କୌଣସି ପରୀକ୍ଷାରେ କେବେ ଦ୍ୱିତୀୟ ହୋଇ ନାହିଁ ମୁଁ । ବୁର୍ଲାରୁ ଇଞ୍ଜିନିୟରିଂ ପାଶ୍ କଲି । ସୌଭାଗ୍ୟକ୍ରମେ ମନୋନୀତ ହେଲି ଇଣ୍ଡିଆନ୍ ଫରେନ୍ ସର୍ଭିସ୍ – ଆଇ. ଏଫ୍. ଏସ୍. ପାଇଁ । ଆଜି ଭାବୁଛି, ଆଇ. ଏଫ୍. ଏସ୍. ନ ପାଇଥିଲେ କ'ଣ ଯେ

ହୋଇଥା'ନ୍ତା ମୋ ଅବସ୍ଥା ! ଆଜି ହୁଏତ ମୁଁ ଓଡ଼ିଶାରେ ସାମାନ୍ୟ ଏକ୍‌ଜିକ୍ୟୁଟିଭ୍ ଇଞ୍ଜିନିୟର୍‌ଟିଏ ହୋଇ କେଉଁଠି ପଡ଼ିଥା'ନ୍ତି !'

କହି ଚାଲିଲେ ଦଳେଇବାବୁ, 'ମୁଁ ଆଦୌ ହୋମ୍-ସିକ୍ ଅନୁଭବ କରେ ନାହିଁ । କେବେ – ପାଞ୍ଚ ବର୍ଷ ତଳେ ଅବଶ୍ୟ ଯାଇଥିଲି ଓଡ଼ିଶା । ମୋର ପ୍ଲାନ୍ ଶେଷରେ ମୁଁ ସେଟ୍‌ଲ୍ କରିବି ଆମେରିକାରେ !'

ଶ୍ରୀମତୀ ଦଳେଇ ଭାଗ ନେଉଥା'ନ୍ତି ସ୍ୱାମୀଙ୍କ ଆଲୋଚନାରେ, ମଝିରେ ମଝିରେ କହୁଥା'ନ୍ତି ହିନ୍ଦୀ । କାରଣ – ତାଙ୍କ ନିଜର କୈଫିୟତ୍ – ଦିଲ୍ଲୀରେ ବହୁବର୍ଷ ରହିବା ପରେ ହିନ୍ଦୀଟା ଆପେ ଆପେ ବାହାରି ପଡ଼େ ତାଙ୍କ ତୁଣ୍ଡରୁ ।

ଦଳେଇ ଦମ୍ପତିଙ୍କଠାରୁ ଅନେକ କିଛି ଶୁଣିବାକୁ ଆଗ୍ରହ ଥିଲା । କିନ୍ତୁ ରାତି ବଢୁଥିଲା । ଅଗତ୍ୟା ଦଳେଇ ପରିବାରକୁ ଆତିଥ୍ୟ ପାଇଁ ଧନ୍ୟବାଦ ଜଣାଇ ବାହୁଡ଼ିଲୁ । ×××

ଦଳେଇବାବୁଙ୍କ ଫ୍ଲାଟ୍‌ରୁ ବାହାରି ଆସିବାରେ ଆଶ୍ୱସ୍ତି ଅନୁଭବ କଲୁ । ଶର୍ମାଜୀ ଜଣେ ସ୍ୱର୍ଣ୍ଣକାତର ଶିଳ୍ପୀ । ତାଙ୍କର ମନ୍ତବ୍ୟ – 'ଦଳେଇର ଆଦୌ ରୁଚିଜ୍ଞାନ ନାହିଁ । ଗୁଡ଼ାଏ ଆବୁରୁ ଜାବୁରୁ ଜିନିଷରେ ଘରଟା ଭର୍ତ୍ତି କରିଛି । ସେଥିରେ ପୁଣି ଶସ୍ତା ହିନ୍ଦୀ ସିନେମା ! କି ଅସହ୍ୟ ପରିବେଶ !'

ହେନ୍‌ରୀ ଅବସରପ୍ରାପ୍ତ ବାରିଷ୍ଟର୍ । ସେ ବାରମ୍ବାର ଭାରତ ଆସିଛନ୍ତି । ଭାରତକୁ ସେ ବେଶ୍ ବୁଝିଛନ୍ତି ଓ ଭାରତ ପ୍ରତି ତାଙ୍କର ଯଥେଷ୍ଟ ଶ୍ରଦ୍ଧା । ତାଙ୍କର ଇଂରେଜସୁଲଭ ସଂକ୍ଷିପ୍ତ ମନ୍ତବ୍ୟ ! 'ଭାରତରେ ଇଂରାଜୀ ଶିକ୍ଷାର କୁତ୍ସିତତମ ପରିଣତି ମିଷ୍ଟର ଦଳେଇ !'

ମୁଁ ନୀରବ ରହିଲି । ଭାବୁଥିଲି – ଘୃଣା ନା ଦୟା – କେଉଁଟି ପ୍ରାପ୍ୟ ଦଳେଇବାବୁଙ୍କର ? ଓଡ଼ିଶାର ପାଣି ପବନରେ ବଢ଼ି ଓଡ଼ିଆ କରଦାତାଙ୍କ ଅର୍ଥରେ ଶିକ୍ଷିତ ଦଳେଇବାବୁ ଓଡ଼ିଶାରେ ଇଞ୍ଜିନିୟର୍‌ଟିଏ ହୋଇ ନିଜ ରାଜ୍ୟ ପାଇଁ କିଛି କରିପାରିଥିଲେ ଜୀବନଟା ବ୍ୟର୍ଥ ହୋଇଥା'ନ୍ତା ବୋଲି ମନେକରନ୍ତି କାହିଁକି ? ଉଚ୍ଚ ପଦବୀରେ ଇଂଲାଣ୍ଡ ବା ବିଦେଶ ଯିବାରେ ଅବଶ୍ୟ ଆପତ୍ତିଜନକ କିଛି ନାହିଁ । କିନ୍ତୁ ଜୀବନର ସୁଖ ଓ ସଫଳତାର ମାନଦଣ୍ଡ କ'ଣ ରଙ୍ଗୀନ ଟିଭି, ଭି.ଡ଼ି.ଓ ନକଲି ପେଣ୍ଟିଂ ଓ ମଦ୍ୟ ? ଏହା ହିଁ କ'ଣ ୟୁରୋପ୍-ଆମେରିକାର ମୁଖ୍ୟ ଆକର୍ଷଣ ?

ଦଳେଇବାବୁ ଏକଦା ମେଧାବୀ ଛାତ୍ର ଥିଲେ । କିନ୍ତୁ ତାଙ୍କର ମେଧା ଓ ଅଧ୍ୟବସାୟ ପାଇଁ ସେ କ'ଣ ପୁରସ୍କାର ଚାହାନ୍ତି କେତୋଟି ଇଲେକ୍ଟ୍ରିକାଲ୍ ଗ୍ୟାଜେଟ୍ ଓ ମଦବୋତଲ ? ତାହାହିଁ ଯେପରି ତାଙ୍କ ଜୀବନର ଧ୍ୟେୟ ଓ ତାହାରି ଅନୁସନ୍ଧାନରେ ଯେପରି ସମୃଦ୍ଧ ୟୁରୋପ୍ ଓ ଆମେରିକାରେ ପହଞ୍ଚିଯିବା ପାଇଁ ବ୍ୟାକୁଳ ସେ ଓ ତାଙ୍କରି ପୁଅ ଅସଂଖ୍ୟ

ଭାରତୀୟ ! ସ୍ୱଦେଶରେ ଏବଂ ବିଦେଶରେ କୌଣସି ମହତ ଲକ୍ଷ୍ୟର ଅନୁସନ୍ଧାନ ଯେ ହୋଇପାରେ ଯଥାର୍ଥ ସୁଖ ଓ ସଫଳତାର ହେତୁ, ଦଳେଇବାବୁମାନେ ଏଥିରେ ବିଶ୍ୱାସ କରିବେ କି ??



## ଗାଲିନୋ ଓ ଅନାମଧେୟ ଶିଳ୍ପୀମାନେ

ନଭେମ୍ବର ୧୯୮୩ । ମରିସସୀୟ ବନ୍ଧୁ ଭାଲ୍ ଘରେ ରହୁଥାଏ କ୍ୟାଣ୍ଟରବରୀରେ । ସନ୍ଧ୍ୟାରେ ପ୍ରସ୍ତାବ ଦେଲା ଭାଲ୍, 'ଚାଲ ଟମ୍‌ଘରେ ବୁଲି ଆସିବା । ଖୁବ୍ ଦୂର ନୁହେଁ । ଚାଲିଯାଇ ହେବ ।'

ଆମକୁ ଦେଖି ବେଶ୍ ଉଲ୍ଲସିତ ବେଶ୍ ପ୍ରଗଳ୍ଭ ହୋଇ ଉଠିଲା ଟମ୍ । ଭାଲ୍‌ର ପ୍ରଶଂସା ପାଇଁ ଯେପରି ତା' ପାଖରେ ଶବ୍ଦ ନାହିଁ – ଭାଲ୍ ପାଇଁ ମୁଁ ସବୁକିଛି ଦେଇପାରେ – ଏମିତି କି ମୋ ଜୀବନ ମଧ୍ୟ । ଦୁରାରୋଗ୍ୟ ବ୍ୟାଧିରେ ମୁଁ ସମ୍ପୂର୍ଣ୍ଣ ପଙ୍ଗୁ ହୋଇ ଯାଇଥା'ନ୍ତି । ମୋତେ ଏଇ ମହାବିପଦରୁ ରକ୍ଷା କରିଛି ଭାଲ୍ ।'

ମିଛ କହୁ ନ ଥିଲା ଟମ୍ । ବ୍ୟାଧି, ଦାରିଦ୍ର୍ୟ ଓ ଅବହେଳାରେ ଶଢ଼ୁଥିବା ସମୟରେ ସତରେ ତା'ର ଏକମାତ୍ର ବନ୍ଧୁଥିଲା ଭାଲ୍ । କଳା ଗୋରା ଭେଦଭାବରେ ଆକ୍ରାନ୍ତ ଇଂଲଣ୍ଡରେ କିଛି ସ୍ୱତନ୍ତ୍ର ତାତ୍ପର୍ଯ୍ୟଥିଲା ଟମ୍‌ର ଉକ୍ତିର ।

ଟମ୍‌ର ଘରଟି କ୍ଷୁଦ୍ର, ବିଶେଷ ପରିଷ୍କାର ନୁହେଁ । ୱାଲ୍ ପେପର୍ ଚଟାଣର ଗାଲିଚା ଛିଣ୍ଡା । କିନ୍ତୁ ଦାରିଦ୍ର୍ୟ ଓ ମଳିନତା ସମ୍ପୂର୍ଣ୍ଣ ଅବାନ୍ତର ହୋଇ ପଡ଼ିଥିଲା ତା'ର ଆନ୍ତରିକତା, ତା'ର ହସ ହସ ପ୍ରଗଳ୍ଭତା ନିକଟରେ । ଗମ୍ଭୀର ପ୍ରକୃତିର ତା'ର ସ୍ତ୍ରୀ ଓ ନଅ ବର୍ଷର ଝିଅଟି ନୀରବରେ ବସି ରହିଥିଲେ ସୋଫାରେ ଚିକ୍ ଚିକ୍ କଳା କୁକୁରଟିଏ ମଧ୍ୟ । ଗପି ଚାଲିଥିଲା ଟମ୍ ।

ବର୍ତ୍ତମାନ ସେ ଜଣେ ଟ୍ୟାକ୍ସି ଡ୍ରାଇଭର୍ । କିନ୍ତୁ ବେଶ୍ କିଛିଦିନ ସେ ଚଳୁଥିଲା ସରକାରଙ୍କ ବେକାରି ଭତ୍ତାରେ । ବର୍ତ୍ତମାନ ସେ ହୋଇ ପାରିଛି ଆତ୍ମନିର୍ଭରଶୀଳ ।

ଚା' ପାନ ଓ ପୁଣି ଗପ । କ୍ରମଶଃ ଉଦ୍‌ଘାଟିତ ହେଲା ଟମ୍‌ର ଅସଲ ପରିଚୟ – ସେ ଜଣେ ଶିଳ୍ପୀ । କେଉଁଠି ଅବଶ୍ୟ ତା'ର ଚିତ୍ର ପ୍ରଦର୍ଶନୀ ଅନୁଷ୍ଠିତ ହୋଇ ନାହିଁ; କେହି କିଣନ୍ତି ନାହିଁ ତା'ର ଚିତ୍ର; ଶିଳ୍ପୀମାନଙ୍କ ତାଲିକାରେ କେଉଁଠି ଉଲ୍ଲେଖ ନାହିଁ ବେକାର ଟ୍ୟାକ୍ସି ଡ୍ରାଇଭର୍ ଟମ୍‌ର ନାମ । ସେ କିନ୍ତୁ ଜଣେ ଶିଳ୍ପୀ; ଜଣେ ସଚ୍ଚା ଶିଳ୍ପୀ । ତା'ର ଶିଳ୍ପୀଜୀବନ

ସମ୍ପର୍କରେ ସେ ଗପିବା ଆରମ୍ଭ କରିଦେଇଥିଲା ଓ ମୋ ସାମ୍ନାରେ ଟିପୟ ଉପରେ ରଖି ସାରିଥିଲା ଗୁଡ଼ା ୨ ପେଣ୍ଟିଂ – ଅଦରକାରୀ କାଗଜ ମେଞ୍ଚାଏ ପରି ।

ସେ ସବୁଠାରୁ ବେଶି ଭଲପାଏ ପୁରୁଣା କ୍ୟାଥେଡ୍ରାଲ୍ – ଏକ ହଜାର ବର୍ଷର ପୁରୁଣା ସହର କ୍ୟାଣ୍ଟରବରୀର ପୁରୁଣା କୋଠାଘରଗୁଡ଼ିକର ଚିତ୍ର ଆଙ୍କିବା ପାଇଁ । ତା'ଛଡ଼ା ସେ ଆଙ୍କେ ପଶୁପକ୍ଷୀଙ୍କ ଚିତ୍ର, ଅନ୍ୟ ଗ୍ରହର କାଳ୍ପନିକ କିମ୍ଭୂତ – କିମ୍ଭାକାର ଚରିତ୍ରମାନଙ୍କ ଚେହେରା ସବୁ; ଜୀବନ ଓ ମୃତ୍ୟୁର ପ୍ରତିକୃତ ତା' ନିଜ ଭାଷାରେ, 'ମୋ ଜୀବନର ବ୍ୟଥା ଓ ବେଦନାର ପ୍ରକାଶ ହିଁ ମୋ ଚିତ୍ର । ହଁ ମୁଁ ଦୁଇଟି ମାତ୍ର ରଙ୍ଗ ହିଁ ବ୍ୟବହାର କରେ, କଳା ଓ ଧଳା । କାରଣ ଜୀବନରେ ଦୁଇଟି ମାତ୍ର ରଙ୍ଗ ହିଁ ଥାଏ – କଳା ଓ ଧଳା । କଳା ଓ ଧଳା ଶକ୍ତି ଓ ଜୀବନର ପ୍ରତୀକ । ମଣିଷ ଅବଶ୍ୟ ଅନେକ ରଙ୍ଗ ଆରୋପ କରେ ଜୀବନରେ । ମାତ୍ର ମୋ ବିଚାରରେ ସବୁକିଛି ପ୍ରକାଶ କରିହେବ କଳା ଓ ଧଳା ମାଧ୍ୟମରେ ।

ଚିତ୍ର ଆଙ୍କି ପାରୁ ନ ଥିଲେ ମୁଁ ଆରୋଗ୍ୟ ଲାଭ କରିପାରି ନ ଥା'ନ୍ତି ମୋ ବ୍ୟାଧିରୁ – ମୁଁ ନିଶ୍ଚୟ ହୋଇ ପଡ଼ିଥା'ନ୍ତି ପଙ୍ଗୁ । ଅଧରାତିରେ ମୁଁ ଉଠିପଡ଼େ ଚିତ୍ର ଆଙ୍କିବା ପାଇଁ । ମୁଁ ମଦ୍ୟ ପିଏ ନାହିଁ; କିନ୍ତୁ ଚିତ୍ର ଆଙ୍କିବା, ନିଶାରେ ମୁଁ ହୁଏ ମାତାଲ୍ ।

ଚିତ୍ରଗୁଡ଼ିକ ମୋତେ ଦେଖାଇ ବେଶ୍ କୃତକୃତ୍ୟ ମନେ ହେଉଥିଲା ଟମ୍ – 'ଆପଣଙ୍କ ଭଳି ଜଣେ ବିଶିଷ୍ଟ ବ୍ୟକ୍ତି ମୋ ଘରକୁ ଆସିଲେ ଏହା ମୋର ଭାଗ୍ୟ ! କୌଣସି କୃତ୍ରିମତା ନ ଥିଲା ତା' କଥାରେ – ଅଭିଭୂତ ହେଲି । ଟ୍ୟାକ୍ସି ଡ୍ରାଇଭର୍–ଶିଳ୍ପୀ ଟମ୍‌ର ସାଧନା ଓ କଳାପ୍ରୀତି ନିକଟରେ ନଗଣ୍ୟ ମନେହେଲା ତଥାକଥିତ ବହୁ ଶିଳ୍ପୀଙ୍କ ପୁରସ୍କାର ଓ ସ୍ୱୀକୃତି । ମୋତେ ଉପହାର ଦେଲା ଟମ୍ ପୁରୁଣା କ୍ୟାଣ୍ଟରବରୀର ଚିତ୍ରଟିଏ । ଆପଣ ଚିତ୍ରଟି ଗ୍ରହଣ କରିବା ହିଁ ମୋର ପୁରସ୍କାର ।' ନମ୍ରତା ହିଁ ଶୋଭା ପାଏ ସଚ୍ଚା ଶିଳ୍ପୀକୁ ।

ଚିତ୍ରର ଗୋଟିଏ ପାର୍ଶ୍ୱରେ ଲେଖାଥିଲା – ଗଲିନୋ । ନିଜର ଶିଳ୍ପୀ ବ୍ୟକ୍ତିତ୍ୱକୁ ଟମ୍ ନାମରେ ନୁହେଁ ଗାଲିନୋ ନାମରେ ବିଜ୍ଞାପିତ କରିଥିଲା ସେ । ସାମାଜିକ ବ୍ୟକ୍ତି ଓ ନିଃସଙ୍ଗ କଳାକାର – ଦୁଇଟି ଭିନ୍ନ ଏକକ । ତେଣୁ ଦୁଇଟି ନାମ ହିଁ ବ୍ୟବହାର କରାଯିବା ଉଚିତ – ଏହା ଥିଲା ଟମ୍‌ର କୈଫିୟତ୍ । × × ×

ସେପ୍ଟେମ୍ବର୍ ୧୯୮୯ରେ କ୍ୟାଣ୍ଟରବରୀରେ ଦୁଇଟି ସପ୍ତାହ କଟାଇବା ଅବସରରେ ପୁଣି ଖୋଜିଲି ଟମ୍‌କୁ, ସେ ଯା ଭିତରେ ପ୍ରଥମ ସ୍ତ୍ରୀକୁ ଛାଡ଼ପତ୍ର ଦେଇ ସାରିଥିଲା; ବଦଳାଇ ସାରିଥିଲା ତା'ର ଘର, ନୂଆ ଘରେ ନୂଆ ସ୍ତ୍ରୀକୁ ଭେଟିଲି । ଟମ୍ ଘରେ ନ ଥିଲା । 'ଆପଣ ତାକୁ ରାଇସମ୍ୟାନ୍ ସୁପର୍ ମାର୍କେଟ୍ ନିକଟରେ ଟ୍ୟାକ୍ସି ଷ୍ଟାଣ୍ଡରେ ପାଇବେ । ଏତେଦିନ ପରେ ଦେଖିଲେ ଚିହ୍ନି ପାରିବେ ତ ? ଏବେ ସେ ଲମ୍ବା ବାଳ ରଖିଛି, ଟିକିଏ ମୋଟା ହୋଇଯାଇଛି ।'

ଟମ୍‌ର ଚେହେରା ଅବଶ୍ୟ ଭିନ୍ନ ମନେ ହେଉଥିଲା ଛଅବର୍ଷ ପରେ । ଭାଲ୍ ଓ ମୁଁ ଟ୍ୟାକ୍ସି ଷ୍ଟାଣ୍ଡରେ କିଛି ସମୟ ଗପ କଲୁ ଟମ୍ ସହିତ । ସେମିତି ଆନ୍ତରିକତା, ହସ ହସ ପ୍ରଗଲ୍‌ଭତା ! 'ତୁମେ ଟିକିଏ ମୋଟା ହୋଇ ଯାଇଛ ।' ମୁଁ ମନ୍ତବ୍ୟ ଦେଲି ।

'ହଁ, ଆଗ ଅପେକ୍ଷା ଅଧିକ ସନ୍ତୋଷରେ ଅଛି ।' ସେ କହିଲା । 'ନୂଆ ସ୍ତ୍ରୀ, ନୂଆ ଘର ।'

ଆମ କଥାଭାଷାର ପରିସରକୁ ଆସିଲା ଅନେକ କିଛି ବିଶେଷତଃ ଦ୍ରୁତ ଗତିରେ ବଦଳି ଯାଉଥିବା କ୍ୟାଣ୍ଟର୍‌ବରୀ ସିଟି – ସେଣ୍ଟର୍‌ର ଚେହେରା, ଇଂଲାଣ୍ଡରେ ଦରଦାମ ବୃଦ୍ଧି ଇତ୍ୟାଦି । ନିଜ ପକ୍ଷରୁ ପଦେ ବି କହିଲା ନାହିଁ ଟମ୍ – ଗାଲିନୋ ନିଜ ଚିତ୍ର ନିଜ ଶିଳ୍ପୀଜୀବନ ସମ୍ପର୍କରେ । ତା'ଠାରୁ ବିଦାୟନେବା ଆଗରୁ ପଚାରିଲି, 'ଆଉ ସବୁ କି ଚିତ୍ର ଆଙ୍କୁଛ ଆଜିକାଲି ?'

ଠିକ୍ ଆଗପରି ଆଙ୍କୁଛି ପୁରୁଣା କ୍ୟାଥେଡ୍ରାଲ୍, ଗ୍ରହ ନକ୍ଷତ୍ରମାନଙ୍କରେ ରହୁଥିବା କାଳ୍ପନିକ ଚରିତ୍ରମାନଙ୍କ ଆକାରସବୁ ।' ସହଜ, ସ୍ୱାଭାବିକ, ବେପରୁଆ, କାନ୍ଧଝୁଙ୍କା ଉତ୍ତର ଟମ୍‌ର । ଜୀବନ ଓ କଳା ମଧ୍ୟରେ ସୀମାରେଖା ଟାଣେ ବ୍ୟାବସାୟିକ ଶିଳ୍ପୀ–ଶିଳ୍ପ ତା' ଜୀବନର ଯେତେ ଅଂଶ ନୁହେଁ, ସେତେ ହୋଇପଡ଼େ ବ୍ୟାବସାୟିକ ସଫଳତାର ମାଧ୍ୟମଟିଏ; କିନ୍ତୁ ସଚ୍ଚା ଶିଳ୍ପୀ ପାଇଁ ଅନ୍ୟାନ୍ୟ କର୍ମଗୁଡ଼ିକ ଭଳି ଶିଳ୍ପ ଜୀବନର ଅବିଚ୍ଛେଦ୍ୟ ଅଂଶ ମାତ୍ର । ସେ ଲେଖେ କିମ୍ୱା ଛବି ଆଙ୍କେ; କିନ୍ତୁ ଆଶା କରେ ନାହିଁ, ଅପେକ୍ଷା କରେ ନାହିଁ ପୁରସ୍କାର ବା ସ୍ୱୀକୃତିକୁ । ହୁଏତ ସେ ରହିଯାଏ ଅନାମଧେୟ । କିନ୍ତୁ ସେ ସଚ୍ଚା ଶିଳ୍ପୀଟିଏ ନିଶ୍ଚୟ । ସେହି ଗୋଷ୍ଠୀର ଶିଳ୍ପୀଟିଏ ଟମ୍ ।



# ଜର୍ଜ୍ ଓ ଜିପ୍‌ସି

ବିସ୍ତୃତ ଲନ୍‌ର ଗୋଟିଏ ଧାରରେ ନିଜର ପେଣ୍ଟିଂଗୁଡ଼ିକ ସଜାଡ଼ି ରଖି ଆରାମ ଚେୟାର୍‌ରେ ବସିଥିଲା ବୁଢ଼ାଟି । ମୁଣ୍ଡରେ ହ୍ୟାଟ୍, ଆଖିରେ ଚଷମା, ବେଶ୍ ସ୍ମାର୍ଟ୍ ଚେହେରା । ନିକଟକୁ ଯାଇ ଦେଖିଲି, ବୁଢ଼ାକୁ ଛାଇନିଦ ଲାଗିଯାଇଛି । ମୁଁ ତା' ନିକଟରେ ଠିଆ ହୋଇଥିବା ସମ୍ପର୍କରେ ସେ ହୁଏତ ସଚେତନ ନୁହେଁ ।

ପେଣ୍ଟିଂଗୁଡ଼ିକ ପାରମ୍ପରିକ, କିନ୍ତୁ ଚମତ୍କାର । ସମୁଦ୍ରରେ ଜାହାଜ, ଲ୍ୟାଣ୍ଡସ୍କେପ୍, ପଶୁପକ୍ଷୀଙ୍କ ପ୍ରତିକୃତି ଇତ୍ୟାଦି । ସ୍ୱଚ୍ଛ ପ୍ରବାହିତ ଜଳଧାର, କୋମଳ ସବୁଜ ଲନ୍ ଓ

ପତ୍ରପୂର୍ଣ୍ଣ ଡେକୋରେଟିଭ୍ ବୃକ୍ଷଗୁଡ଼ିକ ଏପରି ଚିତ୍ର ପ୍ରଦର୍ଶନୀ ପାଇଁ ଯେପରି ଯୋଗାଇ ଦେଉଥିଲେ ସ୍ୱାଭାବିକ ପରିବେଶ ! ଛୁଟିଦିନ, ପାଗ, ଉଷ୍ମ ଓ ଉଜ୍ଜ୍ୱଳ । ସ୍ଥାନ-କ୍ୟାଣ୍ଟର୍‌ବରୀ ସହରର ଓ୍ୱେଷ୍ଟଗେଟ୍ ଉଦ୍ୟାନ ।

ଭାଲ୍ ବୁଢ଼ାକୁ ଛାଇନିଦରୁ ଉଠାଇ ଦେଲା, 'କ୍ଷମା କରିବେ... ।'

ବୁଢ଼ା ସାମାନ୍ୟ ଅପ୍ରସ୍ତୁତ ହୋଇ ଉଠି ପଡ଼ିଲା । 'ଏ ମହାଶୟ ଜଣେ ଅଧ୍ୟାପକ... ଭାରତରୁ ଆସିଛନ୍ତି ।' ବୁଢ଼ା ସହିତ ମୋର ପରିଚୟ ଦେଲା ଭାଲ୍ ।

ଆଳାପ ହେଲା । ବୁଢ଼ାର ଫଟୋଟିଏ ନେବାପାଇଁ ଅନୁମତି ମଧ୍ୟ ମିଳିଗଲା । ଆପାତତଃ ସ୍ୱଳ୍ପଭାଷୀ ହେଲେ ହେଁ ମୋ ପ୍ରଶ୍ନର ଉତ୍ତରରେ ବୁଢ଼ା ଆରମ୍ଭ କରି ଦେଇଥିଲା ତା'ର ଘଟଣାବିହୀନ ଜୀବନର ସାଧାରଣ କାହାଣୀ ।

ନାମ ଜର୍ଜ୍ ଲ୍ୟାନେଟ୍ । ୧୯୩୮ ରୁ ରହିଆସିଛି କ୍ୟାଣ୍ଟର୍‌ବରୀରେ, ଚାକିରିରୁ ଅବସର ନେଇ ସାରିଛି । ତା' ସ୍ତ୍ରୀର ଜନ୍ମଭୂମି ଭାରତ । ସେ ଅବଶ୍ୟ ଭାରତ ଆସି ନାହିଁ କେବେ ।

ଚିତ୍ର ଆଙ୍କିବା ତା'ର ଗୋଟିଏ ଖିଆଲ - ହବି । ଅନେକ ଚିତ୍ର ଆଙ୍କିଛି । ସେଗୁଡ଼ିକୁ ଯତ୍ନରେ ବନ୍ଧାଇ ସାଇତି ରଖିବା ଏକ ସମସ୍ୟା । କିଏ ଚିତ୍ରଟିଏ କିଣି ନେଲେ ସେ ଅବଶ୍ୟ ଖୁସିହୁଏ । ଚିତ୍ରଗୁଡ଼ିକ ପାଖରୁ ଚାଲିଗଲେ ତାକୁ ବଡ଼ ହାଲ୍‌କା ଲାଗେ ।

କେବଳ ଜର୍ଜ୍ ନୁହେଁ, ତା' ଭଳି ବେଶ୍ କେତେଜଣ ଶିଳ୍ପୀ ବସି ରହିଥିଲେ ଉଦ୍ୟାନରେ ନିଜ ନିଜର ଚିତ୍ର ପ୍ରଦର୍ଶନୀ ନିକଟରେ । ଚିତ୍ରଗୁଡ଼ିକର ମୂଲ୍ୟ ଖୁବ୍ ବେଶି ନ ଥିଲା; କିନ୍ତୁ କାହାନ୍ତି ସେମାନଙ୍କର ଗ୍ରାହକ ? କେହି ଆଖିରେ ପଡୁ ନ ଥିଲେ ।

ଛୁଟି ଦିନରେ ବି ଖୋଲା ଥିଲା କ୍ୟାଣ୍ଟର୍‌ବରୀର ଅଧିକାଂଶ ଦୋକାନ । ବେଶ୍ ଲୋକାରଣ୍ୟ ଥିଲା ମୁଖ୍ୟ ରାସ୍ତାସବୁ । ଓ୍ୱେଷ୍ଟଗେଟ୍ ଉଦ୍ୟାନର ବେଞ୍ଚଗୁଡ଼ିକ ଅଧିକାର କରି ନେଇଥିଲେ ବୁଢ଼ା-ବୁଢ଼ୀ; ଯୁବକ-ଯୁବତୀମାନେ । ହଳେ ଭାରତୀୟ ଯୁବକ, ଯୁବତୀ କୌଣସି ଗୋଟିଏ ବେଞ୍ଚରେ ପରସ୍ପରକୁ ଚୁମ୍ବନ ଦେବାର ଦୃଶ୍ୟଟି କେଜାଣି କାହିଁକି ଦୃଷ୍ଟିକଟୁ ମନେ ହେଉଥିଲା । ତେବେ ମୋଟାମୋଟି ଆଳସ୍ୟ ଓ ଆନନ୍ଦର ବାତାବରଣ ଅନୁଭବ କରି ହେଉଥିଲା ସହରଟିରେ ।

ଅଗଷ୍ଟ ମାସ, ଜଳବାୟୁର ଅନୁକୂଳତା ହେତୁ ପ୍ରାୟ ଏଇ ସମୟରେ କ୍ୟାଣ୍ଟର୍‌ବରୀ ତଥା ଇଂଲାଣ୍ଡର ପ୍ରତି ଅଞ୍ଚଳରେ ଶିଳ୍ପୀମାନେ ସେମାନଙ୍କର ନିଜ ନିଜର ଚିତ୍ର ପ୍ରଦର୍ଶନୀମାନ ଆୟୋଜନ କରନ୍ତି ରାସ୍ତା ଧାରରେ, ହାଟରେ, କୌଣସି ମୁକ୍ତ ସ୍ଥାନ - ମୁଖ୍ୟତଃ ଉଦ୍ୟାନମାନଙ୍କରେ । ଏଇ ଶିଳ୍ପୀମାନଙ୍କ ନାମ ପ୍ରାୟତଃ ଅଜ୍ଞାତ ହିଁ ରହିଯାଏ - କୌଣସି ବଡ଼ ଆର୍ଟ୍ ଗ୍ୟାଲେରୀରେ ସେମାନଙ୍କ ପ୍ରଦର୍ଶନୀ ଅନୁଷ୍ଠିତ ହୁଏ ନାହିଁ; କୌଣସି ପତ୍ରିକା ବା ଗ୍ରନ୍ଥରେ ମୁଦ୍ରିତ ହୁଏ ନାହିଁ ସେମାନଙ୍କର ଚିତ୍ର । ଚିତ୍ର ବିକ୍ରୟ କରି ଅର୍ଥ ଉପାର୍ଜନର

ସମ୍ଭାବନା ସେମାନଙ୍କ ପାଇଁ କ୍ଷୀଣ । ତଥାପିବି କି ବିପୁଳ ସଂଖ୍ୟାରେ ଆଙ୍କି ଚାଲନ୍ତି ସେମାନେ – କି ନିରବଚ୍ଛିନ୍ନ ଅଧ୍ୟବସାୟ ସେମାନଙ୍କର, ଭାବିଲେ ସତରେ ଆଶ୍ଚର୍ଯ୍ୟ ଲାଗେ ! ଜର୍ଜ୍ ଲ୍ୟାନେଟ୍ ଜଣେ ବ୍ୟକ୍ତି ନୁହେଁ – ଗୋଟିଏ ପ୍ରତୀକ ! ଅନାମଧେୟ, ଅବହେଳିତ କିନ୍ତୁ ଦର୍ଶକକୁ ନାନ୍ଦନିକ ଆନନ୍ଦ ପ୍ରଦାନ କରିବାରେ କ୍ଷୁଦ୍ର ପୃଥିବୀଟିକୁ ଟିକିଏ ଅଧିକ ସୁନ୍ଦର, ଟିକିଏ ଅଧିକ ବର୍ଣ୍ଣାଢ଼୍ୟ କରିବାରେ ତା'ର ଅବଦାନକୁ ଅସ୍ୱୀକାର କରାଯାଇପାରେ କି ?

ୱେଷ୍ଟଗେଟ୍ ଉଦ୍ୟାନରେ ଜର୍ଜ୍‌ମାନେ ଚିତ୍ର ପ୍ରଦର୍ଶନୀଟିମାନ ଆୟୋଜିତ କରିଥିବା ବେଳେ କ୍ୟାଣ୍ଟର୍‌ବରୀ ରାଜପଥରେ ସଙ୍ଗୀତ ପରିବେଷଣ କରୁଥା'ନ୍ତି ଦଳେ ଜିପ୍‌ସି । ମଇଳା, ଛିଣ୍ଡା ପୋଷାକ, ଲମ୍ବା ମୁଣ୍ଡବାଳ ସାଙ୍ଗରେ ଗୋଟାଏ ଦୁଇଟା କୁକୁର । ହାତରେ ବେହେଲା ଓ ଖଞ୍ଜଣି ଜାତୀୟ ବାଦ୍ୟ । ସେମାନେ ଯାଯାବର, ଦରିଦ୍ର; କିନ୍ତୁ ବାଣ୍ଟି ଚାଲିଥା'ନ୍ତି ସଙ୍ଗୀତ ଓ ଆନନ୍ଦ । କାରଣ ସେମାନେ ଶିଳ୍ପୀ । ଜୀବନକୁ ଟିକିଏ ଅଧିକ ସରସ, ଅଧିକ ପ୍ରାଣବନ୍ତ କରନ୍ତି ସେମାନେ – ଅଥଚ କିଏ ଜାଣେ ସେମାନଙ୍କ ପରିଚୟ ? କିଏ ବା ଜାଣିବାକୁ ଚାହେଁ ? × × ×

କଳା, ସାହିତ୍ୟ ବା ସଙ୍ଗୀତର ଇତିହାସ କହିଲେ ଆମେ ମୋଟା ମୋଟି ମୁଷ୍ଟିମେୟ କଳାକାର ସାହିତ୍ୟିକ ବା ସଙ୍ଗୀତଜ୍ଞଙ୍କର କୃତିକୁ ହିଁ ବୁଝିଥାଉ ୟୁରୋପୀୟ ପରିପ୍ରେକ୍ଷୀରେ ପେଣ୍ଟିଂ କହିଲେ ପ୍ରଥମେ ମନକୁ ଆସନ୍ତି ଭିନ୍‌ସେଣ୍ଟ୍ ଭାନ୍‌ଗଗ୍; ସାହିତ୍ୟ କହିଲେ, ସେକ୍ସପିୟର୍ କିମ୍ବା ସଙ୍ଗୀତ କହିଲେ ବିଥୋଭେନ୍ । ଅବିଶ୍ୱାସ ମନେହେଉଥିଲେ ହେଁ ଏକଥା କିନ୍ତୁ ସତ୍ୟ, ଯେକୌଣସି ରାଜ୍ୟ ଅଞ୍ଚଳରେ କଳା, ସାହିତ୍ୟ ବା ସଙ୍ଗୀତର ଆୟତନ ବା ଆକାର ମୁଖ୍ୟତଃ ନିର୍ଣ୍ଣୟ କରିଥା'ନ୍ତି ଅନାମଧେୟ ଗୌଣ କଳାକାର, ସାହିତ୍ୟିକ ବା ସଙ୍ଗୀତଜ୍ଞମାନେ । କ୍ୟାଣ୍ଟର୍‌ବରୀ କ୍ୟାଥେଡ୍ରାଲ୍, ପ୍ୟାରିସ୍‌ର ନଟର୍‌ଡ୍ୟାମ୍ ବା ଓଡ଼ିଶାର କୋଣାର୍କକୁ ବିଶ୍ୱକଳାକୃତିର ଶ୍ରେଷ୍ଠ ନିଦର୍ଶନ ରୂପେ ପରିଗଣିତ କରାଯାଏ । ଏଗୁଡ଼ିକ ଅନାମଧେୟ, ଗୌଣ ଶିଳ୍ପୀମାନଙ୍କ ସାମୁହିକ କୀର୍ତ୍ତି ନୁହେଁ କି ? ଠିକ୍ ସେହିପରି ଇଂଲାଣ୍ଡରେ ଚିତ୍ରକଳାର ପରମ୍ପରା ଏତେ ଉନ୍ନତ ହେବାରେ ଜର୍ଜ୍ ଲ୍ୟାନେଟ୍‌ଙ୍କ ଭଳି ଅଜ୍ଞାତ ଶିଳ୍ପୀ ବା ସଙ୍ଗୀତ ଏତେ ଉନ୍ନତ ହେବାରେ ଦରିଦ୍ର ଜିପ୍‌ସିମାନଙ୍କ ଅବଦାନ କିଏ ଅସ୍ୱୀକାର କରିପାରେ ?



## ଲଣ୍ଡନ୍‌ରେ ପ୍ରହ୍ଲାଦ ନାଟକ

ଲଣ୍ଡନ୍‌ର କେନ୍ଦ୍ରସ୍ଥଳ ମୋଲ୍ ଅଞ୍ଚଳରେ ଇନ୍‌ଷ୍ଟିଚ୍ୟୁଟ ଅଫ୍ କଣ୍ଟେମ୍ପରାରୀ ଆର୍ଟସର ଥିଏଟର ହଲ । ହଲର ଚଟାଣ ଓ କାନ୍ଥସବୁରେ ମାଟି ରଙ୍ଗର ପ୍ରଲେପ । ଚଟାଣରେ

ଓଡ଼ିଶୀ ଚିତା । ଥିଏଟରର ଗୋଟିଏ କୋଣରେ ଅନେକଗୁଡ଼ିଏ ପାହାଚ ବିଶିଷ୍ଟ କାଠର ମଞ୍ଚ ଓ ମଞ୍ଚ ଉପରେ ସିଂହାସନ । କାନ୍ଥରେ ପିପିଲିର ହାତୀ ଚିତ୍ରର ଝାଲର ।

ଅଗଷ୍ଟ ୧୯୮୯ରେ ଲଣ୍ଡନ୍‌ର ଏଇ ବିଖ୍ୟାତ ଥିଏଟର ହଲ୍‌ଟି ଚାରିଦିନ ପାଇଁ ସୃଷ୍ଟି କରିଥିଲା ଓଡ଼ିଆ ଗାଆଁର ପରିବେଶ । ସମବେତ ଇଂରେଜ ଓ ଲଣ୍ଡନ୍ ନିବାସୀ ଭାରତୀୟମାନେ ପ୍ରତ୍ୟକ୍ଷ କରିଥିଲେ ଏକ ସମ୍ପୂର୍ଣ୍ଣ ନୂତନ ଅନୁଭୂତି । ମୋର ସୌଭାଗ୍ୟ, ଆକସ୍ମିକଭାବେ ଠିକ୍ ସେହି ସମୟରେ ମୁଁ ପହଞ୍ଚିଥିଲି ଲଣ୍ଡନ୍‌ରେ ଏବଂ ଶିଳ୍ପୀ ଲେଖକ-ବନ୍ଧୁ ପ୍ରଫୁଲ୍ଲ ମହାନ୍ତି ଓ ବାରିଷ୍ଟର ଡେରିକ୍ ମୋରଙ୍କ ନିମନ୍ତ୍ରଣ କ୍ରମେ ଉପସ୍ଥିତ ଥିଲି ସେହି ଥିଏଟରରେ ।

ପ୍ରଥମେ ସଂକ୍ଷେପରେ ଆଗତ କାର୍ଯ୍ୟକ୍ରମ ସମ୍ପର୍କରେ ସୂଚନା ଦେଲେ ଆଲି ପ୍ରେଟ୍‌ଟି । ତା'ପରେ ଥିଏଟର ହଲ୍ ମଧ୍ୟକୁ ପ୍ରବେଶ କଲେ ଚାରିଜଣ ଲୋକ – ଧଳା ଧୋତି ପଞ୍ଜାବୀ ପରିହିତ, ଖାଲି ପାଦ, ମୁଣ୍ଡରେ ହଳଦିଆ ପଗଡ଼ି । ସମବେତ ଶ୍ଳୋକ ଗାନ – ଗୁରୁବ୍ରହ୍ମା, ଗୁରୁବିଷ୍ଣୁ, ଗୁରୁଦେବ ମହେଶ୍ୱର... ଇତ୍ୟାଦି । ସେମାନଙ୍କ ପଖୌଜ ଓ ଗିନି ନାଦରେ କମ୍ପି ଉଠିଲା ହଲ୍‌ଟି । କାନ୍ଧରେ ହାରମୋନିୟମ୍ ଝୁଲାଇ ପ୍ରବେଶ କଲା ଗାୟକ । ନିଛକ ଓଡ଼ିଆ ସଙ୍ଗୀତ ତାଳରେ ଉଲ୍ଲସିତ ହୋଇଉଠିଲା ଲଣ୍ଡନ୍‌ର ଏହି ଆଭିଜାତ୍ୟ ସମ୍ପନ୍ନ କଳାକେନ୍ଦ୍ର । ଆରମ୍ଭ ପ୍ରହ୍ଲାଦ ନାଟକ ।

ବାଦ୍ୟ, ସଙ୍ଗୀତ ଓ ପ୍ରାର୍ଥନା ପରେ ବିଘ୍ନ ବିନାଶକ ଗଣେଶଙ୍କ ନୃତ୍ୟ । ତା'ପରେ ଦ୍ୱାରପାଳ ଦ୍ୱାରା ଅସୁରରାଜା ହିରଣ୍ୟକଶ୍ୟପୁର ଆଗମନ ଘୋଷଣା । ମନ୍ତ୍ରୀଙ୍କ ଗହଣରେ ପ୍ରବେଶ କଲା ହିରଣ୍ୟକଶ୍ୟପୁ । ହିରଣ୍ୟକଶ୍ୟପୁ ପଛେ ପଛେ ସ୍ତ୍ରୀ ଲୀଳାବତୀ । ହିରଣ୍ୟକଶ୍ୟପୁ ଓ ଲୀଳାବତୀଙ୍କ ପ୍ରେମ ସଙ୍ଗୀତଗାନ ଓ ନୃତ୍ୟ । ତା'ପରେ ପ୍ରହ୍ଲାଦର ପ୍ରବେଶ । ପ୍ରହ୍ଲାଦ ବିଷ୍ଣୁଙ୍କ ପ୍ରଶଂସା କରନ୍ତେ ହିରଣ୍ୟକଶ୍ୟପୁର କ୍ରୋଧ । ପ୍ରହ୍ଲାଦର ଶିକ୍ଷା ନିମିତ୍ତ ରାଜଗୁରୁ ନିଯୁକ୍ତ । କିନ୍ତୁ ଗୁରୁ 'ଶିବ' କହିଲେ, ପ୍ରହ୍ଲାଦ କହେ 'ନାରାୟଣ' । ଏଥିରେ କ୍ରୁଦ୍ଧ ହିରଣ୍ୟକଶ୍ୟପୁ ସିଂହାସନରୁ ଛୁରି ନିକ୍ଷେପ କରି ପ୍ରହ୍ଲାଦକୁ ହତ୍ୟା କରିବାପାଇଁ ଉଦ୍ୟମ କରେ । ପୁତ୍ର ପ୍ରତି ଏପରି ନୃଶଂସ ଆଚରଣ ନ କରିବାକୁ ସ୍ୱାମୀଙ୍କୁ ନିବେଦନ କରେ ଲୀଳାବତୀ । କେଉଁଠାରେ ତା'ର ନାରାୟଣ ଅଛନ୍ତି ବୋଲି ହିରଣ୍ୟକଶ୍ୟପୁ ପ୍ରଶ୍ନକରେ ପ୍ରହ୍ଲାଦକୁ । ପ୍ରହ୍ଲାଦ ଅଙ୍ଗୁଳି ନିର୍ଦ୍ଦେଶ କରେ ନିକଟବର୍ତ୍ତୀ ସ୍ତମ୍ଭ ପ୍ରତି ଓ ସେହି ସ୍ତମ୍ଭରୁ ତତ୍‌କ୍ଷଣାତ୍ ବାହାରି ଆସନ୍ତି ନରସିଂହ ବିଷ୍ଣୁଙ୍କ ପ୍ରଳୟଙ୍କର ରୂପ । ନରସିଂହ ହତ୍ୟା କରନ୍ତି ହିରଣ୍ୟକଶ୍ୟପୁକୁ ଓ ପ୍ରହ୍ଲାଦକୁ ଅଭିଷିକ୍ତ କରନ୍ତି ରାଜସିଂହାସନରେ ।

ପ୍ରହ୍ଲାଦ ନାଟକର ବିଷୟବସ୍ତୁ ଆମର ପରିଚିତ ହିରଣ୍ୟକଶ୍ୟପୁ ପ୍ରହ୍ଲାଦ କାହାଣୀ । କିନ୍ତୁ ପ୍ରହ୍ଲାଦ ନାଟକଟି ଗୋଟିଏ କାହାଣୀର କେବଳ ନାଟ୍ୟରୂପ ନୁହେଁ । ସଙ୍ଗୀତ, ନୃତ୍ୟ, ସଂଳାପ, ଶରୀର ଓ ପଦଚାଳନା, ବର୍ଣ୍ଣାଢ଼୍ୟ ପୋଷାକ ଓ ମୁଖା ବ୍ୟବହାରର ଏହା ଏକ ଅପୂର୍ବ ସମନ୍ୱୟ । ରୀତି, ପଲ୍ଲୀ ଓ ଆଦିବାସୀ ସଂସ୍କୃତିର ପ୍ରଭାବ ବେଶ୍ ସ୍ପଷ୍ଟ ଏଇ

ନାଟକରେ । ଏହାର କାହାଣୀ ଅଂଶଟି ସଂକ୍ଷିପ୍ତ । କିନ୍ତୁ ସଙ୍ଗୀତ ଓ ନୃତ୍ୟର ପ୍ରାଧାନ୍ୟ ହେତୁ ନାଟକଟିର ଗତି ମନ୍ଥର । ଲଣ୍ଡନ୍‌ର ଥିଏଟର୍‌ରେ ଅବଶ୍ୟ ସମଗ୍ର ନାଟକଟି ଅଭିନୀତ ହୋଇଥିଲା ପ୍ରାୟ ଦୁଇ ଘଣ୍ଟାରେ । ମାତ୍ର ଏହାର ମୂଳଭୂମି ଗଞ୍ଜାମରେ ଏହା ଅଭିନୀତ ହୁଏ ରାତ୍ରି ସାରା ପ୍ରାୟ ଆଠଘଣ୍ଟା ଧରି । କୌଣସି ନାଟ୍ୟକଳାରେ ସଙ୍ଗୀତ, ନୃତ୍ୟ, ସଂଳାପ, କାହାଣୀ ଓ ଶରୀର ହସ୍ତ ପଦ ଚାଳନାରେ ଏପରି ସମନ୍ୱୟ କ୍ୱଚିତ ଘଟିଥାଏ ।

ପ୍ରହ୍ଲାଦ ନାଟକର ମୂଳଭୂମି ଗଞ୍ଜାମ ବିଶେଷତଃ ଗଞ୍ଜା ଅଞ୍ଚଳ । ବର୍ତ୍ତମାନ ମାତ୍ର ଅଳ୍ପ କେତୋଟି ଦଳ ଏହାର ଅଭିନୟ କରନ୍ତି । ପ୍ରାୟ ଶହେବର୍ଷ ତଳେ ଅଧୁନା ଆନ୍ଧ୍ରପ୍ରଦେଶ ଅନ୍ତର୍ଭୁକ୍ତ ଜଳନ୍ତରରେ ଓଡ଼ିଆ ରାଜା ରାମକୃଷ୍ଣ ଛୋଟରାୟ ପ୍ରଥମେ ଏହାର ଅଭିନୟ କରାଇଥିଲେ । ପ୍ରଥମ ପ୍ରହ୍ଲାଦ ନାଟକ ଲେଖିଥିଲେ ଗୋପୀନାଥ ପରିଛା । କ୍ରମେ ଏହାର ଜନପ୍ରିୟତା ବୃଦ୍ଧି ପାଇଲା ଓ ଏହା ପ୍ରସାରିତ ହେଲା ଗଞ୍ଜାମର ବିଭିନ୍ନ ଅଞ୍ଚଳକୁ । କିନ୍ତୁ ଏଇ ଆଞ୍ଚଳିକ ନାଟକଟିକୁ ପ୍ରଥମଥରପାଇଁ ସଂକୀର୍ଣ୍ଣ ଭୌଗୋଳିକ ପରିସୀମାରୁ ମୁକ୍ତି କରି ଲଣ୍ଡନ୍ ଓ ୟୁରୋପକୁ ଆଣି ପାରିଛନ୍ତି ଆଲିକା ପ୍ରଡ଼କ୍‌ସନ ଲିମିଟେଡ଼ । ଏଇ ସଂସ୍ଥାଟିର ମୁଖ୍ୟ ସଭ୍ୟମାନେ ହେଲେ – ଆଲିପ୍ରେଟ୍‌ଟି, କ୍ୟାଟିଂକା ହେକ୍ରାଫଟ୍, ମାଇକ୍ ଲେଓ୍ୱାର୍ଡ଼, କୋରକ ଘୋଷ୍ । ଏମାନେ ଗଞ୍ଜାମର, ମଫସଲ ଅଞ୍ଚଳରେ ଅସ୍ୱାସ୍ଥ୍ୟକର ପରିବେଶ ଓ ବିଭିନ୍ନ ଅସୁବିଧା ସତ୍ତ୍ୱେ ମାସ ମାସ କଟାଇ ଏଇ ନାଟକଟିକୁ ନୂତନ ଜୀବନ୍ୟାସ ଦେଇଛନ୍ତି ବୋଲି କୁହାଯାଇପାରେ । ଆଲିପ୍ରେଟ୍‌ଟି ଓ କୋରକ୍ ଘୋଷ୍ ନାଟକଟିର ଡକ୍ୟୁମେଣ୍ଟାରୀ ଫିଲ୍ମଟିଏ ମଧ୍ୟ ପ୍ରସ୍ତୁତ କରିଛନ୍ତି ଓ ପ୍ରହ୍ଲାଦ ନାଟକଟିକୁ ସମଗ୍ର ପୃଥିବୀରେ ପରିଚିତ କରିବାକୁ ଉଦ୍ୟମ ଆରମ୍ଭ କରିଛନ୍ତି । ଓଡ଼ିଶାର ସାଂସ୍କୃତିକ ଇତିହାସରେ ଆଲିକା ଅନୁଷ୍ଠାନ – ବିଶେଷତଃ ଆଲିପ୍ରେଟ୍‌ଟି ଓ କୋରକ୍ ଘୋଷ୍‌ଙ୍କ ନାମ ଅବଶ୍ୟ ସ୍ମରଣୀୟ । × × ×

ଲଣ୍ଡନ୍‌ରେ ଅଭିନୀତ ପ୍ରହ୍ଲାଦ ନାଟକରେ କଳାକାରମାନଙ୍କ ସଂଖ୍ୟା ଥିଲା ନଅ । ସେମାନେ ଥିଲେ ଗଞ୍ଜାମର ରଘୁନାଥ ଶତପଥୀଙ୍କ ଦଳର; କିନ୍ତୁ ଦଳର ମୁଖ୍ୟ ଶ୍ରୀ ଶତପଥୀ ସ୍ୱାସ୍ଥ୍ୟଗତ କାରଣରୁ ଲଣ୍ଡନ୍ ଆସିପାରି ନ ଥିଲେ । କୃଷ୍ଣଚନ୍ଦ୍ର ସାହୁ (ହିରଣ୍ୟକଶ୍ୟପୁ), ପ୍ରକାଶ ଚନ୍ଦ୍ର ରଣା (ପ୍ରହ୍ଲାଦ ଓ ଗଣେଶ), ବାବୁ ମହାକୁଣ୍ଡ (ଲୀଳାବତୀ), କାଳୁ ରଣା (ଗାୟକ) ଇତ୍ୟାଦି ଏମାନଙ୍କ ମଧ୍ୟରେ ଥିଲେ ମୁଖ୍ୟ । ବାରବର୍ଷର ବାଳକ ପ୍ରକାଶ ଓରଫ କାଳିଆର ପ୍ରହ୍ଲାଦ ଭୂମିକାରେ ଅଭିନୟ ହିଁ ଥିଲା ନାଟକର ମୁଖ୍ୟ ଆକର୍ଷଣ । ପ୍ରକାଶର ସାବଲୀଳ ପଦଚାଳନା ଓ ବିନା ସଂକୋଚରେ ଘଣ୍ଟା ଘଣ୍ଟା ଧରି ଲଣ୍ଡନ୍‌ର ଦର୍ଶକମାନଙ୍କ ସମ୍ମୁଖରେ ଅଭିନୟ ଯଥାର୍ଥରେ ପ୍ରଶଂସନୀୟ ।

ଦର୍ଶକମାନଙ୍କ ମଧ୍ୟରେ ଉପସ୍ଥିତ ଥିଲେ ଆଞ୍ଜେଲା – ଜର୍ମାନୀର ହାଇଡ଼େଲବର୍ଗ୍ ବିଶ୍ୱବିଦ୍ୟାଳୟର ଗବେଷିକା । ପଞ୍ଜାବର ଶିଖ୍ ଧାର୍ମିକ ଅନୁଷ୍ଠାନମାନଙ୍କ ସମ୍ପର୍କରେ ସେ ଏଇମାତ୍ର ସମାପ୍ତ କରିଛନ୍ତି ତାଙ୍କର ଗବେଷଣା । ତାଙ୍କ ମତରେ ଦକ୍ଷିଣ ଭାରତର କଥାକାଳି ନୃତ୍ୟ ସହିତ କିଛିଟା ସାମଞ୍ଜସ୍ୟ ଅଛି ପ୍ରହ୍ଲାଦ ନାଟକରେ ।

ଛିଦ୍‌ପରିହିତ ହସ ହସ ଅଶୋକ ଘୋଷ୍ ଲଣ୍ଡନ୍‌ରେ ଜଣେ ଅଧ୍ୟାପକ । 'ପ୍ରହ୍ଲାଦ ନାଟକଟି ଯଥାର୍ଥରେ ଏକ ସୋଫେଷ୍ଟିକେଟେଟ୍ ଫର୍ମ' – ତାଙ୍କର ମନ୍ତବ୍ୟ ।

ନାଟକ ପରେ ବାର୍‌ରେ କୋଲଡ୍ ବିଅର ଶୋଷୁ ଶୋଷୁ କହିଲେ – କ୍ୟାଟିଂ ହେକ୍ରାଫଟ୍, 'ଅଣାନବେ ଥର ପାଇଁ ଆଜି ଦେଖିଲେ ପ୍ରହ୍ଲାଦ ନାଟକ' । ଗଞ୍ଜାମର ନିଭୃତ ପଲ୍ଲୀରୁ ଲଣ୍ଡନ୍ ମହାନଗରୀକୁ ପ୍ରହ୍ଲାଦ ନାଟକକୁ ନିମନ୍ତ୍ରଣ କରି ଆଣିବାରେ ତାଙ୍କର ଅବଦାନ ଯଥେଷ୍ଟ ।

ମୋ ସଙ୍ଗେ ଓଡ଼ିଆରେ କଥାଭାଷା ହୋଇ ବେଶ୍ ଖୁସି ହେଲେ ପ୍ରହ୍ଲାଦ ନାଟକର କଳାକାରଗଣ । ବର୍ଣ୍ଣନା କଲେ ଉଡ଼ାଜାହାଜରେ ଲଣ୍ଡନ୍ ଆସିବା ପାଇଁ ପ୍ରଥମେ କିପରି ଭୟ କରୁଥିଲେ ସେମାନେ, ଏଠାରେ ଖାଦ୍ୟ କିପରି ଯାଉ ନାହିଁ ସେମାନଙ୍କ ଦେହରେ, ଇତ୍ୟାଦି । ବର୍ତ୍ତମାନ କିନ୍ତୁ ସେମାନେ ନିଜକୁ ଖାପ୍ ଖୁଆଇ ନେଇ ସାରିଥିଲେ ବିଦେଶର ଜଳବାୟୁ ପରିବେଶ ସହିତ । ମନେହେଉଥିଲା ଆତ୍ମନିର୍ଭରଶୀଳ ଓ ସନ୍ତୁଷ୍ଟ ।

ସେଦିନ ରାତିଟିଥିଲା ଉଷ୍ମ ଓ ମେଘହୀନ । ଥିଏଟର ହଲ୍ ନିକଟସ୍ଥ ରାଣୀଙ୍କ ବକିଂହାମ୍ – ପାଲେସ୍ ପଥରେ ଆମେ ଫେରିଲୁ ସସେକ୍ସ ଷ୍ଟ୍ରିଟ୍ । ସେଇଠାରେ ପ୍ରଫୁଲ ମହାନ୍ତି ଓ ଡେରିକ୍ ମୋରଙ୍କ ସହିତ ରହୁଥିଲି ମୁଁ । ଶୁଭ୍ର ଉଜ୍ଜ୍ୱଳ ରଙ୍ଗର ଉତ୍ତୁଙ୍ଗ ବକିଂହାମ୍ ପାଲେସ୍, ପ୍ରଶସ୍ତ ରାଜପଥ ଦୁଇ ପାର୍ଶ୍ୱରେ ପତ୍ରପୂର୍ଣ୍ଣ ମହୀରୁହ ଓ ଏକ ଚମତ୍କାର କଳା ଅନୁଭୂତି ମୋତେ କରିଥିଲା ଉଲ୍ଲସିତ । ଫେରିବା ସମୟରେ କହିଲେ ଲଣ୍ଡନ୍ ନିବାସୀ ଶିଳ୍ପୀ ପ୍ରଫୁଲ ମହାନ୍ତି, 'ଲଣ୍ଡନ୍‌ରେ ଆଗରୁ ଓଡ଼ିଶୀ ଓ ଛଉ ନୃତ୍ୟ ପ୍ରଦର୍ଶିତ ହୋଇଛି ଅନେକ ଥର । କିନ୍ତୁ ଓଡ଼ିଆ ନାଟକଟି ଅଭିନୀତ ହେବା ଏଇ ପ୍ରଥମ ।'

ପ୍ରହ୍ଲାଦ ନାଟକ ଦେଖିବା ପରେ ମୁଁ କିନ୍ତୁ ଲଜ୍ଜିତ ଅନୁଭବ କରୁଥିଲି କେତେକାଂଶରେ । ଅଶୋକ ଘୋଷ୍‌ଙ୍କୁ କହିଥିଲି ଅଳ୍ପ କେତେ ମିନିଟ୍ ଆଗରୁ, ମୁଁ ଓଡ଼ିଶାରୁ ଆସିଛି ସତ; କିନ୍ତୁ ପ୍ରହ୍ଲାଦ ନାଟକ ପ୍ରଥମଥର ପାଇଁ ଦେଖୁଛି ଲଣ୍ଡନ୍‌ରେ, ପରିସ୍ଥିତିର କି ବିଡ଼ମ୍ବନା ।''

ଅଧ୍ୟାପକ ଘୋଷ୍ ମୋ ମନ୍ତବ୍ୟରେ ଆଶ୍ଚର୍ଯ୍ୟ ହୋଇ ନ ଥିଲେ । ମୋତେ ଆଶ୍ୱାସନା ଦେବା ଢଙ୍ଗରେ କହିଥିଲେ, 'ହଁ ସେପରି ତ ହୋଇଥାଏ । ସମସ୍ତେ ଦେଖିପାରିବା ଭଳି ସ୍ଥାନରେ ନାଟକଟି ଅଭିନୀତ ନ ହେଲେ ସର୍ବସାଧାରଣ ଦେଖିବେ କିପରି ?'

ପ୍ରହ୍ଲାଦ ନାଟକଟି ଏଣିକି ଭାରତ ଓ ପୃଥିବୀର ବଡ଼ ବଡ଼ ସହରମାନଙ୍କରେ ଅଭିନୀତ ହୋଇପାରିବ ଏବଂ ଓଡ଼ିଶୀ ଓ ଛଉପରି ସ୍ୱୀକୃତ ହେବ ଏକ ମୁଖ୍ୟ କଳା ରୂପରେ – ଏପରି ଆଶା କରିବା ହିଁ ସ୍ୱାଭାବିକ ।



# ସ୍ପେନ୍‌ର ମାଟି

## ବାର୍ସେଲୋନାରୁ ସିଜେସ୍

ଆଇବେରିଆନ୍ ୪୨୫ ବ୍ୟୋମଯାନଟି ବାର୍ସେଲେନୋ ବିମାନଘାଟୀରେ ପହଞ୍ଚିଲା ମଧ୍ୟରାତ୍ରୀରେ । ମୋର ଗନ୍ତବ୍ୟସ୍ଥାନ ସିଜେସ୍ – ସେଠାରୁ ପ୍ରାୟ ଶହେ କିଲୋମିଟର । ସିଜେସ୍‌ରେ ଅନୁଷ୍ଠିତ ହେବାର ଥାଏ କମନ୍‌ୱେଲଥ୍ ଭାଷା ଓ ସାହିତ୍ୟ ସମ୍ମିଳନୀ ।

ବାର୍ସେଲୋନା ବିମାନଘାଟୀଟି ପ୍ରଶସ୍ତ ଓ ଉଜ୍ଜ୍ୱଳ । ସ୍ପେନ୍‌ରେ ପହଞ୍ଚୁଥିବା ୟୁରୋପୀୟ ପର୍ଯ୍ୟଟକମାନେ ମୁଖ୍ୟତଃ ଓହ୍ଲାଇଥା'ନ୍ତି ବାର୍ସେଲୋନା ବିମାନଘାଟୀରେ । ବାର୍ସେଲୋନା ସ୍ପେନ୍‌ର ଉତ୍ତର ପୂର୍ବରେ – ଭୂମଧ୍ୟସାଗର କୂଳରେ । ରାଜଧାନୀ ମାଦ୍ରି ଦ୍ୱୀପରେ ଏହାହିଁ ସ୍ପେନ୍‌ର ଦ୍ୱିତୀୟ ବୃହତ୍ତମ ନଗର – ଦେଶର ସାଂସ୍କୃତିକ ରାଜଧାନୀ ।

ସାରାରାତି ବିମାନଘାଟୀରେ କଟାଇ ଦେବାକୁ ସ୍ଥିର କଲି । ଅବଶ୍ୟ ସିକ୍ୟୁରିଟି କାଉଣ୍ଟରରୁ ବାହାରିବା ମାତ୍ରେ ହିଁ ମୋତେ ଘେରିଗଲେ ଟ୍ୟାକ୍ସି ଚାଳକମାନେ । ସେମାନେ ଇଂରାଜୀ ଜାଣି ନ ଥିଲେ । ତେବେ ମୁଁ ସିଜେସ୍ ଯିବାର ଜାଣି ଠାରାଠରିରେ ମୋତେ ବୁଝାଇଲେ – ସେମାନେ ମୋତେ ସିଜେସ୍ ଘେନିଯିବେ । ଦୁଇଘଣ୍ଟାର ବାଟ । ସିଜେସ୍‌ରେ ମୁଁ ନିଶ୍ଚିନ୍ତରେ ଶୋଇପାରିବି ।

ମୁଁ ସମ୍ମତ ହେଲି ନାହିଁ ।

ସ୍ପେନୀୟ ଟ୍ୟାକ୍ସି ଚାଳକମାନେ ଅନେକାଂଶରେ ଭାରତୀୟମାନଙ୍କ ପରି ଦିଶୁଥିଲେ । ସାବନାରଙ୍ଗ, ଇଂରେଜ ଓ ଫରାସୀ ଲୋକଙ୍କ ତୁଳନାରେ କିପରି କେଜାଣି ଖର୍ବକାୟ ଓ ଦୁର୍ବଳ ! ସାରାରାତି ଦଳକ ପରେ ଦଳେ ଆସି ମୋତେ ଟ୍ୟାକ୍ସିରେ ସିଜେସ୍ ଯିବାକୁ ପ୍ରବର୍ତ୍ତାଉଥା'ନ୍ତି । ଅନ୍ୟ କୌଣସି ୟୁରୋପୀୟ ସହରରେ ଏପରି ଅନୁଭୂତି ବିରଳ । ସ୍ପେନ୍‌ର ଅଧିବାସୀମାନେ ଅନ୍ୟାନ୍ୟ ୟୁରୋପୀୟ ଜାତିମାନଙ୍କ ତୁଳନାରେ ଦରିଦ୍ର ଓ ଅନୁନ୍ନତ – ବାର୍ସେଲୋନା ବିମାନଘାଟୀରେ ହିଁ ଯେପରି ତାହାର ପ୍ରମାଣ ମିଳେ !

କେବଳ ଚେହେରା ନୁହେଁ, ସ୍ପେନୀୟ ଚରିତ୍ର କିପରି କେଜାଣି ଭାରତୀୟ ଚରିତ୍ରର ଅନୁରୂପ । ଆଇବେରିଆନ୍ ବିମାନରେ ସାବ୍‌ନା ରଙ୍ଗ ଓ

୭୧୧ ଖ୍ରୀଷ୍ଟାବ୍ଦରେ ଜିବ୍ରାଲେଟର ଅତିକ୍ରମ କରି ମୁସଲିମ୍‌ମାନେ ଅଧିକାର କଲେ ସ୍ପେନ୍ ଏବଂ ସ୍ପେନ୍‌ର ଇତିହାସରେ ବିପୁଳ ପରିବର୍ତ୍ତନ ପ୍ରବର୍ତ୍ତନ କଲେ । କର୍ଡୋବା ଥିଲା

ମୁସଲିମ୍ ଖିଲାଫତ ବା ସାମ୍ରାଜ୍ୟର ରାଜଧାନୀ ଏବଂ ୟୁରୋପର ସର୍ବବୃହତ୍ ନଗର ତଥା ବ୍ୟବସାୟ ବାଣିଜ୍ୟ ଓ ସଂସ୍କୃତିର ପ୍ରାଣକେନ୍ଦ୍ର । ସ୍ପେନ୍‌ର ସ୍ଥାପତ୍ୟ ନୃତ୍ୟ, ସଙ୍ଗୀତ ଓ ଜୀବନ ଧାରାରେ ମୁସଲିମ୍‌ମାନଙ୍କ ପ୍ରଭାବ ବେଶ୍ ସ୍ପଷ୍ଟ ।

ୟୁରୋପୀୟ ଉପନିବେଶବାଦର ଅଭ୍ୟୁଦ୍ଥାନରେ ମୁସଲିମ୍ ଆଧିପତ୍ୟ ବିଲୁପ୍ତ ହେଲା ଏବଂ ଷୋଡ଼ଶ ଶତାବ୍ଦୀରେ ସ୍ପେନ୍ ହୋଇ ଉଠିଲା ୟୁରୋପର ସର୍ବଶ୍ରେଷ୍ଠ ଶକ୍ତି । ସ୍ପେନୀୟମାନଙ୍କ ଉପନିବେଶ ହଲାଣ୍ଡ, ଇଟାଲୀ, ପର୍ତ୍ତୁଗାଲଠାରୁ ଆରମ୍ଭ କରି ଉତ୍ତର ଓ ଦକ୍ଷିଣ ଆମେରିକା, ଏପରିକି ଫିଲିପାଇନ୍‌ସ ଯାଏଁ ବିସ୍ତୃତ ଥିଲା । ସ୍ପେନୀୟମାନେ ପୃଥିବୀର ବହୁ ଦେଶରେ ଖ୍ରୀଷ୍ଟଧର୍ମର ପ୍ରସାର ଘଟାଇଥିଲେ ।

ବିଂଶ ଶତାବ୍ଦୀରେ ଉପନିବେଶବାଦର ପତନ ପରେ ସ୍ପେନ୍ ଅପେକ୍ଷାକୃତ ଦରିଦ୍ର ଓ ଦୁର୍ବଳ ହୋଇପଡ଼ିଲା । ଚଳିତ ଶତାବ୍ଦୀରେ ଏହା ଏକଛତ୍ରବାଦ ଓ ଗଣତନ୍ତ୍ର ଉଭୟ ଦ୍ୱାରା ଶାସିତ ହୋଇ ଆସିଛି । ସମ୍ପ୍ରତି ସ୍ପେନ୍‌ର ଗଣତନ୍ତ୍ର ଶାସନ ହିଁ ପ୍ରତିଷ୍ଠିତ, କିନ୍ତୁ ଇଂରେଜ ପରମ୍ପରା ଅନୁସରଣରେ ସ୍ପେନୀୟମାନେ ରାଜା ଜୁଆନ କାର୍ଲସଙ୍କୁ ରାଷ୍ଟ୍ରମୁଖ୍ୟଭାବରେ ଅଭିଷିକ୍ତ କରିଛନ୍ତି । × × ×

ଭାରତ ଭଳି ସ୍ପେନ୍‌ର ବହୁ ମନୁଷ୍ୟ ଗୋଷ୍ଠୀ ଓ ସଂସ୍କୃତିର ବିଚିତ୍ର ସମନ୍ୱୟ ଘଟିଛି ଏବଂ ସ୍ପେନ୍‌ର ଜୀବନଧାରାରେ ଏହାର ପ୍ରତିଫଳନ ଲକ୍ଷ୍ୟ କରାଯାଇପାରେ । ତାଜମହଲ ହୋଟେଲଟି ସ୍ପେନ୍‌ର ଇସ୍‌ଲାମୀୟ ଅତୀତର ଏକ ତିକ୍ତ-ମଧୁର ସ୍ମାରକୀ !!

## ସହରଟିଏ ଭୂମଧ୍ୟସାଗର କୂଳରେ

ସିଜେସ୍ ସହରଟି ପ୍ରାୟ ଦୁଇହଜାର ବର୍ଷର ପୁରୁଣା । ଆୟତନରେ କ୍ଷୁଦ୍ର, କିନ୍ତୁ ସୌନ୍ଦର୍ଯ୍ୟ ଓ ବୈଚିତ୍ର୍ୟମୟ । ସ୍ଥାନେ ସ୍ଥାନେ ସହରଟି ପ୍ରବେଶ କରିଛି ଭୂମଧ୍ୟସାଗରର ସୁନୀଳ ଜଳରାଶି ମଧ୍ୟକୁ । ଏଇ ସହରରୁ ଭୂମଧ୍ୟସାଗରର ପ୍ରଶାନ୍ତ ଓ ବିସ୍ତୃତିକୁ ଯେପରି ଅନ୍ତରଙ୍ଗ ଅନୁଭବ କରିହୁଏ, ସ୍ପେନ୍‌ର ଅନ୍ୟ କୌଣସି ସହରରୁ ବୋଧହୁଏ ସେପରି କରି ହୁଏ ନାହିଁ ।

ସହରଟିର ଆରମ୍ଭ ଗୋଟିଏ ଧୀବରବସ୍ତି ଓ ପୋତାଶ୍ରୟରୁ । ସ୍ପେନ୍ ରୋମାନ୍ ସାମ୍ରାଜ୍ୟର ଅଙ୍ଗ ଥିବା ସମୟରେ ଏଇ ସହରଟିର ନାମ ଥିଲା ସୁବୁର ଓ ଏହା ଥିଲା ବ୍ୟବସାୟ ବାଣିଜ୍ୟ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ । ଆରବୀୟମାନେ ଏହି ସିଜେସ୍ ମଧ୍ୟଦେଇ ସ୍ପେନ୍‌ରେ ପ୍ରବେଶ କରିଥିଲେ ଏବଂ ସିଜେସ୍‌ର ସ୍ଥାପତ୍ୟରେ ମଧ୍ୟପ୍ରାଚ୍ୟର ପ୍ରଭାବ ସ୍ପଷ୍ଟ । ଚତୁର୍ଦ୍ଦଶ ଶତାବ୍ଦୀରେ ସିଜେସ୍ ଚତୁର୍ଦ୍ଦିଗରେ ନିର୍ମାଣ କରାଯାଇଥିଲା ପ୍ରାଚୀରଟିଏ । ଅଦ୍ୟାବଧି ପ୍ରାଚୀରର କେତେକ ଅଂଶ ସୁରକ୍ଷିତ ।

ସିଜେସ୍ ସହରର ନକ୍ସା ଓ ବାସଗୃହଗୁଡ଼ିକ ପାରମ୍ପରିକ । ଗଳିସବୁ ସଂକୀର୍ଣ୍ଣ କିନ୍ତୁ ପରିଚ୍ଛନ୍ନ । ସମୁଦ୍ର କୂଳର ପ୍ରାସାଦସବୁ ପ୍ରାୟତଃ ହୋଟେଲ କିମ୍ବା ଭିଲ୍ଲା । ସମୁଦ୍ରକୂଳରେ ଅସଂଖ୍ୟ କ୍ଷୁଦ୍ର, ବୃହତ୍ ଦୋକାନ । ପର୍ଯ୍ୟଟକମାନେ ହିଁ ମୁଖ୍ୟତଃ ଏଇ ଦୋକାନସବୁର ଗ୍ରାହକ । ତେଣୁ ସେଇମାନଙ୍କୁ ଆଖିରେ ରଖି ଯେତେସବୁ ଟିପ୍‌ପଣୀ ଓ ସାଜସଜ୍ଜା । ମାଟି ଓ ପ୍ଲାଷ୍ଟିକର ଅସଂଖ୍ୟ କଣ୍ଢେଇ, ଚିତ୍ରିତ ରଙ୍ଗୀନ ବସ୍ତ୍ର – ବିଶେଷତଃ ସ୍ପେନ୍‌ର ଜାତୀୟ କ୍ରୀଡ଼ା ଷଣ୍ଢ ଲଢ଼େଇର ଚିତ୍ର ଓ ମୂର୍ତ୍ତିସବୁ ଏଇ ଦୋକାନମାନଙ୍କର ବିଶେଷତ୍ୱ । ଇଂଲାଣ୍ଡ ବା ଫ୍ରାନ୍ସ ପ୍ରଭୃତି ଦେଶରେ ବିପଣୀସମ୍ଭାର ତୁଳନାରେ ସ୍ପେନ୍‌ର ଦ୍ରବ୍ୟମାନ ଗୁଣରେ ନିକୃଷ୍ଟ ଏବଂ ଶସ୍ତା ।

ସିଜେସ୍‌ର ବେଳାଭୂମି ବିସ୍ତୃତ, ବାଲୁକାରାଶି କୋମଳ ଓ ସ୍ୱର୍ଣ୍ଣାଭ । ସମୁଦ୍ର ଅଗଭୀର । ସମୁଦ୍ର କୂଳେ କୂଳେ ଧାଡ଼ି ଧାଡ଼ି ଖଜୁରି ଗଛ । ସହରର ଉତ୍ତରଦିଗରେ ଗାରାଫ୍ ପର୍ବତଶ୍ରେଣୀ ଓ ପୂର୍ବରେ ସମୁଚ୍ଚ ପ୍ରାସାଦମାନ ସହରକୁ ଉତ୍ତର ଓ ପୂର୍ବ ଦିଗରୁ ପ୍ରବାହିତ ଶୀତଳ ପବନରୁ ରକ୍ଷା କରନ୍ତି । ତେଣୁ ଦକ୍ଷିଣ ଦିଗରୁ ପ୍ରବାହିତ ପବନ ସିଜେସ୍‌ର ଜଳବାୟୁକୁ ବର୍ଷର ସବୁ ଋତୁରେ କରିଥାଏ ପ୍ରୀତିପ୍ରଦ ।

ସିଜେସ୍ ବେଳାଭୂମିରେ ସକାଳୁ ମଧରାତ୍ରୀଯାଏଁ ଲାଗି ରହିଥାଏ ପର୍ଯ୍ୟଟକମାନଙ୍କ ଭିଡ଼ । ବାର୍, ରେସ୍ତୋରାଁମାନଙ୍କ ସମ୍ମୁଖରେ ଚାଲିଥାଏ ଚା' କିମ୍ବା ମଦ୍ୟପାନ, ଆଳାପ ଓ ହାସ୍ୟରୋଳ । କେହି ଶିଳ୍ପୀ କ୍ୟାନଭାସ୍ ଉପରେ ମଡ଼ାଇ ଚାଲିଥା'ନ୍ତି ବିଭିନ୍ନ ରଙ୍ଗ । ଶାନ୍ତ ଭୂମଧ୍ୟସାଗର ମନେ ହେଉଥାଏ ହ୍ରଦଟିଏ ପରି – ତା' ବିପୁଳ ଜଳରାଶିରେ ଭାସମାନ ଧଳାରଙ୍ଗର ଡଙ୍ଗା ଓ ଷ୍ଟିମର୍ ନ ଦିଶୁଥା'ନ୍ତି ସ୍ଥିର, ରହସ୍ୟାବୃତ ।

ସୂର୍ଯ୍ୟୋଦୟ ଓ ସୂର୍ଯ୍ୟାସ୍ତରେ ସିଜେସ୍ ବେଳାଭୂମି ହୋଇଉଠେ ବର୍ଣ୍ଣାଢ଼୍ୟ ଓ ଅପୂର୍ବ । ବେଳାଭୂମିରେ ସ୍ଥାପିତ ମତ୍ସ୍ୟକନ୍ୟା ମୂର୍ତ୍ତିଟି ଯେପରି ସମଗ୍ର ପରିବେଶକୁ ରୂପାନ୍ତରିତ କରିଦିଏ ଅନ୍ୟ କେଉଁ ଅଲୌକିକ ଇଲାକାରେ !!

## ପିୟୋଲା

ହୋଟେଲ କାଲିପଲିସରେ ଲଞ୍ଚ୍ ସମୟରେ ଆମକୁ ଦିଆଯାଇଥିଲା ପାଉଁରୁଟି ସଙ୍ଗେ ଦୁଇ ତିନି କୋଲା ରସୁଣ । ଆଶ୍ଚର୍ଯ୍ୟ ହେଲି । ଅନ୍ୟ କୌଣସି ୟୁରୋପୀୟ ହୋଟେଲରେ ସେପରି ଦେଖି ନାହିଁ । ଲକ୍ଷ୍ୟକଲି, ମୋ ପାଖରେ ଟେବୁଲରେ ଭଦ୍ରବ୍ୟକ୍ତି କୋଲାଏ ରସୁଣ ଭାଙ୍ଗି ପାଉଁରୁଟିରେ ଘସୁଛନ୍ତି । ତାହାହିଁ କଲି । ବର୍ତ୍ତମାନ ପାଉଁରୁଟିରେ ଲୋଭନୀୟ ରସୁଣ ବାସ୍ନା ।

ସ୍ପେନୀୟ ଖାଦ୍ୟ କିପରି କେଜାଣି ଭାରତୀୟମାନଙ୍କ ରୁଚି–ଅନୁରୂପ । ଇଂଲାଣ୍ଡ ବା ୟୁରୋପରେ ମୋଟା ମୋଟି ଖାଦ୍ୟ କହିଲେ ସିଝା, ପୋଡ଼ା ବା ସେକା ମାଂସ ଓ

ପନିପରିବା । ଆପଣ ସେଥିରେ ଲୁଣ, ଗୋଲମରିଚ ଗୁଣ୍ଡ ବା କୌଣସି ସସ୍ ମିଶାଇ ଖାଇଥା'ନ୍ତି । ସ୍ପେନ୍‌ରେ କିନ୍ତୁ ରନ୍ଧନରେ ତେଲ, ରସୁଣ, କଞ୍ଚାଲଙ୍କା, ଭିନିଗାର, ଟମାଟୋ ପ୍ରଭୃତିରେ ବେଶ୍ ବ୍ୟବହାର । ପାରମ୍ପରିକ ସ୍ପେନୀୟ ଖାଦ୍ୟ ତେଣୁ ଅନେକାଂଶରେ ଭାରତୀୟ ଖାଦ୍ୟ ସହିତ ତୁଳନୀୟ ।

ସିଜେସ୍‌ର କୌଣସି ସଂକୀର୍ଣ୍ଣ ଗଳିରେ ହୋଟେଲ୍ ଏଲପୋଶୋ । କ୍ଷୁଦ୍ର କ୍ଷୁଦ୍ର କୋଠାରି; କଡ଼ି ବରଗାରେ ନିର୍ମିତ ଛାତ; କାନ୍ଥଗୁଡ଼ିକ ସଜ୍ଜିତ ଧୀବରମାନଙ୍କ ଜାଲରେ । ଅଳ୍ପ ଦୂରରେ କେଉଁଠି ବାଜି ଚାଲିଥାଏ ଚର୍ଚ୍ଚ ବେଲ୍ । ହୋଟେଲଟିରେ ସଠିକ୍ ସ୍ପେନୀୟ ଖାଦ୍ୟ ମିଳେ ବୋଲି ମୋତେ ସେଠାକୁ ଘେନିଗଲେ ମେରୀ ଫେରାଲ କ୍ୟାରଲ ଓ ଜୋସେଫ୍ । ସାମାନ୍ୟ ପାନୀୟ ପରେ ଯଥାସମୟରେ ମେନ୍ 'ଡ଼ିଶ' ଆସିଲା । କିନ୍ତୁ ଏମ୍ ମୋର ଅତିପରିଚିତ ଖାଦ୍ୟ ! ଭାତ ଓ ଚିଙ୍ଗୁଡ଼ି ତରକାରି ମିଶାଇ କେହି ଯେପରି ଆମ ସମ୍ମୁଖରେ ରଖିଛି ! ଓଡ଼ିଶାର ଗାଆଁମାନଙ୍କରେ ସୁଦ୍ଧା ଆମର ଝିଅବୋହୂମାନେ ଏପରି ସ୍ୱାଦଯୁକ୍ତ 'ଡିଶ୍' ପ୍ରସ୍ତୁତ କରିଥା'ନ୍ତି – ମୁଁ କହିଲି । ସ୍ପେନୀୟ ବନ୍ଧୁମାନେ ଆଶ୍ଚର୍ଯ୍ୟ ହେଲେ ନାହିଁ । ଭାରତୀୟ ରନ୍ଧନକଳା ଖୁବ୍ ଉନ୍ନତ – ଏହା ସେମାନେ ବିଶ୍ୱାସ କରନ୍ତି ।

ଭାରତ ଓ ସ୍ପେନ୍ – ଉଭୟ ଦେଶ ସହିତ ମଧ୍ୟପ୍ରାଚ୍ୟ ବା ମୁସଲିମ୍ ଦେଶଗୁଡ଼ିକର ସମ୍ପର୍କ ଗଭୀର । ମୁସଲିମ୍‌ମାନଙ୍କ ପ୍ରଭାବ ତେଣୁ ଭାରତୀୟ ଓ ସ୍ପେନୀୟ ରାନ୍ଧଣାର ସାମଞ୍ଜସ୍ୟ ପାଇଁ ହୁଏତ ଦାୟୀ କିମ୍ବା ଆରବମାନଙ୍କ ମାଧ୍ୟମରେ ଭାରତୀୟ ରନ୍ଧନ ପ୍ରଣାଳୀ କେଉଁ ସୁଦୂର ଅତୀତରେ ରପ୍ତାନି ହୋଇଥାଇପାରେ ସ୍ପେନ୍‌କୁ । କାରଣ ଯାହା ବା ହେଉ, ତେଲ ଓ ମସଲାର ଅତିରଞ୍ଜିତ ବ୍ୟବହାର ଉଭୟ ସ୍ପେନୀୟ ଓ ଭାରତୀୟ ପାରମ୍ପରିକ ଖାଦ୍ୟରେ ଲକ୍ଷଣୀୟ ।

ହୋଟେଲ ଏଲପୋଶୋରେ ସେ ଦିନ ଭାତ ଓ ଚିଙ୍ଗୁଡ଼ି ତରକାରି ମିଶାପରି ମନେ ହେଉଥିବା 'ଡିଶ୍'ର ସ୍ପେନୀୟ ନାମ 'ପିୟୋଲା' । ଭାରତୀୟ ପାକଶାଳାରେ 'ପଲାଉ' ନାମରେ ପରିଚିତ 'ଡିଶ୍' 'ପିୟୋଲା'ର ନିକଟବର୍ତ୍ତୀ ନିଶ୍ଚୟ !!

## ରାଜପ୍ରାସାଦ ଓ ଭିକାରି

ସମୁଦ୍ରକୂଳେ ପ୍ରକାଣ୍ଡ ଅଟ୍ଟାଳିକା – ସ୍ପେନୀୟ ନାମ ପାଲେସିଓ ବା ରାଜପ୍ରାସାଦ । ସ୍ପେନୀୟ ରାଜପରିବାର ସହିତ ସମ୍ପର୍କିତ ହୁଏତ ଅଟ୍ଟାଳିକାଟି ।

ସେଇ ପାଲେସିଓ ସମ୍ମୁଖରେ ଠିଆ ହୋଇଥିଲା ଲୋକଟି । ମୋତେ ଦେଖି ମୋ ନିକଟକୁ ଆସିଲା ଓ ସ୍ପାନୀଶ୍ ମିଶା ଇଂରାଜୀରେ କହିଚାଲିଲା –

ଯେ ତା' ପରିବାର ରହନ୍ତି ମରକ୍‌କୋରେ । ସେ ଖୁବ୍ ଭଲ ପରିବାରରୁ ଆସିଛି । ଘଟଣାକ୍ରମେ ତା'ର ଖାଇବାକୁ ନାହିଁ । ସ୍ୟାଣ୍ଡଉଇଚ୍ ପାଇଁ ତା'ର ଦରକାର କିଛି ପେସିଟା (ସ୍ପେନୀୟ ମୁଦ୍ରା) ।

ସମୁଦ୍ର କୂଳେ କୂଳେ ହୋଟେଲ ଭିଲ୍ଲା, ବାର, ରେସ୍ତୋରାଁ ଓ ଅସଂଖ୍ୟ ପର୍ଯ୍ୟଟକ, ଆନନ୍ଦ, ଉଲ୍ଲାସ ଉତ୍ସବର ପରିବେଶ । ପର୍ଯ୍ୟଟକମାନଙ୍କ ମେଳରେ ହାତ ପତାଇ ବୁଲୁଥାଏ ସ୍ଥାନୀୟ ଭିକାରିଟି ।

ବାର୍ସେଲୋନା ପୋର୍ଟରୁ ଅଣ୍ଡର ଗ୍ରାଉଣ୍ଡରେ ବାହାରକୁ ଆସିବା ସମୟରେ କେତେଜଣ ଭିକାରି ଆଖିରେ ପଡ଼ିଥିଲେ । ଜଣେ ତରୁଣୀ ଅଣ୍ଡର୍ ଗ୍ରାଉଣ୍ଡର ଗୋଟିଏ କୋଣରେ ବସିଥାଏ – ସାମ୍ନାରେ ତା'ର ହ୍ୟାଟ୍ । ହାତ ପାପୁଲିରେ ଘୋଡ଼ାଇଥାଏ ତା'ର ମୁଖମଣ୍ଡଳ । ହୁଏତ ଲଜ୍ଜାରେ । କେହି ପରିଚିତ ଯଦି ତାକୁ ଏ ଅବସ୍ଥାରେ ଦେଖେ ! ହ୍ୟାଟ୍ ଭିତରେ ପଡ଼ିଥାଏ ଅଳ୍ପ କେତୋଟି ପେସିତା ।

ହୋଟେଲ କାଲିପଲିସରେ ମୁଁ ରହୁଥିବା କୋଠରିରୁ ଚମତ୍କାର ଦିଶେ ସିଜେସ୍ ସହରଟି । ଅନୁଚ୍ଚ ପାହାଡ଼ ଉପରେ ଧାଡ଼ି ଧାଡ଼ି ଧଳା ଓ ହଳଦିଆ ରଙ୍ଗର ବାସଗୃହ, ନାଲି ରଙ୍ଗର ଚିମିନିସବୁ । ଭୂମଧ୍ୟସାଗରୀୟ ଉଜ୍ଜ୍ୱଳ ଆଲୋକରେ ସହରଟି ଦିଶେ କୌଣସି ସ୍ଥାନୀୟ ଶିଳ୍ପୀର ମହାର୍ଘ ପେଣ୍ଟିଂଟିଏ ପରି ।

କିନ୍ତୁ ସେଇ ରୂପକଥାର ସ୍ୱପ୍ନ ଆଖି ଆଗରୁ ଅପସରିଯାଏ – ଯେତେବେଳେ ପାଲେସିଓ ସମ୍ମୁଖରେ ଭିକାରିଟି ଆପଣଙ୍କୁ ଅଟକାଏ କିମ୍ବା ବାର୍ସେଲୋନା ଅଣ୍ଡରଗ୍ରାଉଣ୍ଡରେ ପାପୁଲିରେ ମୁହଁ ଘୋଡ଼ାଇଥିବା ତରୁଣୀଟି ଦିନପରେ ଦିନ ଆପଣଙ୍କୁ ହିଁ ଅପେକ୍ଷା କରିଥାଏ – କେତୋଟି ପେସିତା ପାଇଁ !!

## ମାର–ଟିନ୍ ବାର୍ ଓ ହେମିଂଓ୍ୱେ

୧୯୮୪ ଏପ୍ରିଲ ୧୦ରୁ ୧୩ – ଏଇ ଚାରିଦିନ ସିଜେସ୍‌ରେ ଅନୁଷ୍ଠିତ ହୋଇଥିଲା କମନ୍‌ଓ୍ୱେଲ୍‌ଥ ଭାଷା ଓ ସାହିତ୍ୟ ସମ୍ମିଳନୀ । ଏଥିରେ ଯୋଗ ଦେଇଥିଲେ ପୃଥିବୀର ବହୁ ଦେଶ – କାନାଡ଼ା, ଅଷ୍ଟ୍ରେଲିଆ, ନାଇଜେରିଆ, ଓ୍ୱେଷ୍ଟଇଣ୍ଡିଜ୍, ଜର୍ମାନୀ ପ୍ରଭୃତି । ଇଂରାଜୀ ଭାଷା ତଥା ଏକଦା ଇଂରେଜ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିବା ଦେଶମାନଙ୍କରେ ଇଂରାଜୀ ଭାଷାରେ ଲିଖିତ ସାହିତ୍ୟ ସମ୍ପର୍କରେ ଆଲୋଚନା ଥିଲା ସମ୍ମିଳନୀର ଉଦ୍ଦେଶ୍ୟ । କିନ୍ତୁ ବହୁ ଅଣଇଂରେଜ ଦେଶ ମଧ୍ୟ ଏଥିରେ ଆଗ୍ରହୀ ଥିଲେ । ଇଂରାଜୀଭାଷା ଓ ସାହିତ୍ୟ ପ୍ରତି ସ୍ଥାନୀୟମାନଙ୍କର ବିଶେଷ ଆକର୍ଷଣ ନ ଥିଲେ ବି ସ୍ପେନ୍‌ର ବାର୍ସେଲୋନା ବିଶ୍ୱବିଦ୍ୟାଳୟ ଆୟୋଜନ କରିଥିଲେ ସମ୍ମିଳନୀଟି ।

ସମ୍ମିଳନୀ ଅନୁଷ୍ଠିତ ହେଉଥାଏ ଭୂମଧ୍ୟସାଗର କୂଳରେ ଅବସ୍ଥିତ ପ୍ରାଚୀନ ସାନ୍ତା ଟେକ୍‌ଲା ଚର୍ଚ୍ଚରେ । କବି, ଲେଖକ, ସମାଲୋଚକଙ୍କର ଯୁକ୍ତିତର୍କ ଆଲୋଚନା, ପ୍ରବନ୍ଧପାଠରେ ପ୍ରାଚୀନ ଧର୍ମପୀଠଟି ରୂପାନ୍ତରିତ ହୋଇପଡ଼ିଥାଏ ଏକ ସାରସ୍ୱତ କ୍ଷେତ୍ରରେ ।

ମଧ୍ୟାହ୍ନରେ ଲଞ୍ଚ କିମ୍ବା ଅପରାହ୍ନରେ ଚା' ଓ ଡିନର ପାଇଁ ବହୁ କବି, ଲେଖକ ଉପସ୍ଥିତ ହେଉଥିଲେ ଚର୍ଚ୍ଚ ନିକଟବର୍ତ୍ତୀ ମାର୍‌ଟିନ୍-ବାର୍ ଓ ଅନ୍ୟାନ୍ୟ ବାର୍ ଓ ରେସ୍ତୋରାଁମାନଙ୍କରେ । ବୌଦ୍ଧିକ ଚିନ୍ତାଶୀଳ ଆବରଣ ଭିତରୁ ବର୍ତ୍ତମାନ ବାହାରି ଆସୁଥିଲେ ସାଧାରଣ ମଣିଷମାନେ । ଆଳାପ, ହାସ୍ୟରୋଳ ବ୍ୟଙ୍ଗବିଦ୍ରୂପ – ଔଦ୍ଧତ୍ୟ, ହୀନମନ୍ୟତା । ସାହିତ୍ୟ ପୃଷ୍ଠାରେ ଯେଉଁମାନେ ମନେହୁଅନ୍ତି ତାରା ପରି ସୁଦୂର ଓ ରହସ୍ୟମୟ, ବର୍ତ୍ତମାନ ଆପଣ ସେଇମାନଙ୍କ ସଙ୍ଗେ ଚା' କିମ୍ବା ମଦ୍ୟ ପିଉଛନ୍ତି ଏକ ଅପରିଚିତ ଦେଶର ସଂକୀର୍ଣ୍ଣ ଗଳିରେ । ଜୀବନରେ ଏପରି ସୁଯୋଗ କେତେବାର ବା ଆସେ ?

ସାହିତ୍ୟପୃଷ୍ଠାରେ ତ ଚିହ୍ନି ହେବ ଲେଖକର ବ୍ୟକ୍ତିତ୍ୱ – କିନ୍ତୁ ଲେଖକ ଭିତରର ମଣିଷଟିକୁ ଭେଟିବା କ'ଣ ସହଜ ? ସ୍ୱାଭାବିକ ଭାବେ ତାହାର ହିଁ ମୁଁ ଅନୁସନ୍ଧାନ କରୁଥିଲି ସିଢେସ୍‌ରେ – ସମ୍ମିଳନୀର ଆଲୋଚନା – ଯୁକ୍ତିତର୍କଠାରୁ ମୋତେ ଖୁବ୍ ବେଶି ଉତ୍ତେଜିତ କରିଥିଲା କବି, ଲେଖକମାନଙ୍କ ସଙ୍ଗେ ଅନ୍ତରଙ୍ଗ ପରିଚୟ ଓ ବୁଝାମଣା । ବିଭିନ୍ନ ଦେଶର ସାହିତ୍ୟକୃତିଠାରୁ କମ୍ ବୈଚିତ୍ର୍ୟମୟ ନୁହେଁ ସେ ଦେଶର ଲେଖକଙ୍କ ଜୀବନୀ ଓ ପୃଷ୍ଠଭୂମି !

ସିଡ୍ ହାରେକ୍ସ ସୁପରିଚିତ କବି ଓ ସମାଲୋଚକ । ଜନ୍ମସ୍ଥାନ ଟସ୍‌ମାନିଆ; ଶିକ୍ଷାଲାଭ ଅଷ୍ଟ୍ରେଲିଆରେ । ସମ୍ପ୍ରତି ଇଂରାଜୀ ସାହିତ୍ୟର ଅଧ୍ୟାପକ । ଭାରତୀୟ ଇଂରାଜୀ ଉପନ୍ୟାସ ସମ୍ପର୍କରେ ଗ୍ରନ୍ଥଟିଏ ଲେଖିଛନ୍ତି । ତାଙ୍କର 'ଆଟ୍‌ଲାଣ୍ଟିସ୍' କାବ୍ୟ ଗ୍ରନ୍ଥରେ ଭାରତର ଏଲିଫ୍ୟାଣ୍ଟା ସମ୍ପର୍କରେ କବିତାଟିଏ ଅଛି । କବିତାରେ ଅନୁବାଦ ଏହିପରି :

କେବେ ଯଦି ମଣିଷର ବାହୁ
ପଥର ପାଲଟି ଯାଏ
କିଏ ନ ଚାହେଁ ଯେ
ତାହା ହେଉ ଶିବଙ୍କର
ପାର୍ବତୀଙ୍କୁ ବେଢ଼ାଇବା ପରି !
କିଏ ନ ଚାହେଁ ଯେ
ଦେବୀଙ୍କ ହୃଦୟ
ଶିବଙ୍କ ହସ୍ତକୁ ଦେଉ
ପ୍ରେମର ଚୁମ୍ବନ ସ୍ପର୍ଶ !!

ସିଡ୍ ମଧ୍ୟବୟସ୍କ ଅମାୟିକ ଓ ଅହରହ ମଦ୍ୟନିଶାରେ ଆଚ୍ଛନ୍ନ ରହିବାକୁ ଭଲପାଆନ୍ତି । ଥରେ ସେ ଉପସ୍ଥିତ କେତେକ ବନ୍ଧୁଙ୍କୁ ବାରରେ ମଦ୍ୟପାନ ପାଇଁ ନିମନ୍ତ୍ରଣ ଜଣାଇଲେ । ବନ୍ଧୁମାନେ ମଦ୍ୟ ଉପଭୋଗ କରୁଛନ୍ତି, ଅନ୍ୟମନସ୍କ ସିଡ୍ ନିଜେ ତାଙ୍କ ପାନୀୟ ନିଃଶେଷ କରି ସେଠାରୁ ପ୍ରସ୍ଥାନ କଲେ । ନିମନ୍ତ୍ରିତ ବନ୍ଧୁମାନେ ବର୍ତ୍ତମାନ ନିଜ ନିଜର ବିଲ୍ ପରିଶୋଧ କରିବା ବ୍ୟତୀତ ଅନ୍ୟ ଉପାୟ ନ ଥିଲା ।

ଡେଭିଡ୍ ଡେବିଡ଼ିନ୍‌ଙ୍କ ବୟସ ସତେଇଶ; ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟରୁ ଇଂରାଜୀ ସାହିତ୍ୟରେ ଡକ୍ଟରେଟ ପରେ ଇଂଲାଣ୍ଡରେ କୌଣସି ବିଶ୍ୱବିଦ୍ୟାଳୟରେ ଗବେଷଣା କରନ୍ତି । ଜନ୍ମସ୍ଥାନ ଓ୍ୱେଷ୍ଟଇଣ୍ଡିଜ୍ । ତାଙ୍କ ପୂର୍ବପୁରୁଷ କୁଲି କାମରେ ଭାରତରୁ ଓ୍ୱେଷ୍ଟଇଣ୍ଡିଜ୍ ଯାଇଥିଲେ । କଳା, ଖର୍ବାକୃତି, ହସ ହସ, ଆତ୍ମବିଶ୍ୱାସୀ ଡେଭିଡ଼ । ଭାରତୀୟ କଲେଜ ଛାତ୍ର ବୋଲି ଭ୍ରମ ହୁଏ ।

ଡେଭିଡ୍ ଜଣେ ଶକ୍ତିଶାଳୀ କବି । ଏତେ କମ୍ ବୟସରେ ସୁଦ୍ଧା ଦୁଇ ଦୁଇଟା ସମ୍ମାନଜନକ ସାହିତ୍ୟ ପୁରସ୍କାର ଲାଭକରି ସାରିଛନ୍ତି – 'କୁଇଲର କାଉଚ' ଓ କମନ୍‌ଓ୍ୱେଲ୍‌ଥ୍' । ତାଙ୍କର କାବ୍ୟଗ୍ରନ୍ଥ 'ସେଭ୍ ସଙ୍ଗ' (କ୍ରୀତଦାସର ଗୀତ) । ଓ୍ୱେଷ୍ଟଇଣ୍ଡିଜ୍ ସମାଜରେ ଗୋରାମାନେ ଜମିସବୁର ମାଲିକ; କଳା ଲୋକେ ସେମାନଙ୍କର କ୍ରୀତଦାସ । ଆଖୁ କ୍ଷେତରେ, କୋକୋଆ କ୍ଷେତରେ ଦିନରାତି ଜନ୍ତୁପରି ଖଟୁଥିବା ଏଇ କ୍ରୀତଦାସମାନଙ୍କ ଜୀବନ ସମ୍ପର୍କରେ ଲିଖିତ ଡେଭିଡ୍‌ଙ୍କ କବିତାସବୁ । ସେମାନଙ୍କ ଦୁଃଖ ଗ୍ଲାନି ସ୍ୱପ୍ନ ଓ ଅଭିଳାଷକୁ ସେ କବିତାରେ ସାର୍ଥକରୂପ ଦେଇଛନ୍ତି ଓେଷ୍ଟଇଣ୍ଡିଜ୍‌ରେ ପ୍ରଚଳିତ କଥିତ ଇଂରାଜୀ ଭାଷାରେ ।

ଅନୂଦିତ କବିତାଟି ଗୋଟିଏ କଳାଝିଅର ସ୍ୱପ୍ନ ସମ୍ପର୍କରେ । (ଲକ୍ଷ୍ୟ କରନ୍ତୁ ଏଥିରେ ପ୍ରଚ୍ଛନ୍ନ ବ୍ୟଙ୍ଗୋକ୍ତି) –

'କଳାଝିଅ, ଆମେରିକା ଚାଲିଯା', ଯା',
ଧଳାଲୋକକୁ ଭେଟିବୁ,
ଠିକ୍ କଥା କହିବାକୁ ଶିଖିବୁ,
ଠିକ୍ ପୋଷାକ ପିନ୍ଧିବାକୁ,
ମୋଟର ଚଳାଇବାକୁ
ହାତରେ କଣ୍ଟା ଚାମଚ ଧରିବାକୁ ଶିଖିବୁ ।
ଏ କାଦୁଅ, କେନାଲପାଣି ଆଖୁକ୍ଷେତ ନ ଥିବ ।
ମୁଁ ସେମିତି ଭାତହାଣ୍ଡିରୁ ତୋରାଣି ପିଉଥିବି,
ଭାତହାଣ୍ଡି ପାଖରେ ବସି
ଭାବି ଚାଲିଥିବି କେତେ କ'ଣ ।
କଳାଝିଅ, ଆମେରିକା ଚାଲିଯା',
ପଇସା କମାଇବାକୁ,
ସନ୍ତାନ କମାଇବାକୁ ।
ଧୀରେ ଚାଲିବୁ, ସିଧା ଠିଆହେବୁ ।

ସେଠାରେ ଅସରପା ନ ଥା'ନ୍ତି,
ମଶା ନ ଥା'ନ୍ତି
ତୋ ରକ୍ତ ଝୁଣିବାକୁ ।
ମୁଁ ବି ନ ଥାଏ ମାଛ ଜାଲ ହାତରେ ।
ସ୍ୱପ୍ନ ରକ୍ତସୁଅ ପରି ବୋହୁଥାଏ
ଖୁବ୍ ଭିତରେ
ଶିରା ଧମନୀରେ ॥'

ଡେଭିଡ଼ଙ୍କ ସଙ୍ଗେ ସହଜରେ ଅନ୍ତରଙ୍ଗତା ହେଲା । ସେ କହୁଥିଲେ, ସେ ହେଉଛନ୍ତି ଜାତିରେ ଚମାର । ତେଣୁ ଭାରତୀୟ ସମାଜରେ ତାଙ୍କ ପୂର୍ବପୁରୁଷଙ୍କର କୌଣସି ସମ୍ମାନ ନ ଥିଲା । ୱେଷ୍ଟଇଣ୍ଡିଜ୍‌ରେ କୁଲି କାମ କରି ତାଙ୍କ ବାପା-ଜେଜେବାପା ଧଳାଲୋକଙ୍କ ଦ୍ୱାରା ହେଉଥିଲେ ଶୋଷିତ, ଅତ୍ୟାଚାରିତ । ବର୍ତ୍ତମାନ ସେ ରହନ୍ତି ଇଂଲାଣ୍ଡରେ । ଆଉ ୱେଷ୍ଟଇଣ୍ଡିଜ ଫେରିଯିବାର ଯୋଜନା ନାହିଁ, କିନ୍ତୁ ଇଂଲାଣ୍ଡରେ କ୍ରମଶଃ ବଢ଼ିବାରେ ଲାଗିଛି କଳାଗୋରା ଭେଦଭାବ ବା ରେସିଜମ୍ । ଅତ୍ୟାଚାର ଓ ଜୁଲମରୁ ତେଣୁ ତାଙ୍କର ମୁକ୍ତି ନାହିଁ ।

ଡେଭିଡ୍‌ଙ୍କ ଅନୁଭୂତି କେବଳ ବ୍ୟକ୍ତିଗତ ନୁହେଁ, ଉପନିବେଶବାଦର ପରିଣତିରେ ଆଜି ଏସିଆ ଓ ଆଫ୍ରିକାର ଅଗଣିତ ମଣିଷ ଡେଭିଡ଼ଙ୍କ ଭଳି ନିଜକୁ ମନେକରନ୍ତି ଅସହାୟ, ଇତିହାସର ଶରବ୍ୟ । ଘଟଣା ପ୍ରବାହରେ ସ୍ୱଦେଶକୁ ପଛରେ ପକାଇ ସେମାନେ ଆସିଥିଲେ ଧଳାଲୋକର ଦେଶକୁ ଅର୍ଥ ସୌଭାଗ୍ୟ ସନ୍ଧାନରେ । କିନ୍ତୁ ସେଠାରେ ମଧ୍ୟ ସେମାନେ ଆଜି ଅବାଞ୍ଛିତ ଓ ଅବହେଳିତ ।

ଡେଭିଡ୍ କିନ୍ତୁ ହସ ହସ, ପ୍ରାଣ ପ୍ରାଚୁର୍ଯ୍ୟରେ ଉଚ୍ଛଳ ତରୁଣ । ତାଙ୍କର କବିତା ତାଙ୍କ ବ୍ୟକ୍ତିତ୍ୱ ଭଳି ମାନବବାଦୀ, ଆସନ୍ତାକାଲିର ଉଜ୍ଜ୍ୱଳ ସ୍ୱପ୍ନରେ ସ୍ୱର୍ଣ୍ଣାଭ ।

ଡେନାମାର୍କ ଆର୍‌ହୁସ୍ ବିଶ୍ୱବିଦ୍ୟାଳୟର ଅଧ୍ୟାପିକା ଆନ୍ନା ରାଦରଫୋର୍ଡ଼ । କମନ୍‌ୱେଲ୍‌ଥ୍ ଭାଷା ଓ ସାହିତ୍ୟ ସମ୍ମିଳନୀର ସେ ସଭାନେତ୍ରୀ ବୟସ ଷାଠିଏର ନିକଟବର୍ତ୍ତୀ । କିନ୍ତୁ ତାରୁଣ୍ୟର ଉତ୍ସାହ ତାଙ୍କଠାରେ । ଅବିବାହିତା । ସାହିତ୍ୟ ସଙ୍ଗଠନରେ ତାଙ୍କର ଆଗ୍ରହ ଅଦମ୍ୟ । ସ୍କଟଲ୍ୟାଣ୍ଡ୍ ସୁଇଡ଼େନ୍, ସ୍ପେନ୍‌ର ସାହିତ୍ୟ ସମ୍ମିଳନୀମାନଙ୍କରେ ବାରମ୍ବାର ତାଙ୍କୁ ଭେଟିବାକୁ ସୁଯୋଗ ଘଟିଛି । ଖୁବ୍ ଗପନ୍ତି - ସାହିତ୍ୟ ଓ ସାହିତ୍ୟିକମାନଙ୍କ ସମ୍ପର୍କରେ । ସିଙ୍ଗେସ୍‌ରେ ସେ ଓ ତାଙ୍କର କେତେଜଣ ବନ୍ଧୁ ଦିନେ ମୋ କୋଠରିରେ ତିନିର ପରେ ଗପ ଜମାଇଲେ । ହୁଇସ୍କି ବୋତଲଟିଏ ପାଖରେ ଥିଲେ ଆନ୍ନା ଯେମିତି କେବେ କ୍ଳାନ୍ତ ହୁଅନ୍ତି ନାହିଁ ! ଗପୁ ଗପୁ ରାତି ପାହିଗଲା ।

ଲୁଇ ଜେମ୍ସ୍ ସୁପରିଚିତ ସମାଲୋଚକ – ସମ୍ପ୍ରତି ଇଂଲାଣ୍ଡର କେଣ୍ଟ ବିଶ୍ୱବିଦ୍ୟାଳୟରେ ଇଂରାଜୀ ବିଭାଗର ମୁଖ୍ୟ । ଲାଜକୁଳା, ଆଳାପ ଆଲୋଚନାରେ ଖୁବ୍ ପାରଙ୍ଗମ ନୁହନ୍ତି । ଅଳ୍ପ ଅଳ୍ପ ଦାଢ଼ି ରଖି ଦିଶନ୍ତି ବିପ୍ଳବୀ ପରି । ଦୁଇଥର ଭାରତ ଆସିଛନ୍ତି । ସିଜେସ୍‌ର ଉଷ୍ମ ଜଳବାୟୁରେ ପିନ୍ଧିଥାନ୍ତି କୁଟିକାମକରା ଭାରତୀୟ ପଞ୍ଜାବୀଟିଏ । ସହଜରେ ଆକର୍ଷଣ କରୁଥାନ୍ତି ସମସ୍ତଙ୍କ ଦୃଷ୍ଟି ।

ଚାର୍ଲସ କୁମ୍‌ହାଙ୍କ ନିଜ ଦେଶ ଘାନା – କିନ୍ତୁ କର୍ମକ୍ଷେତ୍ର ଫ୍ରାନ୍ସ । ଥ୍ରୀ–ପିସ୍ ସୁଟ୍‌ଟିଏ ପିନ୍ଧି ସେ ବିଭିନ୍ନ ଦେଶର ପ୍ରତିନିଧିମାନଙ୍କ ସହିତ ମିଶିବାକୁ ବେଶ୍ ଉଦ୍ୟମ କରୁଥା'ନ୍ତି । କେମିତି ଅପରିଣତ ଭାବଭଙ୍ଗୀ – ଅଯଥା ହୋ ହୋ ହସ । ସମ୍ମିଳନୀରେ ତାଙ୍କ ପ୍ରବନ୍ଧଟି, କିନ୍ତୁ ଯଥେଷ୍ଟ ଆଗ୍ରହ ସୃଷ୍ଟି କରିଥାଏ । ପ୍ରବନ୍ଧରେ ସେ ଦର୍ଶାଇଥାନ୍ତି, ଆଫ୍ରିକାରେ ପ୍ରଚଳିତ ଡ୍ରମ୍ ବା ଢୋଲକ ସାହାଯ୍ୟରେ ଆଫ୍ରିକୀୟମାନେ ସେମାନଙ୍କର ସକଳ ଭାବ ପ୍ରକାଶ କରିପାରନ୍ତି । ଡ୍ରମବିଟ୍ ବା ଢୋଲକର ଶବ୍ଦକୁ ତେଣୁ ଏକ ସ୍ୱୟଂସମ୍ପୂର୍ଣ୍ଣ ଭାଷାର ମର୍ଯ୍ୟାଦା ମିଳିବା ଉଚିତ ।

ଫ୍ରାଙ୍କ୍ ବୀରବଲ ସିଂହ ରହନ୍ତି କାନାଡ଼ାର ଅଣ୍ଟେରିଓରେ । ମୂଳତଃ ସେ ଭାରତୀୟ – ଅତୀତରେ ତାଙ୍କ ପୂର୍ବପୁରୁଷ ଭାରତରୁ ଆସିଥିଲେ ୱେଷ୍ଟଇଣ୍ଡିଜ୍ । ସେଠାରୁ ଫ୍ରାଙ୍କ ଚାଲିଗଲେ କାନାଡ଼ା । ସୁପରିଚିତ ସମାଲୋଚକ ତାଙ୍କର ସ୍ତ୍ରୀ କ୍ରେଓଲା – ଅର୍ଥାତ୍ ତାଙ୍କ ପିତାଙ୍କ ମଧ୍ୟରେ ଜଣେ ୟୁରୋପୀୟ ଅର୍ଥ ଜଣେ ଆଫ୍ରିକାନ୍ । ଝିଅ ଦୁଇ କ୍ୟାଥ୍‌ରିନ ଓ ଡୋରିଆନ୍ । ସପରିବାର ସେ ଆସିଥା'ନ୍ତି ସମ୍ମିଳନୀକୁ । ଅମାୟିକ ବ୍ୟକ୍ତିତ୍ୱ କିନ୍ତୁ ଖୁବ୍ ବେଶି ମେଳାପି ନୁହନ୍ତି ।

ଆଲେଷ୍ଟର୍ ନିଭେନ୍ ଲଣ୍ଡନ୍‌ର ସ୍କୁଲଅଫ୍ ଓରିଏଣ୍ଟାଲ୍ ଏଣ୍ଡ୍ ଆଫ୍ରିକାନଷ୍ଟଡ଼ିଜ୍‌ର ଆଫ୍ରିକା ସାହିତ୍ୟର ଅଧ୍ୟାପକ ଏବଂ ଆଫ୍ରିକା ସେଣ୍ଟରର ସେକ୍ରେଟାରୀ ଜେନେରାଲ । ଭାରତ ଓ ଆଫ୍ରିକାର ସାହିତ୍ୟ ସହିତ ସେ ପରିଚିତ । ଆଫ୍ରିକାର ଉପନ୍ୟାସ ସାହିତ୍ୟରେ ସେ ଡକ୍ଟରେଟ୍ କରିଛନ୍ତି ଘାନା ବିଶ୍ୱବିଦ୍ୟାଳୟରୁ । ଭାରତୀୟ ଲେଖକ ମୁଲ୍କରାଜ୍ ଆନନ୍ଦଙ୍କ ସମ୍ପର୍କରେ ତାଙ୍କର ଗ୍ରନ୍ଥଟିଏ ଅଛି । କମନ୍‌ୱେଲଥ୍ ଲିଟରେଚର ପତ୍ରିକାର ସେ ସମ୍ପାଦକ ।

ସ୍କୁଲ୍ ଅଫ୍ ଓରିଏଣ୍ଟାଲ ଏଣ୍ଡ୍ ଆଫ୍ରିକାନ୍ ଷ୍ଟଡ଼ିଜ୍‌ରେ ଗୋଟିଏ ଶିକ୍ଷାବର୍ଷ ମୁଁ ଥିଲି ଆଲେଷ୍ଟରଙ୍କ ସହକର୍ମୀ । ଭାରତ ପ୍ରତି ତାଙ୍କର ଶ୍ରଦ୍ଧା ଯଥେଷ୍ଟ । ଇଂଲାଣ୍ଡରେ ଭାରତୀୟ ସାହିତ୍ୟର ଆଦର ଅବଶ୍ୟ ସୀମିତ । କିନ୍ତୁ ଆଲେଷ୍ଟରଙ୍କ ପରି ଶିକ୍ଷାବିତ୍ ଓ ସମାଲୋଚକମାନଙ୍କ ପାଇଁ ଆରବ ଦେଶରେ ଭାରତୀୟ ସାହିତ୍ୟ ସଂସ୍କୃତିର ପ୍ରସାର କେତେକାଂଶରେ ସମ୍ଭବ ହୋଇଛି । × × ×

ପୃଥିବୀର ବିଭିନ୍ନ ଦେଶର କବି, ଲେଖକ, କଳାକାରମାନଙ୍କୁ ଯୁଗେ ଯୁଗେ ଆକର୍ଷଣ କରିଛି ସ୍ପେନ୍‌ର ମାଟି । ସ୍ପେନ୍‌ର ମୁକ୍ତ ଲ୍ୟାଣ୍ଡ ସ୍କେପ, ଭୂମଧ୍ୟସାଗରୀୟ ଜଳବାୟୁ,

ବୈଚିତ୍ର୍ୟମୟ ଇତିହାସ – ଏହାର ରାଜନୀତି, ସଙ୍ଗୀତ, ନୃତ୍ୟ ଓ ଷଣ୍ଢଲଢ଼େଇ – ସବୁଥିରେ ଯେପରି ପ୍ରତିଫଳିତ ସ୍ପେନୀୟମାନଙ୍କ ସ୍ୱାତନ୍ତ୍ର୍ୟ ଓ ସ୍ୱକୀୟତା !

ସ୍ପେନ୍‌ର ପ୍ରେମରେ ପଡ଼ିଥିବା ଦୁଇଜଣ ଲେଖକଙ୍କୁ ଏଠାରେ ସ୍ମରଣ କରାଯାଉ । ଆମେରିକାର୍ ଆର୍ଣ୍ଣେଷ୍ଟ୍ ହେମିଂୱେ ଓ ଇଂରେଜ ଜର୍ଜ ଅରୱେଲ୍ । ହେମିଂୱେ ସ୍ପେନ୍‌ର ଷଣ୍ଢ ଲଢ଼େଇ ସମ୍ପର୍କରେ ଲେଖିଥିଲେ ଡେଥ୍ ଇନ୍ ଦ ଆଫ୍‌ଟାରନୁନ୍ । ପୁଣି ଏ ଶତାବ୍ଦୀର ତୃତୀୟ ଦଶକରେ ଏକଛତ୍ରବାଦୀ ଓ ଗଣତନ୍ତ୍ରବାଦୀଙ୍କ ମଧ୍ୟରେ ଘଟିଥିବା ସ୍ପେନୀୟ ଗୃହଯୁଦ୍ଧକୁ ଭିତ୍ତିକରି ତାଙ୍କର ଉପନ୍ୟାସ ଫର୍ ହୁମ୍ ଦ ବେଲ୍‌ଟୋଲ୍‌ସ । ଆରୱେଲ ସ୍ପେନ୍‌ର ଜନସାଧାରଣଙ୍କ ମୁକ୍ତିପିପାସାକୁ ସମର୍ଥନା ଜଣାଇଥିଲେ ତାଙ୍କର ଉପନ୍ୟାସ ହୋମେଜ୍ ଟୁ 'କ୍ୟାଟାଲୋନିଆ'ରେ । × × ×

ମାର୍-ଟିନ୍-ବାର ସମ୍ମୁଖ ଚେୟାରରେ ଦିନେ ଅପରାହ୍ନରେ ବସିଥିଲେ ଶ୍ମଶ୍ରୁବନ୍ତ ବଳିଷ୍ଠ ବୃଦ୍ଧ ଜଣେ । ହାତରେ ବିୟର୍ ଗ୍ଲାସ୍ । ନିକଟସ୍ଥ ବନ୍ଧୁଙ୍କ ସଙ୍ଗେ ଆଳାପ ସମୟରେ ବୃଦ୍ଧ ହସି ଉଠୁଥିଲେ ବାରମ୍ବାର । ତାଙ୍କର ହର୍ଷ ଓ ଉଲ୍ଲାସରେ ତାଙ୍କ ବାର୍ଦ୍ଧକ୍ୟ ଦିଶୁଥିଲା ମ୍ରିୟମାଣ ଓ ଅବାନ୍ତର !

ବୃଦ୍ଧଙ୍କ ଚେହେରା ସ୍ମରଣ କରାଇଦେଲା ସେଇ ପ୍ରଖ୍ୟାତ ଲେଖକ ହେମିଂୱେଙ୍କୁ – ଯେ ଏତେ ନିବିଡ଼ ଭାବେ ଭଲପାଉଥିଲେ ସ୍ପେନ୍‌ର ମାଟିକୁ । ଆଜି ସ୍ପେନ୍‌ର ଏତେ କବି, ଲେଖକଙ୍କ ସମାବେଶ ପ୍ରତ୍ୟକ୍ଷ କରିବାକୁ ହେମିଂୱେ ଓହ୍ଲାଇ ଆସି ନାହାନ୍ତି ତ – ଅପ୍‌ସରା ରାଜ୍ୟରୁ !!

## ଶାଢ଼ି ଓ କାସାମାଦା

କମନ୍‌ୱେଲଥ୍ ଭାଷା ଓ ସାହିତ୍ୟ ସମ୍ମିଳନୀ ଉଦ୍‌ଘାଟିତ ହୋଇଥିଲା ମ୍ୟାରିବେଲ୍ ମିଉଜିୟମ୍ ହଲରେ । ବିଭିନ୍ନ ଦେଶରୁ ଆଗତ ଅତିଥି ଓ ପ୍ରତିନିଧିମାନେ ନାନାଦି ସ୍ପେନୀୟ ଖାଦ୍ୟ ଓ ପାନୀୟ ଉପଭୋଗ କରିବା ସଙ୍ଗେ ସଙ୍ଗେ ପରସ୍ପର ସହିତ ସ୍ୱଚ୍ଛନ୍ଦରେ ଆଳାପ କରୁଥିଲେ ଓ ପରସ୍ପରକୁ ଚିହ୍ନିବାର ସୁଯୋଗ ପାଉଥିଲେ ।

ଏ ଉତ୍ସବରେ ଅନ୍ୟମାନଙ୍କ ମଧ୍ୟରେ ଉପସ୍ଥିତ ଥିଲେ ସ୍ପେନ୍‌ରେ ଭାରତୀୟ ରାଷ୍ଟ୍ରଦୂତ ଶ୍ରୀ ଇନ୍ଦ୍ର ପ୍ରକାଶ ସିଂହ । ଦୀର୍ଘ ସୁଗଠିତ, ଅମାୟିକ ଚେହେରା । ତାଙ୍କ ନିକଟରେ ସୁହାସିନୀ, ସାମାନ୍ୟ ସ୍ଥୂଳାଙ୍ଗୀ ଜଣେ ଭଦ୍ରମହିଳା । ପରିଧେୟ ରାଜସ୍ଥାନୀ ଶାଢ଼ି, ନୀଳରଙ୍ଗର ବ୍ଲାଉଜ, ବବ୍‌କେଶ । ଭଦ୍ରମହିଳା ରାଷ୍ଟ୍ରଦୂତଙ୍କ ସମ୍ପର୍କୀୟା – ଏପରି ଭାବ ମନକୁ ଆସିବା ହିଁ ସ୍ୱାଭାବିକ ।

ସମ୍ମିଳନୀରେ ମୋ ବ୍ୟତୀତ ଅନ୍ୟ ଜଣେ ମାତ୍ର ଭାରତୀୟ ଉପସ୍ଥିତ ଥିଲେ । ଆଫ୍ରିକାର୍ ଥିଲେ ଦୁଇଜଣ । ଅନ୍ୟ ସମସ୍ତେ ୟୁରୋପ, ଅଷ୍ଟ୍ରେଲିଆ ବା ଆମେରିକାରୁ । ଭାରତୀୟ ରାଷ୍ଟ୍ରଦୂତଙ୍କ ସଙ୍ଗେ ସାମାନ୍ୟ ଆଳାପ ପରେ ମୁଁ ଭଦ୍ର ମହିଳାଙ୍କୁ ନିଜର ପରିଚୟ ଦେଲି । ଭଦ୍ରମହିଳାଙ୍କ ପରିଚୟରେ କିନ୍ତୁ ମୋର ଆମୋଦିତ ହେବାର କାରଣ ଥିଲା ଯଥେଷ୍ଟ ।

ଭଦ୍ର ମହିଳା ରାଷ୍ଟ୍ରଦୂତ ସିଂହଙ୍କର ଆଦୌ ସମ୍ପର୍କୀୟା ନ ଥିଲେ । ସେ ଥିଲେ ସ୍ଥାନୀୟ କୌଣସି ବିଦ୍ୟାଳୟର ଶିକ୍ଷୟିତ୍ରୀ; ତାଙ୍କ ନାମ ପିଲାର କାସାମାଦା । ଭାରତ ସମ୍ପର୍କରେ ସେ ଆଗ୍ରହୀ, ଥରେ ଭାରତ ମଧ୍ୟ ଆସିଥିଲେ ଓ ବମ୍ବେ ଓ ମହୀଶୂର ପ୍ରଭୃତି ଭ୍ରମଣ କରିଥିଲେ । ତାଙ୍କର ଜଣେ ଭାରତୀୟ ବନ୍ଧୁ ତାଙ୍କୁ ଉପହାର ଦେଇଥିଲେ ଏଇ ଶାଢ଼ିଟି – ତାହାକୁ ପିନ୍ଧି ସେ ଆସିଛନ୍ତି ସମ୍ମିଳନୀର ଉଦ୍‌ଘାଟନ ଉତ୍ସବକୁ ।

ସ୍ୱାଧୀନୋତ୍ତର ଭାରତରେ ଇଂରେଜୀ ଭାଷାର ଭୂମିକା ସମ୍ପର୍କରେ ପ୍ରବନ୍ଧଟିଏ ପ୍ରସ୍ତୁତ କରିଥିଲେ କାସାମାଦା ସମ୍ମିଳନୀ ପାଇଁ । ଏଥିରେ ଅଧିକତର ଗବେଷଣାରେ ମଧ୍ୟ ସେ ଥିଲେ ଆଗ୍ରହୀ । x x x

ସ୍ପେନ୍‌ର ଜଳବାୟୁ ଓ ଆର୍ଥନୀତିକ ମାନଚିତ୍ର ଅନେକାଂଶରେ ଭାରତର ଅନୁରୂପ ହେଲେ ହେଁ ଆଶ୍ଚର୍ଯ୍ୟ ଯେ ଭାରତ ଓ ସ୍ପେନ୍ ମଧ୍ୟରେ ଅତୀତରେ ପ୍ରତ୍ୟକ୍ଷ ସମ୍ପର୍କରେ ପ୍ରମାଣ ଅତ୍ୟନ୍ତ କ୍ଷୀଣ । ମଧ୍ୟଯୁଗରେ ହୁଏତ ଆରବ ବା ମୁସ୍‌ଲିମ୍‌ମାନେ କେତେକାଂଶରେ ଥିଲେ ଏଇ ସମ୍ପର୍କରେ ସେତୁ । ୟୁରୋପୀୟ ଉପନିବେଶବାଦ ଯୁଗରେ ସପ୍ତଦଶ ଶତାବ୍ଦୀରେ ଭାରତରେ ପାଦ ଦେଇଥିଲେ ଇଂରେଜ, ଫରାସୀ, ପର୍ତ୍ତୁଗୀଜ୍ ଓ ଓଲନ୍ଦାଜମାନେ । କିନ୍ତୁ ଷୋଡ଼ଶ ଶତାବ୍ଦୀବେଳକୁ ସ୍ପେନ୍‌ର ନୌଶକ୍ତିର ଅଧଃପତନ ଘଟି ସାରିଥିଲା ଓ ସ୍ପେନ୍ ପରିଗଣିତ ହେଉ ନ ଥିଲା ଏକ ୟୁରୋପୀୟ ଶକ୍ତିରୂପେ । ସ୍ପେନୀୟମାନେ ଏସିଆରେ ଉପନିବେଶ ସ୍ଥାପନର ପ୍ରତିଯୋଗିତାରୁ ଆପେ ଆପେ ଓହରି ଯାଇଥିଲେ ।

ଇତିହାସ କିନ୍ତୁ ଏକ ବିରାଟ ଆକସ୍ମିକତା ନୁହେଁ ତ ଆଉ କ'ଣ ? ଘଟଣା ପ୍ରବାହରେ ଯଦି ଆଜିଠାରୁ ଦୁଇଶତ ବର୍ଷ ତଳେ କ୍ଲାଇଭ୍ ଓ ଡୁ୍ୟପ୍ଲେଙ୍କ ମଧ୍ୟରେ ସଙ୍ଗଠିତ ସଂଗ୍ରାମରେ ଡୁ୍ୟପ୍ଲେ ହୋଇଥା'ନ୍ତେ ବିଜୟୀ, ତେବେ ଆଜି ଭାରତୀୟମାନଙ୍କର ସରକାରୀ ଭାଷା ଇଂରାଜୀ ପରିବର୍ତ୍ତେ ହୋଇଥା'ନ୍ତା ଫ୍ରେଞ୍ଚ୍ ଓ ଲଣ୍ଡନ୍ ପରିବର୍ତ୍ତେ ପ୍ୟାରିସ୍ ହିଁ ହୋଇଥା'ନ୍ତା ଶତାବ୍ଦୀ ଶତାବ୍ଦୀ ବ୍ୟାପୀ ଭାରତୀୟମାନଙ୍କ ଆଧୁନିକତା ଓ ଚେତନାର କେନ୍ଦ୍ର ବିନ୍ଦୁ !

କିମ୍ବା ଘଟଣା ପ୍ରବାହରେ ଯଦି ଭାରତ ହୋଇଥା'ନ୍ତା ସ୍ପେନୀୟମାନଙ୍କ ଉପନିବେଶ, ତେବେ ସ୍ପେନୀୟ ଭାଷା ଓ ସଂସ୍କୃତିରେ ଆକ୍ରାନ୍ତ ହୋଇପଡ଼ିଥା'ନ୍ତା ଏତେବଡ଼ ଭୂଖଣ୍ଡ !

ସ୍ପେନୀୟମାନଙ୍କ ଉପନିବେଶ ଓ ପ୍ରଭାବର ଇଲାକା କିନ୍ତୁ ଇଂରେଜମାନଙ୍କ ତୁଳନାରେ ନ୍ୟୁନ ନୁହେଁ । ବ୍ରାଜିଲ୍‌କୁ ବାଦ୍ ଦେଲେ ସମଗ୍ର ଦକ୍ଷିଣ ଆମେରିକା ସ୍ପେନୀୟ ଭାଷାଭାଷୀ । ଯୁକ୍ତରାଷ୍ଟ୍ର ଆମେରିକାର ଦକ୍ଷିଣାଂଶ ଓ ୱେଷ୍ଟଇଣ୍ଡିଜ୍‌ରେ ମଧ୍ୟ ସ୍ପେନୀୟ ଭାଷା ଓ ସଂସ୍କୃତିର ପ୍ରଭାବ ପ୍ରଚୁର । 'କାଲିଫର୍ଣିଆ', 'ଲସ୍ ଆଞ୍ଜୋଲେସ୍' ପ୍ରଭୃତି ସୁପରିଚିତ ନାମଗୁଡ଼ିକ ସ୍ପେନୀୟ ଓ ସ୍ପେନ୍‌ର ଅତୀତ ଆଧିପତ୍ୟର ପ୍ରତୀକ !

ସିଜେସ୍‌ରେ କମନ୍ ୱେଲ୍‌ଥ ଭାଷା ଓ ସାହିତ୍ୟ ସମ୍ମିଳନୀରେ ଉପସ୍ଥିତ ପ୍ରତିନିଧିମାନଙ୍କ ପାଇଁ ପ୍ରତି ସନ୍ଧ୍ୟାରେ ଆୟୋଜିତ ହେଉଥିଲା ସଙ୍ଗୀତ–ବିଚିତ୍ରା । ଶିଳ୍ପୀମାନଙ୍କ ପରିଚୟରୁ

ସହଜରେ ବୁଝିହେଉଥିଲା, ଶିକ୍ଷୀମାନଙ୍କ କର୍ମକ୍ଷେତ୍ର ସ୍ପେନ୍ ବାହାରେ ସ୍ପାନୀସ୍ ଭାଷା ଆର୍ଜେଣ୍ଟିନା, ପେରୁ, ବଲିଭିଆ, ମେକ୍ସିକୋ, କ୍ୟୁବା ପ୍ରଭୃତିରେ ବିସ୍ତାରିତ । ରାଜନୀତିକ ବିଭାଜନ ସତ୍ତ୍ୱେ ଇଂରାଜୀଭାଷୀ ଓ ଫରାସୀଭାଷୀ ଦେଶଗୁଡ଼ିକ ଭଳି ସ୍ପାନୀସ୍‌ଭାଷୀ ଦେଶଗୁଡ଼ିକ ମଧ୍ୟରେ ସମ୍ପର୍କ ଓ ସୌହାର୍ଦ୍ଦ୍ୟର ବନ୍ଧନ ସ୍ୱାଭାବିକ ହିଁ ମନେହୁଏ !

ଇତିହାସର ଆକସ୍ମିକତାରେ ଭାରତ ଆଜି ଇଂରାଜୀ ଭାଷାଭାଷୀ ରାଷ୍ଟ୍ରଗୁଡ଼ିକର ନିକଟବର୍ତ୍ତୀ । ଭାରତରେ ସ୍ପେନୀୟ ସଂସ୍କୃତି ବା ସ୍ପେନ୍‌ରେ ଭାରତୀୟ ସଂସ୍କୃତି ସମ୍ପର୍କରେ ସଚେତନତା ପ୍ରାୟ ଅନୁପସ୍ଥିତ ।

ଏହି ପରିପ୍ରେକ୍ଷୀରେ ଶାଢ଼ି ଓ ବ୍ଲାଉଜ ପରିଧାରିଣୀ; ଭାରତର ଭାଷା ସମସ୍ୟାରେ ଆଗ୍ରହୀ ପିଲାର କାସାମାଦା ଏକ ସ୍ମରଣୀୟ ବ୍ୟକ୍ତିତ୍ୱ । ଭାରତ ଓ ସ୍ପେନ୍ ମଧ୍ୟରେ ପ୍ରେମ ଓ ବୁଝାମଣାର ଆବଶ୍ୟକତା ଯେ ଜରୁରୀ, ଭାରତୀୟମାନଙ୍କୁ ତାହା ହିଁ ଯେପରି ସୂଚାଇ ଦେଉଛନ୍ତି ପିଲାର କାସାମାଦା !!

## ବିଦାୟ ସିଜେସ୍ !

ସିଜେସ୍ ଛାଡ଼ିବାବେଳେ କେଜାଣି କାହିଁକି ଅନୁଭବ କଲି ଗୋଟାଏ ଶୂନ୍ୟତା ଓ ବେଦନାବୋଧ । ମାତ୍ର ଚାରୋଟି ଦିନ କଟାଇଥିଲି ଭୂମଧ୍ୟସାଗର କୂଳରେ ସେଇ ସହରଟିରେ – ତଥାପି ମନେହେଉଥିଲା ସହରଟି ଯେପରି ବହୁଦିନୁ ପରିଚିତ ! ମନେ ହେଉଥିଲା, ସିଜେସ୍‌ରେ ମୁଁ କଟାଇ ପାରନ୍ତି ମୋର ସମଗ୍ର ଜୀବନ !

ଅନ୍ୟାନ୍ୟ ୟୁରୋପୀୟ ସହରରେ କ୍ୱଚିତ୍ ସେପରି ଅନୁଭବ କରିଛି । ସ୍ପେନ୍‌ର ଭାରତୀୟ ପରିବେଶ – ସ୍ପେନୀୟମାନଙ୍କ ସହିତ ଭାରତୀୟ ଚରିତ୍ର ଓ ଜୀବନଯାତ୍ରାର ସାମଞ୍ଜସ୍ୟ – ହୁଏତ ମୋତେ ଆକୃଷ୍ଟ କରିଥିଲା ସିଜେସ୍ ପ୍ରତି । ମୋର ଜନ୍ମଭୂମି ପୁରୀ ମଧ୍ୟ ସମୁଦ୍ରକୂଳର ସହର – ସିଜେସ୍‌ଠାରୁ ଖୁବ୍ ଭିନ୍ନ ନୁହେଁ । ତେବେ ଅନ୍ୟଗୋଟିଏ କାରଣରୁ ମଧ୍ୟ ଜଣେ ଭାରତୀୟ ସ୍ପେନ୍‌ରେ ଅନୁଭବ କରେ ଅନ୍ତରଙ୍ଗତା । ଅନ୍ୟ କୌଣସି ୟୁରୋପୀୟ ଦେଶରେ ସେପରି ଅନୁଭବ କରିବା ହୁଏତ ସହଜ ନୁହେଁ ।

ତାହା ହେଉଛି ଚମତ୍କାର ରଙ୍ଗ । ଆଜିର ୟୁରୋପ ତଥା ପାଶ୍ଚାତ୍ୟ ପୃଥିବୀରେ ସବୁଠାରୁ ବଡ଼ ସମସ୍ୟା କଳା–ଗୋରା ବିଭେଦ ! କଳା ବା ସାବ୍‌ନାମାନଙ୍କ ପ୍ରତି ଗୋରାମାନଙ୍କ ଘୃଣା – ଜଣେ ସ୍ପର୍ଶକାତର ଭାରତୀୟ ସଚରାଚର ଅନୁଭବ କରେ ଇଂଲାଣ୍ଡ ବା ୟୁରୋପରେ । କିନ୍ତୁ ଆଶ୍ୱାସନାର ବ୍ୟାପାର – ଏପରି ଅନୁଭବ ସ୍ପେନ୍‌ରେ ସମ୍ଭବ ନୁହେଁ ।

ସମ୍ଭବ ନୁହେଁ, କାରଣ ସ୍ପେନୀୟ ରକ୍ତରେ ଶତାବ୍ଦୀ ଶତାବ୍ଦୀ ବ୍ୟାପୀ ମିଶ୍ରିତ ହୋଇଛି ଆରବମାନଙ୍କ ରକ୍ତ । କୁହାଯାଏ, ଆଇବେରିଆନ୍ ବା ସ୍ପେନ୍‌ର ମୂଳ ଅଧିବାସୀମାନେ

ଥିଲେ ଆଫ୍ରିକାନ୍ । ସ୍ପେନ୍‌ର ବ୍ୟାପକ ଅଞ୍ଚଳରେ ଜଳବାୟୁ ମଧ୍ୟ କେତେକାଂଶରେ ଗ୍ରୀଷ୍ମକାଳୀନ । ଜଣେ ସ୍ପେନୀୟର ଚମତ୍କାର ରଙ୍ଗ ସାଦ୍‌ନା ବା କେଶର ରଙ୍ଗ କଳା ହେବା ଏକ ମାମୁଲି ଦୃଶ୍ୟ । ସିଜେସ୍‌ରେ ମୋତେ ଏକାଧିକ ବନ୍ଧୁ କହିଥିଲେ – ''ଆପଣଙ୍କ ଚେହେରା ଜଣେ ସାଧାରଣ ସ୍ପେନୀୟ ଚେହେରା ହୋଇପାରେ !'' ଇଂରେଜ ସମାଜରେ ବର୍ଷ ବର୍ଷ କଟାଇ ନିଜ ଚମତ୍କାର ରଙ୍ଗ ସମ୍ପର୍କରେ ଅହରହ ସଚେତନ ଜଣେ ଭାରତୀୟ ପକ୍ଷରେ ଏପରି ମନ୍ତବ୍ୟ ସ୍ୱାଗତଯୋଗ୍ୟ ନିଶ୍ଚୟ !

କମନ୍‌ୱେଲ୍‌ଥ୍ ଭାଷା ଓ ସାହିତ୍ୟ ସମ୍ମିଳନୀ ଶେଷ ହେଲା । ଲେଖକ – ସମାଲୋଚକ – ପ୍ରତିନିଧିମାନେ ସିଜେସ୍ ଛାଡ଼ିବାରେ ଲାଗିଲେ । ସେମାନଙ୍କ ସହିତ ପୁଣି ମିଳିତ ହେବାର ସମ୍ଭାବନା ନଗଣ୍ୟ ।

କେତେଜଣ ବନ୍ଧୁଙ୍କ ଗହଣରେ ପ୍ରକାଶ କଲି ମୋର ଦୁଃଖ – 'ଅନେକ ବନ୍ଧୁଙ୍କ ପରିଚୟ ମିଳେ ଏପରି ସମ୍ମିଳନୀରେ । ଅଥଚ ଦ୍ୱିତୀୟବାର ସେମାନଙ୍କୁ ଭେଟିବାର ସୁଯୋଗ ହୁଏ ତ ମିଳେ ନାହିଁ !'

ପ୍ରତିବାଦ କଲେ କ୍ୟାଭଲ୍ – କୌଣସି ସ୍ଥାନୀୟ ବିଦ୍ୟାଳୟର ଶିକ୍ଷୟିତ୍ରୀ ସୁନ୍ଦରୀ, ସ୍ୱଳ୍ପଭାଷିଣୀ । 'ମୋର ବିଶ୍ୱାସ, ଆପଣ ଯଦି କାହାକୁ ଭଲପାଉଥାଆନ୍ତି, ତେବେ ପୁଣି ତାଙ୍କ ସହିତ ଆପଣଙ୍କ ସାକ୍ଷାତ ହେବ ନିଶ୍ଚୟ ।'

'ଭାରତୀୟମାନେ ମଧ୍ୟ ଏପରି ବିଶ୍ୱାସ କରନ୍ତି' – ମୁଁ କହିଲି ।

ସିଜେସ୍ ପରେ ବାର୍ସେଲୋନା । ବାର୍ସେଲୋନାରେ ଦୁଇଟି ଦିନ କଟାଇ ମୋର ବାହୁଡ଼ିଯିବାର ଥାଏ ଲଣ୍ଡନ୍ ।

## ରାମ୍‌ବ୍ଲାସ୍

ନୂତନ ସହର ବା ଦେଶଟିରେ ପହଞ୍ଚିଲେ ଜଣେ ଟୁରିଷ୍ଟକୁ ଦେଖାଇ ଦିଆହୁଏ – ସେ ଅଞ୍ଚଳର ଐତିହାସିକ କୀର୍ତ୍ତି, ପ୍ରାକୃତିକ ଦୃଶ୍ୟ, ଚିଡ଼ିଆଖାନା ବା ମ୍ୟୁଜିୟମ୍ । କିନ୍ତୁ ମୋର ମନେହୁଏ, କୌଣସି ସହରର ବାସ୍ତବ ଚରିତ୍ର ତାହାର ରାଜପଥରେ ହିଁ ଫୁଟିଉଠେ । ଅନ୍ତତଃ ବାର୍ସେଲୋନା ନଗରୀର ମୁଖ୍ୟ ରାଜପଥ ରାମ୍‌ବ୍ଲାସ୍‌ରେ ସ୍ପେନୀୟ ଚରିତ୍ରର ନିଖୁଣ ପରିଚୟ ମିଳିପାରେ !

କୋଟେଜ କ୍ଷୁଦ୍ର ଓ ଶସ୍ତା ହୋଟେଲଟିଏ – ବାର୍ସେଲୋନାର କେନ୍ଦ୍ରସ୍ଥଳରେ – ଏକ ସଂକୀର୍ଣ୍ଣ ଗଳିରେ । ଗଳି ଅତିକ୍ରମ କଲେ ରାମ୍‌ବ୍ଲାସ । କୋଟେଜରେ ରହିବାରେ ମୋ ପାଇଁ ପ୍ରଧାନ ଆକର୍ଷଣ ଥିଲା ସକାଳ ଓ ସନ୍ଧ୍ୟା ରାମ୍‌ବଲାସରେ ଅତିବାହିତ କରିବା ।

ରାମ୍‌ବଲାସ୍ ବାର୍ସେଲୋନାର ସିଟି ସେଣ୍ଟର ଓ ମୁଖ୍ୟ ରାଜପଥ । କ୍ୟାଟାଲୋନିଆ ସ୍କୋୟାରଠାରୁ ଭୂମଧ୍ୟସାଗର ପର୍ଯ୍ୟନ୍ତ ଏହାର ବିସ୍ତୃତି । କୁହାଯାଏ, ବାର୍ସେଲୋନାର ଗତକାଲି

ଓ ଆଜି – ପୁଣି ଆଜି ଓ ଆସନ୍ତାକାଲିର ପ୍ରତୀକ ରାମ୍‌ବ୍‌ଲାସ୍ । ନଗରୀର ଏହା ପ୍ରାଚୀନତମ ଅଞ୍ଚଳ – ଅଥଚ ଏଇଠାରେ ହିଁ ଦେଖିବାକୁ ମିଳେ ନଗରୀର ନୂତନତମ ପ୍ରାସାଦଶ୍ରେଣୀ । ଦିବା ଓ ରାତ୍ରୀର ସବୁ ସମୟରେ ଏଠାରେ ଛୁଟିଥାଏ ବିପୁଳ ମଣିଷର ସ୍ରୋତ ।

ରାମ୍‌ବ୍‌ଲାସର ଉଭୟ ପାର୍ଶ୍ୱରେ ଧାଡ଼ି ଧାଡ଼ି ପତ୍ରପୂର୍ଣ୍ଣ ବୃକ୍ଷ । ବୃକ୍ଷମାନଙ୍କ ଶୀତଳଛାୟାରେ ବହି–ପତ୍ରପତ୍ରିକା, ଫୁଲ ଓ ଚଢ଼େଇମାନଙ୍କ ବିପଣୀ । ସଂସ୍କୃତି, ସୌନ୍ଦର୍ଯ୍ୟ ଓ ପ୍ରକୃତି ପ୍ରତି ସ୍ପେନୀୟମାନଙ୍କ ପ୍ରଗାଢ଼ ଆକର୍ଷଣର ନିଦର୍ଶନ ରାମ୍‌ବଲାସ୍ । ମାଟି ଓ ପ୍ଲାଷ୍ଟିକ ପାତ୍ରମାନଙ୍କରେ ରଙ୍ଗୀନ ଫୁଲ ଓ ପତ୍ରର ପ୍ରଦର୍ଶନୀ ସାଙ୍ଗକୁ ପଞ୍ଜୁରିରେ ଅସଂଖ୍ୟ ବୈଚିତ୍ର୍ୟମୟ ପକ୍ଷୀ । ପଞ୍ଜୁରି ବାହାରେ ମଧ ଫୁଟପାଥ୍ ଉପରେ ବୃକ୍ଷମାନଙ୍କ ପତ୍ରମୟ ଶାଖାପ୍ରଶାଖାରେ ଅସଂଖ୍ୟ ପକ୍ଷୀ – ପଞ୍ଜୁରିରେ ବନ୍ଦୀ ସେମାନଙ୍କ ବନ୍ଧୁବାନ୍ଧବୀଙ୍କଠାରୁ ଅଧିକ ଭାଗ୍ୟବାନ୍ ସେମାନେ ! ପକ୍ଷୀମାନଙ୍କ ରଙ୍ଗ, ଗତିବିଧି ଓ ସ୍ୱର ସହଜରେ ଆକର୍ଷଣ କରୁଥାଏ ଶିଶୁ ଓ କିଶୋର କିଶୋରୀମାନଙ୍କୁ । ସେମାନଙ୍କ ମୁଖ ହସହସ, ହାତରେ ଉଜ୍ଜ୍ୱଳରଙ୍ଗର ବେଲୁନ୍‌ସବୁ ।

ଦିନେ ସନ୍ଧ୍ୟାରେ ଲକ୍ଷ୍ୟ କଲି, ପଥଚାରୀ ତରୁଣ–ତରୁଣୀ, କିଶୋର–କିଶୋରୀ, ମଧ୍ୟବୟସ୍କମାନେ ପରସ୍ପର ହାତ ଧରି ରାଜପଥ ଉପରେ ଆରମ୍ଭ କରିଦେଲେ ବୃତ୍ତାକାର ନୃତ୍ୟ । ସେମାନଙ୍କ ବ୍ୟାଗ୍ ଓ ଅନ୍ୟାନ୍ୟ ସରଞ୍ଜାମ ଗୋଟିଏ ସ୍ଥାନରେ ଜମା ହୋଇଥାଏ । ନୂତନ ପଥଚାରୀମାନେ ଅବଲୀଳାକ୍ରମେ ଯୋଗ ଦେଉଥା'ନ୍ତି ନୃତ୍ୟରେ – ନୃତ୍ୟର ବୃତ୍ତ ବଢ଼ିବାରେ ଲାଗିଥାଏ । ପରସ୍ପରକୁ ଜାଣନ୍ତି ନାହିଁ ସେମାନେ । ଅଥଚ କି ଅନାବିଳ ଆନନ୍ଦ ଉଲ୍ଲାସ ଓ ପ୍ରାଣପ୍ରାଚୁର୍ଯ୍ୟ ! ଜୀବନକୁ ସହଜ ଭାବରେ ଗ୍ରହଣ କରି ନେବାରେ – ଉପଭୋଗ କରିବାରେ – ସ୍ପେନୀୟମାନେ ବିଶ୍ୱାସ କରନ୍ତି ନିଶ୍ଚୟ । ପରେ ଜାଣିଲି, ଏହି ନୃତ୍ୟର ନାମ 'ସାଡ଼ୋନଷ୍ଟ – ଏହା ହାତଧରାଧରି ହୋଇ ଆଗେଇ ଯିବାର ନୃତ୍ୟ !'

ରାମ୍‌ବ୍‌ଲାସରେ ଅହରହ ଉତ୍ସବ ଓ ମୁକ୍ତିର ବାତାବରଣ, ଶିଳ୍ପୀମାନେ ଫୁଟପାଥ୍ ଉପରେ ଆଙ୍କି ଚାଲିଥାନ୍ତି ଚିତ୍ରସବୁ । ସ୍ତ୍ରୀଲୋକ ଜଣେ ରଙ୍ଗୀନ୍ କାଗଜର ଛାତିଜାଡ଼ିକା ମୁଖାପିନ୍ଧି ଶିଶୁମାନଙ୍କୁ ଆମୋଦିତ କରୁଥାଏ । ଶିଳ୍ପୀ ଓ ସେଇ ସ୍ତ୍ରୀ ଲୋକଟି ନିକଟରେ କେହି କେହି ଫିଙ୍ଗି ଦେଉଥା'ନ୍ତି କେତୋଟି 'ପେସିତା' ।

କିନ୍ତୁ କେବଳ ଉତ୍ସବ ଓ ଆନନ୍ଦର ଅଞ୍ଚଳ ନୁହେଁ ରାମ୍‌ବ୍‌ଲାସ । କୌଣସିଠାରେ ଲକ୍ଷ୍ୟ କଲି – ଧାଡ଼ିଏ 'ସେକ୍‌ସ୍ ସପ୍' । ସେକ୍‌ସ୍ ସପ୍ ସାମନାରେ ହତଭାଗିନୀ ଯୁବତୀମାନେ ଅପେକ୍ଷା କରିଥିଲେ ସେମାନଙ୍କ ରସିକ ଗ୍ରାହକମାନଙ୍କୁ । ଫୁଟ୍‌ପାଥ୍ କଡ଼ର କାଠ ଚେୟାରରେ ବସିବାମାତ୍ରେ ମୋ ନିକଟରେ ଆସି ପହଞ୍ଚିଗଲା ଜଣେ ବୃଦ୍ଧ – ତା' ପୋଷାକ ଛିଣ୍ଡା, ଦୃଷ୍ଟି ମଳିନ । ଚେୟାରରେ ବସିଲେ ମ୍ୟୁନିସିପାଲିଟି ପାଇଁ ସେ ଆଦାୟ କରେ ପନ୍ଦର 'ପେସିତା' । ରାମ୍‌ବ୍‌ଲାସର ଆନନ୍ଦ ଉତ୍ସବରେ ତା'ର ବା ଭାଗ କେତେ ?

ଶିଶୁଟିଏ କାନ୍ଦୁଛି ଓ ତାକୁ ଭୁଲାଇବା ପାଇଁ ତା' ମାଆ ଗାଉଛି ଗୀତଟିଏ । ହୁଏତ ଶିଶୁଟି କିଣିବାକୁ ଚାହେଁ ବେଲୁନ୍ ବା ଫୁଲ ତୋଡ଼ାଟିଏ । ମାଆର ପେସିତା ନାହିଁ – ଗୀତଟି କ'ଣ ନୀରବ କରିପାରିବ ଶିଶୁର କାନ୍ଦ ?

କିଙ୍ଗବର୍ଗର ରେଷ୍ଟୋରାଁରେ ଚା' ପିଇଲି । ଦଳେ ସ୍ପେନୀୟ ତରୁଣ ପରସ୍ପର ମଧ୍ୟରେ କ'ଣ ଗପି ଉଚ୍ଚସ୍ୱରରେ ହସୁଥିଲେ । ସେମାନେ ଜଣାପଡୁ ନ ଥିଲେ ବିଶେଷ ସୋଫିଷ୍ଟିକେଟେଡ୍ ବା ସ୍ୱଚ୍ଛଳ । କିନ୍ତୁ ସେମାନଙ୍କ ହସ ଓ ପ୍ରାଣପ୍ରାଚୁର୍ଯ୍ୟ ହିଁ ତ ସ୍ପେନ୍‌ର ଶ୍ରେଷ୍ଠତମ ବିଭବ !

ରାମ୍‌ବ୍ଲାସ୍ ପ୍ରତୀକ – ସ୍ପେନ୍‌ର ସ୍ୱପ୍ନ ଓ ପ୍ରାଣପ୍ରାଚୁର୍ଯ୍ୟର ! ସନ୍ଧ୍ୟା ଓ ସକାଳରେ ରାମ୍‌ବ୍ଲାସରେ ବୁଲୁଥିଲାବେଳେ ମନେହେଉଥିଲା – ଦାରିଦ୍ର୍ୟ ଓ ମଳିନତା ସ୍ପେନ୍ ପାଇଁ ନୁହେଁ – ସ୍ପେନୀୟମାନଙ୍କ ପାଇଁ ବହି, ଫୁଲ, ପକ୍ଷୀ ଓ ସାର୍ଡ଼ୋନା !!

## ସମୁଦ୍ର ସେପାରେ

ବାର୍ସେଲୋନା ନଗରୀରେ ସହଜରେ ଦୃଷ୍ଟି ଆକର୍ଷଣ କରେ ଏକ ପ୍ରକାଣ୍ଡ ମୂର୍ତ୍ତି । ନଗରୀର ମୁଖ୍ୟ ରାଜପଥ 'ରାମବାସ' ଯେଉଁଠି ମିଳିତ ହୋଇଛି ଭୂମଧ୍ୟସାଗର ବେଳାଭୂମିରେ, ସେଇଠାରେ ରୁପା ରଙ୍ଗର ସମୁଚ୍ଚ ସ୍ତମ୍ଭ ଉପରେ ସ୍ଥାପିତ ମୂର୍ତ୍ତିଟି । ମୂର୍ତ୍ତିଟି ସାମ୍ନା କରିଛି ସମୁଦ୍ରକୁ – ସୀମାହୀନ ଜଳରାଶିର ସେପାରେ ଧୂମାୟିତ ଦିଗନ୍ତ ଉପରେ ତା'ର ଦୃଷ୍ଟି । ସମୁଦ୍ର ଦିଗରେ ପ୍ରସାରିତ ତା'ର ଦକ୍ଷିଣହସ୍ତ ଯେପରି ଘୋଷଣା କରିଚାଲିଛି ଦୃପ୍ତ ନୀରବତାରେ – 'ଏଇ ପଥେ ଯାଅ, ସ୍ପେନୀୟଗଣ !'

ବାର୍ସେଲୋନା ନଗରୀର ଅସଂଖ୍ୟ ସଭ୍ୟ ମଣିଷଙ୍କୁ ପୃଷ୍ଠପ୍ରଦର୍ଶକ କରି ଦଣ୍ଡାୟମାନ ମୂର୍ତ୍ତିଟି – ହଠାତ୍ ମନେହୁଏ ମୂର୍ତ୍ତିଟିର ସ୍ଥାପନରୀତିରେ କିଛିଟା ଅସ୍ୱାଭାବିକତା ରହିଯାଇଛି ଯେପରି !!

ମୂର୍ତ୍ତିଟି ଖ୍ରୀଷ୍ଟୋଫର – କଲମ୍ବସ୍‌ଙ୍କର । ପଞ୍ଚଦଶ ଷୋଡ଼ଶ ଶତାବ୍ଦୀର ସେଇ ଦୁଃସାହସିକ ନୌଚାଳକ । ୟୁରୋପରୁ ଭାରତକୁ ଜଳପଥଟିଏ ଆବିଷ୍କାର କରିବାକୁ ଯାଇ ପହଞ୍ଚିଲେ ଆମେରିକା ମହାଦେଶରେ ଓ ୟୁରୋପୀୟମାନଙ୍କ ପାଇଁ ଆଣି ଦେଇଥିଲେ 'ନୂତନ ପୃଥିବୀର ସନ୍ଧାନ' । ପରିମାଣରେ ସମୃଦ୍ଧ ଆମେରିକା ମହାଦେଶଟାକୁ ୟୁରୋପୀୟମାନେ ହିଁ ବାଣ୍ଟି ଦେଲେ ନିଜ ନିଜ ମଧ୍ୟରେ ।

କଲମ୍ବସ୍ ଅବଶ୍ୟ ସ୍ପେନୀୟ ନ ଥିଲେ । ତାଙ୍କର ଜନ୍ମ ଇଟାଲୀ ଦେଶରେ । ତରୁଣ ବୟସରେ ସେ ପଳାଇ ଆସିଥିଲେ ପର୍ତ୍ତୁଗାଲ । ତାଙ୍କର ଦୁଃସାହସିକ ଜଳଯାତ୍ରା ପାଇଁ କିନ୍ତୁ ସେ ଇଟାଲୀ, ପର୍ତ୍ତୁଗାଲ ବା ଇଂଲାଣ୍ଡର ଶାସକମାନଙ୍କଠାରୁ କୌଣସି ସାହାଯ୍ୟ ପାଇ ନ ଥିଲେ । ବିଳମ୍ବରେ ହେଲେ ମଧ୍ୟ ତାଙ୍କୁ ଉତ୍ସାହ ଓ ଆର୍ଥିକ ସହାୟତା ଯୋଗାଇ ଦେଇଥିଲେ

ସ୍ପେନ୍‌ର ରାଣୀ ଇସାବେଲା ଓ ରାଜା ଫର୍ଦିନାନ୍ଦ୍ । ଜଳଯାତ୍ରାର ସଫଳତା ପରେ କଲମ୍ବସ୍ ସ୍ପେନ୍‌କୁ ଉପହାର ଦେଇଥିଲେ ବାହାମାସ, କ୍ୟୁବା, ହାଇଟି ତ୍ରିନିଦାଦ୍, ଜାମାଇକା, ପ୍ୟୁଏଟେରକୋ ପ୍ରଭୃତି ଦେଶ ଓ ପ୍ରଚୁର ସୁନା, କାର୍ପାସ, ମାଙ୍କଡ଼ ଓ ଶୁଆ । ମୋଟ ଉପରେ କଲମ୍ବସ୍ ହିଁ ମୂଳଭିତ୍ତି ପକାଇଥିଲେ । ୟୁରୋପୀୟ ଉପନିବେଶବାଦ ଓ ଦେଶ ଆବିଷ୍କାର ପ୍ରକ୍ରିୟାର । ପରବର୍ତ୍ତୀ ଯୁଗରେ ସମଗ୍ର ଦକ୍ଷିଣଆମେରିକା ଉପରେ ସ୍ପେନ୍‌ର ମାଲିକାଣା ତଥା ସ୍ପେନ୍‌ର ସମୃଦ୍ଧି ଓ ଗୌରବ ପାଇଁ କଲମ୍ବସ୍ ହିଁ ଥିଲେ ମୁଖ୍ୟତଃ ଦାୟୀ !

ଅନ୍ୟ ଭାଷାରେ କହିଲେ, ସ୍ପେନ୍‌ର ଗୌରବ ଓ ସମୃଦ୍ଧିର ମୂଳ ଉସ୍ଥ ଥିଲା ସମୁଦ୍ର । ଚାରିଶତ ବର୍ଷ ତଳେ ସ୍ପେନୀୟମାନେ ନିଜ ଭିଟାମାଟିକୁ ପଛରେ ପକାଇ ସମୁଦ୍ର ପଥରେ ଅଜ୍ଞାତର ସନ୍ଧାନରେ ବାହାରି ନ ଥିଲେ ଆଜି ସେମାନେ ଏତେ ବ୍ୟାପକ ଭୂଖଣ୍ଡ ଓ ସଂସ୍କୃତିର ଅଧିକାରୀ ହୋଇପାରି ନ ଥା'ନ୍ତେ ! ସେଇଥିପାଇଁ ତ ବାର୍ସୋଲୋନା ନଗରୀରେ କଲମ୍ବସ୍‌ଙ୍କ ପ୍ରତିମୂର୍ତ୍ତିଟି ସମୁଦ୍ର ଅଭିମୁଖେ ହସ୍ତପ୍ରସାରଣ କରି ଆଜି ମଧ ଘୋଷଣା କରି ଚାଲିଛି – 'ଏଇପଥେ ଯାଅ ସ୍ପେନୀୟଗଣ ! × × ×

ମଣିଷ ସଭ୍ୟତାର ଇତିହାସରେ ଷୋଡ଼ଶରୁ ଊନବିଂଶ ଶତାବ୍ଦୀ ହିଁ ଆବିଷ୍କାର ଓ ବିସ୍ତାରର ଯୁଗ । ଏଇ ଶତାବ୍ଦୀମାନଙ୍କରେ ୟୁରୋପୀୟମାନେ ଜଳପଥରେ ପହଞ୍ଚି ପାରିଥିଲେ ପୃଥିବୀର କୋଣଅନୁକୋଣରେ । ଆମେରିକା, ଅଷ୍ଟ୍ରେଲିଆ ଭଳି ଅନୁନ୍ନତ ମହାଦେଶମାନଙ୍କୁ ସେମାନେ ସମ୍ପୂର୍ଣ୍ଣ କବଳିତ କରିନେଲେ; ଏସିଆ, ଆଫ୍ରିକାରେ ଛାଡ଼ିଦେଇ ଗଲେ ସେମାନଙ୍କ ରାଜନୀତିକ, ସାଂସ୍କୃତିକ ଐତିହ୍ୟର ସୁଦୀର୍ଘ ପରମ୍ପରା । ଆଜି ବିଂଶ ଶତାବ୍ଦୀରେ ୟୁରୋପୀୟ ଭାଷା, ସାହିତ୍ୟ, ସଂସ୍କୃତିହିଁ ତେଣୁ ବିଶ୍ୱସଭ୍ୟତାର ମର୍ଯ୍ୟାଦାରେ ଅଭିଷିକ୍ତ !

ଏଇ ଆବିଷ୍କାର ଓ ବିସ୍ତାର ଯୁଗରେ – ଦୁଃସାହସିକ କଲମ୍ବସ୍‌ମାନେ ସମୁଦ୍ର ପଥରେ ଦୂର ଦୂରାନ୍ତର ଅତିକ୍ରମିବା ବେଳେ ଭାରତୀୟମାନେ ନିଜ ଭିଟାମାଟି କାମୁଡ଼ି ପଡ଼ି ରହିବାକୁହିଁ ମନେ କରୁଥିଲେ ସେମାନଙ୍କ ଧର୍ମ ଓ ବୁନିଆଦି । କଳାପାଣି ଡେଇଁଲେ ଜାତି ହଜି ଯିବାର ଭୟ ମଳିନ, ମ୍ରିୟମାଣ କରି ଦେଇଥିଲା ଭାରତୀୟ ଚେତନା, କଳ୍ପନା, ପ୍ରାଣଶକ୍ତିକୁ । ତାହା ହିଁ ବୋଧହୁଏ ଥିଲା ଭାରତୀୟ ଅଧଃପତନର ମୂଳ ହେତୁ । ଇତିହାସରେ ଆଜି ସ୍ପଷ୍ଟ – ଯେତେ ଦୁଃସାହସିକ, ଭ୍ରମଣଶୀଳ ଯେଉଁ ଜାତି, ତାହାର ସମୃଦ୍ଧି ଓ ବିକାଶ ସେତେ ଅଧିକ । (ବିଲାତ ଯାତ୍ରାର ଅବ୍ୟବହିତ ପୂର୍ବରୁ ବମ୍ବେ ପୋତାଶ୍ରୟରୁ ମୋହନ ଦାସଙ୍କୁ ବାହୁଡ଼ାଇ ନେବାପାଇଁ କେତେ ଉଦ୍ୟମ କରି ନ ଥିଲେ ତାଙ୍କର ଆତ୍ମୀୟମାନେ ! ଅଥଚ କଳାପାଣି ଡେଇଁ ନ ଥିଲେ ସେ ଦିନର ମୋହନ ଦାସ କଦାପି ପରିଣତ ହୋଇ ନ ଥା'ନ୍ତେ ଗାନ୍ଧିଜୀରେ !) × × ×

ବାର୍ସେଲୋନାରେ କଲମ୍ବସ୍‌ଙ୍କ ପ୍ରତିମୂର୍ତ୍ତି କେବଳ ସ୍ପେନୀୟମାନଙ୍କ ସମୃଦ୍ଧି ଓ ପ୍ରଗତିର ପଥ ପ୍ରତି ହସ୍ତ ନିର୍ଦ୍ଦେଶ କରୁ ନାହିଁ, ତାହାର ବାର୍ତ୍ତା ଯେପରି ସମଗ୍ର ମଣିଷଜାତି ପାଇଁ ସଂକୀର୍ଣ୍ଣତାର ନିରାପଦ ଭିଟାମାଟି ଛାଡ଼ି ବିସ୍ତାରିତ ହୁଏ ! ଅତିକ୍ରମି ଯାଅ ସମୁଦ୍ର ପରେ ସମୁଦ୍ର ! ତା' ହେଲେ ଆବିଷ୍କାର କରିପାରିବ ତୁମ ଭିତରେ, ଲୁଚି ରହିଥିବା ଦୁଃସାହସିକ ଉଦ୍ଦାମ, ସ୍ୱାଭିମାନୀ ମଣିଷଟିକୁ !

## ବୁଲ୍‌–ଫାଇଟ୍ ରକ୍ତର କବିତା

ବୁଲ-ଫାଇଟ୍ ଆରମ୍ଭ ହେବାର ଥାଏ ଅପରାହ୍ନ ତିନିଟାରେ । ପ୍ରାୟ ଘଣ୍ଟାଏ ଆଗରୁ ପହଞ୍ଚିଲି ବୁଲ୍‌–ରିଙ୍ଗ୍ ଅର୍ଥାତ୍ ବୁଲ୍‌ଫାଇଟ୍ ପାଇଁ ନିର୍ମିତ ଗୋଲାକାର ପ୍ରକାଣ୍ଡ ଷ୍ଟାଡ଼ିୟମ୍‌ରେ । ବୁଲ୍‌–ରିଙ୍ଗ୍‌ରେ ଖୁବ୍ ବେଶି ଗହଳି ନ ଥିଲା – ଅପେକ୍ଷମାଣ ନରନାରୀଙ୍କ ମଧ୍ୟରୁ ଆପାତତଃ ଅଧିକାଂଶ ଥିଲେ ଟୁରିଷ୍ଟ । ବୁଲ୍ ରିଙ୍ଗର ସିଟ୍‌ଗୁଡ଼ିକ କାଷ୍ଠନିର୍ମିତ ଥିବାରୁ କେହି ଜଣେ ଅଳ୍ପ କେତୋଟି ପେସିକା ବିନିମୟରେ ଯୋଗାଇ ଦେଉଥିଲା କୁଶନ୍ । ଚନାଚୁର, କୋଲଡ୍‌ଡ୍ରିଙ୍କ ଇତ୍ୟାଦିର ବିକ୍ରେତାମାନେ ବାରମ୍ବାର 'ଆପଣଙ୍କର ଦରକାର କି' ବୋଲି ପଚାରୁଥିଲେ ସ୍ପେନୀୟ ଭାଷାରେ । କୌଣସି ଭାରତୀୟ ମେଳା ବା ଉତ୍ସବର ପରିବେଶ । ବୁଲ୍ ରିଙ୍ଗ୍ ଭିତରେ ପ୍ରବେଶ କରିବାର ପରମୁହୂର୍ତ୍ତରୁ ହିଁ ଅନୁଭବ କରିଥାଏ ଅସ୍ୱସ୍ତି ! ଆଘ୍ରାଣ କରୁଥାଏ କିପରି ଗୋଟାଏ ବାସ୍ନା – ମୃତ୍ୟୁ, ରକ୍ତ, ଶୌର୍ଯ୍ୟ ଓ ନିଷ୍ଠୁରତାର ବାସ୍ନା ହୁଏତ !

ସ୍ପେନ୍‌ର ଜାତୀୟ କ୍ରୀଡ଼ା ବୁଲଫାଇଟ୍ – ଅର୍ଥାତ୍ ଷଣ୍ଢ ସଙ୍ଗେ ମଣିଷର ଲଢ଼େଇ ! ଏଇ ଦୁଃସାହସିକ କ୍ରୀଡ଼ା ସମ୍ପର୍କରେ ପୂର୍ବରୁ ଅବଶ୍ୟ ଜାଣିଥିଲି । ମୋର ପ୍ରିୟ ସ୍ପେନୀୟ କବି ଲୋରକାଙ୍କ ଷଣ୍ଢ ଲଢ଼ାଳୀ ବା ମାଟାଡ଼ୋରମାନଙ୍କ ଉପରେ ଚମତ୍କାର କବିତାସବୁ ପଢ଼ିଥିଲି ମଧ୍ୟ । ଘଟଣାକ୍ରମେ ସେଇ ବୁଲ୍ ଫାଇଟ୍ ପ୍ରତ୍ୟକ୍ଷ କରିବାର ସୁଯୋଗ ଆଜି ପହଞ୍ଚିଥିଲା – ବାର୍ସୋଲୋନାର ପ୍ରସିଦ୍ଧ, ବୁଲ୍‌ରିଙ୍ଗ୍‌ରେ । ଉତ୍ସାହ, ଆନନ୍ଦ, ଭୟରେ ଅସ୍ୱାଭାବିକ ମୋ ମାନସିକ ଅବସ୍ଥା ।

ବୁଲ୍‌–ରିଙ୍ଗର ଗ୍ୟାଲେରୀ ଅର୍ଥାତ୍ ସବୁଠାରୁ ଶସ୍ତା ସିଟ୍‌ମାନଙ୍କରେ ବସି ଯେଉଁମାନେ 'ଓଲେ' 'ଓଲେ' ଚିତ୍କାର କରୁଥିଲେ, ସେମାନେ ଥିଲେ ସ୍ଥାନୀୟ ତରୁଣକୁଳ । ସେମାନେ ମଝିରେ ମଝିରେ ଗୀତ ମଧ୍ୟ ଗାଉଥିଲେ ଓ କୌଣସି କୌଣସି ମାଟାଡ଼ୋରର ନାମ ଉଚ୍ଚାରଣ କରୁଥିଲେ ବାରମ୍ବାର । ସ୍ପେନୀୟ ଦୁର୍ଦ୍ଧର୍ଷତା, ନିଷ୍ଠୁରତା ଓ ବୀରତ୍ୱର ପ୍ରତୀକ ବୁଲ୍‌ଫାଇଟ୍ । ତରୁଣମାନଙ୍କ ଉତ୍ସାହ ନିର୍ଭୁଲ ଭାବରେ ତାହା ହିଁ ପ୍ରକାଶ କରୁଥିଲା । × × ×

ଯଥାସମୟରେ ଆରମ୍ଭ ହେଲା ବୁଲ୍‌–ଫାଇଟର ପ୍ରକ୍ରିୟା । ବହୁ ନିୟମ, ପାରମ୍ପରିକ ପ୍ରଥା ଉପରେ ଆଧାରିତ ଏଇ ବୁଲ୍‌–ଫାଇଟ୍ – ଯାହାର ପରିଣତ ଏକ ପରେ ଏକ ଦୁର୍ଦ୍ଦାନ୍ତ ଷଣ୍ଢଟିଏମାନଙ୍କର ହତ୍ୟା କିମ୍ବା ସାମାନ୍ୟ ତ୍ରୁଟିରେ ମାଟାଡ଼ୋରର ରକ୍ତାକ୍ତ ଆଘାତପ୍ରାପ୍ତ କିମ୍ବା ଶୋଚନୀୟ ମୃତ୍ୟୁ ।

ବୁଲ୍-ରିଙ୍ଗର ଗୋଟିଏ ପାର୍ଶ୍ୱରେ ସ୍ପେନ୍‌ର ଜାତୀୟ ପତାକା । ପୃଷ୍ଠଭୂମିରେ ଆସି ନ ଥିଲେ ସଭାପତି । ସେ ହିଁ ନିୟନ୍ତ୍ରଣ କରୁଥା'ନ୍ତି ସମଗ୍ର କାର୍ଯ୍ୟକ୍ରମ । ପ୍ରଥମେ ଧଳାରଙ୍ଗର ରୁମାଲଟିଏରେ ସେ ଉତ୍ସବ ଆରମ୍ଭର ସୂଚନା ଦେଲେ । ନିର୍ଦ୍ଦିଷ୍ଟ ଛନ୍ଦରେ ବାଜିଉଠିଲା ଟ୍ରମ୍ପେଟ୍ । ମାଟାଡ଼ୋରମାନେ ପ୍ରବେଶ କଲେ ମଇଦାନ ଉପରକୁ । ତାଙ୍କ ପଶ୍ଚାତ୍‌ରେ ପିକାଡ଼ୋର ଅର୍ଥାତ୍ ବର୍ଚ୍ଛାହସ୍ତ ଅଶ୍ୱାରୋହୀ ଓ ଅନ୍ୟାନ୍ୟ ସହକାରୀମାନେ । ସେମାନେ ହସ୍ତରେ ଭୂମି ସ୍ପର୍ଶ କରି ସମ୍ମାନ ଜଣାଇଲେ ସଭାପତିଙ୍କୁ । ଜଣେ ମାଟାଡ଼ୋର ସାଙ୍ଗରେ ଆଣିଥିବା ଟୋପିଟିକୁ ଦର୍ଶକମାନଙ୍କ ମଧ୍ୟରୁ ଜଣେ ତରୁଣୀଙ୍କ ହସ୍ତକୁ ବଢ଼ାଇଦେଲେ । ଯୋଦ୍ଧାମାନେ ସୁନ୍ଦରୀ ତରୁଣୀଙ୍କ ପ୍ରେମ ପ୍ରତ୍ୟାଶାରେ ରଣକ୍ଷେତ୍ରରେ ଅବତୀର୍ଣ୍ଣ ହେବା ଏକ ମଧ୍ୟଯୁଗୀୟ ପରମ୍ପରା । ବୁଲ-ଫାଇଟ୍ ପ୍ରାରମ୍ଭିକ ଏଇ ପ୍ରଥାରେ ସେଇ ପରମ୍ପରା ହିଁ ସୂଚିତ ।

କେତେଜଣ ସହକାରୀ ମଇଦାନ ପରିଷ୍କାର କରୁଥା'ନ୍ତି । ମାଟାଡ଼ୋରମାନଙ୍କୁ ଉତ୍ସାହ-ଉଦ୍ଦୀପନା ଯୋଗାଇ ଦେବାପାଇଁ ବର୍ଷି ଚାଲିଥାଏ ଦର୍ଶକମାନଙ୍କ କରତାଳି । ମଧ୍ୟଯୁଗୀୟ ବୀର ପୋଷାକ ପରିଧାନରେ ମାଟାଡ଼ୋରମାନେ ଅପେକ୍ଷା କରୁଥା'ନ୍ତି ଦୁର୍ଦ୍ଧର୍ଷ ଷଣ୍ଢମାନଙ୍କୁ ମୁକାବିଲା କରିବାପାଇଁ । ବର୍ତ୍ତମାନ ଭିନ୍ନ ଛନ୍ଦରେ ବାଜି ଉଠିଲା ଟମ୍ପେଟ୍ । ବୁଲ୍-ରିଙ୍ଗର ଗୋଟିଏ ଦ୍ୱାର ଖୋଲିଲା ଓ ପ୍ରଚଣ୍ଡ ବେଗରେ ମଇଦାନ ମଧ୍ୟକୁ ପ୍ରବେଶ କଲା ଏକ ଭୟଙ୍କର କଳା ମଚ୍ ମଚ୍ ହିଂସ୍ର ଷଣ୍ଢ । ମାଟାଡ଼ୋରର ଜଣେ ସହକାରୀ କେପ୍ ବାଲାଲ୍ଲ ରଙ୍ଗର କନା ଖଣ୍ଡିଏ ଦେଖାଇ ଷଣ୍ଢକୁ ଅଧିକ ଉତ୍ତେଜିତ କରୁଥାଏ । କିନ୍ତୁ ଷଣ୍ଢ ନିକଟକୁ ଆସିବା ଆଗରୁ କ୍ଷୁଦ୍ର କୋଠରିଟି ମଧ୍ୟରେ ଲୁଚି ଯାଉଥାଏ । କ୍ରୋଧ ଓ ଲାଲ ରଙ୍ଗର ଆକର୍ଷଣରେ ଅନ୍ଧ ପ୍ରାୟ ଷଣ୍ଢଟି ଦ୍ରୁତ ଗତିରେ ବେଶ୍ କିଛିଥର ଘୂରିଗଲା ବୁଲ୍-ରିଙ୍ଗ ଚାରିକଡ଼େ ।

ବର୍ତ୍ତମାନ ସଙ୍କଟ ମୁହୂର୍ତ୍ତ ଉପସ୍ଥିତ । ପ୍ରଥମ ମାଟାଡ଼ୋର ବାହାରିଲା ଷଣ୍ଢ ସାମ୍ନାକୁ – ଷଣ୍ଢ ସାମନାରେ ଖୋଲିଧରିଲା ଲାଲରଙ୍ଗର କନା ଖଣ୍ଡେ । ଷଣ୍ଢ କନା ଉପରେ ଆକ୍ରମଣ କରନ୍ତେ ଘୁଞ୍ଚିଯାଉଥାଏ ମାଟାଡ଼ୋରଟି ଆଶ୍ଚର୍ଯ୍ୟ କୌଶଳରେ । ବହୁବର୍ଷର ଅଭ୍ୟାସରେ ସେ ଆୟତ୍ତ କରିଛି ଏଇ କୌଶଳ । ଲାଲକନାଟିକୁ ମାଟାଡ଼ୋରକୁ ଏପରି ପରିଚାଳିତ କରିବାକୁ ପଡ଼େ ଯେ, ତା' ଶରୀର କେବେ ନ ଥାଏ ସେ କନାର ପଶ୍ଚାତରେ । ଷଣ୍ଢ କନାଟିକୁ ଭୁସି ଚାଲେ ବାରମ୍ବାର ତା'ର ତୀକ୍ଷ୍ଣ ଶକ୍ତିଶାଳୀ ଶିଙ୍ଗରେ । ଯଦି ଦୈବାତ୍ ଶିଙ୍ଗ ବାଜେ ମାଟାଡ଼ୋରର ଶରୀରରେ, ତା'ପର ମୁହୂର୍ତ୍ତରେ ସେ ହୁଏ ଧୂଳିସାତ୍ ଓ ପ୍ରତିହିଂସାପରାୟଣ ଭୟଙ୍କର ଷଣ୍ଢଟି କୁଦି ପଡ଼େ ମାଟାଡ଼ୋରର ଛାତି ଉପରକୁ... ।

ସଭାପତିଙ୍କ ଧଳା ରୁମାଲର ନିର୍ଦ୍ଦେଶକ୍ରମେ ବର୍ତ୍ତମାନ ଷଣ୍ଢର ନିକଟକୁ ଆସିଲେ ଦୁଇଜଣ ପିକାଡ଼ୋର । ଷଣ୍ଢଟି ମାଟାଡ଼ୋରକୁ ଛାଡ଼ି ଆକ୍ରମଣ କଲା ପିକାଡ଼ୋରଙ୍କ

ଘୋଡ଼ାମାନଙ୍କୁ । ପିକାଡ଼ୋରମାନେ ନିର୍ଦ୍ଦିଷ୍ଟ ରୀତିରେ ସେମାନଙ୍କ ପାଇକ୍ ଅର୍ଥାତ୍ ବର୍ଚ୍ଛା ଦ୍ୱାରା ବାରମ୍ବାର ବିନ୍ଧ କଲେ ଷଣ୍ଢଟିର ଗ୍ରୀବାକୁ । ଅଧିକ ଦ୍ରୁତ ହେଲା ଟ୍ରମ୍ପେଟର ଛନ୍ଦ । ଷଣ୍ଢଟି ହୋଇଉଠିଲା ପୂର୍ବାପେକ୍ଷା ଅଧିକ ଭୟଙ୍କର – ହିଂସ୍ର ଓ ରକ୍ତାକ୍ତ ।

ପ୍ରଥମ ମାଟାଡ଼ୋର ବର୍ତ୍ତମାନ ସଭାପତିଙ୍କ ଅନୁମତି ଲୋଡ଼ିଲା ଷଣ୍ଢଟିକୁ ହତ୍ୟା କରିବା ପାଇଁ ଓ ଲାଲ କନାଟି ଷଣ୍ଢଟି ସାମନାରେ ବିଭିନ୍ନ ଭଙ୍ଗୀରେ ନଚାଇ ବିଚରା ଷଣ୍ଢଟିକୁ ନିଜ ଚାରିପାଖେ ଘୂରାଇବାରେ ଲାଗିଲା । କିଛି ସମୟ ପରେ ଭୂମି ଉପରେ ଟଳିପଡ଼ିଲା କ୍ଳାନ୍ତ, ଅବସନ୍ନ ରକ୍ତାକ୍ତ ଷଣ୍ଢଟି । ଏହା ହିଁ ପରମ ବିଜୟ ମୁହୂର୍ତ୍ତ । ଦର୍ଶକମାନଙ୍କ କରତାଳି, ରୁମାଲଉଡ଼ା ଓ 'ଓଲେ' 'ଓଲେ' ଚିତ୍କାରରେ କମ୍ପି ଉଠିଲା ବୁଲ୍‌ରିଙ୍ଗ୍ । ମାଟାଡ଼ୋର ଗୋଟିଏ ହାତରେ ଟୋପି ଅନ୍ୟ ହାତରେ ଲାଲ କନାଟି ଧରି ବୀରଦର୍ପରେ ଦର୍ଶକ ମଣ୍ଡଳିକୁ ଜଣାଇଲା ଅଭିନନ୍ଦନ ।

ଅପେକ୍ଷାରତ ସହକାରୀମାନଙ୍କ ମଧ୍ୟରୁ ଏଣେ ଏକ ତୀକ୍ଷ୍ଣ ଛୁରିକାରେ ଭୁସିଦେଲା ଷଣ୍ଢଟିର ମଥା । ଦୁଇଜଣ ଖଣ୍ଡେ ଦଉଡ଼ିଲେ ବାନ୍ଧି ପକାଇଲେ ଷଣ୍ଢଟାକୁ ଓ କେତୋଟି ସୁସ୍ଥ ସବଳ ଘୋଡ଼ା ଦ୍ୱାରା ଚାଳିତ ଗାଡ଼ିରେ ଷଣ୍ଢଟିକୁ ଘୋଷାରି ଘୋଷାରି ନିଆଗଲା ମଇଦାନ ବାହାରକୁ ।

ତା'ପରେ ପୁଣି ସମତଳ କରାଗଲା ମଇଦାନର ଚଟାଣ । ପୁଣି ନିର୍ଦ୍ଦିଷ୍ଟ ରୀତିରେ ବାଜିଉଠିଲା ଟ୍ରମ୍ପେଟ୍ । ବର୍ତ୍ତମାନ ଆରମ୍ଭ ହେଲା ଦ୍ୱିତୀୟ ଷଣ୍ଢଟିକୁ ଦ୍ୱିତୀୟ ମାଟାଡ଼ୋର ହତ୍ୟା କରିବାର ପ୍ରକ୍ରିୟା ! × × ×

ଶୁଣିଲି , ଗୋଟିଏ ପରେ ଗୋଟିଏ ସାତଟି ଷଣ୍ଢକୁ ହତ୍ୟା କରାଯିବ ସେଦିନ । ପ୍ରଥମ ଷଣ୍ଢଟିକୁ ହତ୍ୟା କରିବାକୁ ଲାଗିଲା ପନ୍ଦର ମିନିଟ୍ । ପ୍ରାୟ ଦୁଇ ଘଣ୍ଟା ହତ୍ୟା ବିଭୀଷିକା ଉପଭୋଗ କରିବାର ଭୟଙ୍କର ସୁଯୋଗ ! ଦ୍ୱିତୀୟ ଷଣ୍ଢଟିର ହତ୍ୟା ପରେ ମୁଁ ଅସୁସ୍ଥ ଅନୁଭବ କଲି । ଭୟ ହେଲା, ଯେକୌଣସି ମୁହୂର୍ତ୍ତରେ ହୁଏତ ମୁଁ ଅଚେତ ହୋଇ ପଡ଼ିବି ଏବଂ ସମ୍ପୂର୍ଣ୍ଣ ଅପରିଚିତ ଏଇ ବାର୍ସେଲୋନା ମହାନଗରୀରେ ହୁଏତ ଜଣେ ବି ଜାଣିବ ନାହିଁ ମୋର ପରିଚୟ !!

ଶହ ଶହ ଦର୍ଶକ କିନ୍ତୁ ତାଜା ରକ୍ତର ଏଇ ହୋରିଖେଳରେ ବେଶ୍ ଉଲ୍ଲସିତ ମନେହେଉଥା'ନ୍ତି । ଜଣେ ସ୍ତ୍ରୀଲୋକ ଅବଶ୍ୟ ବୁଲ ଫାଇଟ୍ ମଝିରେ ଉଚ୍ଚସ୍ୱରରେ କାନ୍ଦି ଉଠିଲା ଏବଂ ମଧ୍ୟବୟସ୍କ ପୁରୁଷଟିଏ ତା' ସିଟ୍‌ରେ ଛିଡ଼ାହୋଇ ଚିତ୍କାର କଲା, 'ବନ୍ଦକର ଏ ଭାଣ୍ଡାମି', 'ବନ୍ଦକର', କିମ୍ବା ସେହିପରି କିଛି । ସ୍ଥାନୀୟ 'ପୋଲିସିଆ' ତୁରନ୍ତ ଟାଣି ଟାଣି ବୁଲ୍‌ରିଙ୍ଗ ବାହାରକୁ ଘେନିଗଲେ ସେ ସ୍ତ୍ରୀ ଓ ପୁରୁଷ ଲୋକଟିକୁ ।

ମୋ ଦକ୍ଷିଣ ସିଟ୍‌ରେ ଆଇସ୍‌କ୍ରିମ ଚାଟୁଥିବା କଳା ଆମେରିକାନ୍‌ଟି ମୋତେ ଚାହିଁ ମନ୍ତବ୍ୟ ଦେଲା, 'ଭଲ ନ ଲାଗୁଛି ତ ତମକୁ କିଏ କହିଥିଲା ଏଠାକୁ ଆସିବାକୁ ? ପୁଣି ଚିତ୍କାର କରି ଅନ୍ୟମାନଙ୍କ ଆନନ୍ଦରେ ବାଧା ଦେବାକୁ ତମେ କିଏ ?

ଅସ୍ୱସ୍ତିରେ ମୁଁ ଅସ୍ଥିର ଅନୁଭବ କରୁଥାଏ । କଳା ଆମେରିକାନ୍‌ଟିକୁ କହିଲି, 'ଆପଣଙ୍କ ମନ୍ତବ୍ୟ ଠିକ୍ ।' ଅଳ୍ପ ସମୟ ପୂର୍ବରୁ କଳା ଆମେରିକାନ୍‌ଟିକୁ ମୋ ହୋଟେଲର ଠିକଣା ଜଣାଇ ସାରିଥିଲି । ଯଦି ଦୈବାତ୍ ଏଇ ବୁଲ୍‌ରିଙ୍ଗରେ ଅଚେତ ହୋଇପଡ଼େ, ଅନ୍ତତଃ ଜଣେ ତ କେହି ମୋ ହୋଟେଲକୁ ଖବର ଦେଇପାରିବ !! × × ×

ଦ୍ୱିତୀୟ ଷଣ୍ଢଟିର ହତ୍ୟା ପରେ ମୁଁ ଛାଡ଼ିଲି ବୁଲ୍‌ରିଙ୍ଗ । ଟ୍ୟାକ୍ସିରେ ହୋଟେଲ କୋଟେଇରେ ପହଞ୍ଚିଲା ବେଳକୁ ମଥା ଘୂରାଉଛି ଦେହରେ ଟେମ୍ପରେଚର ।

ବେଶ୍ କିଛି ଘଣ୍ଟା ପଡ଼ିରହିଛି ଶେଜ ଉପରେ । ରାତି ପ୍ରାୟ ଦଶଟାରେ ଶିଡ଼ିରେ ତଳକୁ ଓହ୍ଲାଇ ଆସିଲି ଲାଉଞ୍ଜକୁ । କିଛି ସମୟ ଟେଲିଭିଜନ ଦେଖି ମନ ଭୁଲାଇବା ଥିଲା ଉଦ୍ଦେଶ୍ୟ ।

ଟେଲିଭିଜନରେ କିନ୍ତୁ ଚାଲିଥିଲା ସେଇ ବୁଲ ଫାଇଟ୍‌ର ଛବି । ତରୁଣ ମାଟାଡ଼ର ଜଣେ ବର୍ଛା ପରେ ବର୍ଛା ଭୁସିଚାଲିଛି କଳା ମଚ ମଚ ଷଣ୍ଢଟିର ପିଠି ଓ ବେକ ଉପରେ । ପିଚ୍ ପିଚ୍ ରକ୍ତ ଯେମିତି ଛିଟ୍‌କି ପଡୁଚି ଟେଲିଭିଜନ ପର୍ଦ୍ଦା, ଚଟାଣର ଗାଲିଚା – ଏପରିକି ଦର୍ଶକମାନଙ୍କ ପୋଷାକ, ମୁହଁ ଓ ପାଟି ଉପରେ ।

ଅବିଳମ୍ବେ ଫେରିଆସିଲି ମୋ କୋଠରିକୁ – ମୋ ଶେଜ ଉପରକୁ ।

ଅସୁସ୍ଥତା ସତ୍ତ୍ୱେ ତା' ପରଦିନ ହିଁ ମୁଁ ଛାଡ଼ିଥିଲି ସେଭ୍... !!



# ଗଟନ୍‌ବର୍ଗ୍ ଡାଏରୀ
## ଲର୍‌ସ୍ ପରିବାର

୧୯୮୪ ଜୁନ୍ ତୃତୀୟ ସପ୍ତାହରେ ଗଟନ୍‌ବର୍ଗ୍ ବିଶ୍ୱବିଦ୍ୟାଳୟ ଦ୍ୱାରା ଆୟୋଜିତ ଏକ ଆନ୍ତର୍ଜାତିକ ସେମିନାର୍‌ରେ ଯୋଗଦେବାର ସୁଯୋଗ ଘଟିଥାଏ । ବିଭିନ୍ନ ଦେଶର ପ୍ରତିନିଧିମାନଙ୍କୁ ଗୋଟିଏ ସନ୍ଧ୍ୟାରେ ଡିନର୍ ପାଇଁ ନିମନ୍ତ୍ରଣ କରୁଥାନ୍ତି ସ୍ଥାନୀୟ ଲୋକେ । ମୁଁ ନିମନ୍ତ୍ରଣ ପାଇଥାଏ ଶ୍ରୀମତୀ ଲର୍‌ସ୍‌ଙ୍କଠାରୁ । ଶ୍ରୀମତୀ ଲର୍‌ସ୍ ସ୍ଥାନୀୟ କୌଣସି ବିଦ୍ୟାଳୟରେ ଇଂରାଜୀ ଶିକ୍ଷୟିତ୍ରୀ । ଭାରତୀୟ ଜୀବନ ଏବଂ ସାହିତ୍ୟ ସମ୍ପର୍କରେ ତାଙ୍କର ବେଶ୍ ଆଗ୍ରହ । ହୁଏତ ସେଇଥିପାଇଁ ମୋତେ ତାଙ୍କର ନିମନ୍ତ୍ରଣ ।

ଯଥାସମୟରେ ଶ୍ରୀମତୀ ଲର୍‌ସ୍ କାର୍‌ଯୋଗେ ମୋତେ ତାଙ୍କ ଗୃହକୁ ଘେନିଗଲେ । ଗଟନ୍‌ବର୍ଗ୍ ନଗର ଉପକଣ୍ଠରେ ହାଉସ୍ ନାମଧେୟ ଏକ ଅତ୍ୟନ୍ତ ପରିଚ୍ଛନ୍ନ ଅଞ୍ଚଳରେ ତାଙ୍କର ଉଜ୍ଜ୍ୱଳ ଶୁଭ୍ରରଙ୍ଗର ବାସଗୃହ । ଗୃହ ଚତୁର୍ଦ୍ଦିଗରେ ସବୁଜ ବୃକ୍ଷରାଜି । ଶାନ୍ତ, ନୀରବ, ନିର୍ମଳ ପରିବେଶ ।

ମୋ ପାଇଁ ଅପେକ୍ଷା କରିଥିଲେ ଶ୍ରୀଯୁକ୍ତ ଲର୍‌ସ୍ ଓ ତାଙ୍କର ଦୁଇଟି କନ୍ୟା । ଶ୍ରୀମତୀ ଲର୍‌ସ୍ ମୋତେ ସେମାନଙ୍କ ସହ ପରିଚୟ କରାଇଦେଲେ । ଶ୍ରୀଯୁକ୍ତ ଲର୍‌ସ୍ ସ୍ଥାନୀୟ ହସ୍ପିଟାଲ୍‌ରେ ଡାକ୍ତର । ଝିଅ ଦୁଇଟି – ବେଟୀ ଓ ଏକା । ପୁଅ ଡେଭିଡ୍ କୌଣସି ସ୍କୁଲ୍ ବୋର୍ଡ଼ିଙ୍ଗ୍‌ରେ ରହେ । କାନ୍ଥରେ ତିନୋଟି ଛୁଆଙ୍କର ତିନୋଟି ବୃହଦାକାର ପେଣ୍ଟିଂ ।

ୟୁରୋପୀୟ ଆତିଥେୟତାର ସ୍ୱରୂପ ସର୍ବତ୍ର ଏକାଭଳି । ପ୍ରଥମେ ମଦ୍ୟ ବା କୋଲ୍ଡ଼ ଡ୍ରିଙ୍କ୍, ତା' ପରେ ସୁପ୍, ପାଉଁରୁଟି, ମେନ୍‌ଡ଼ିସ୍, ପୁଡ଼ିଂ, କଫି ଓ ଦୀର୍ଘ ଆଲୋଚନା ।

ଶ୍ରୀମତୀ ଲରସ୍ ଅଳ ମାଛ ଓ ଧଳାସସ୍ ମିଶାଇ ପ୍ରସ୍ତୁତ କରିଥିଲେ ସୁଇଡେନ୍‌ର ଏକ ଅତ୍ୟନ୍ତ ଜନପ୍ରିୟ ଡିସ୍ । ସେଦିନ ଆଲୋଚନା ଅମୃତସରଠାରୁ ଆରମ୍ଭ କରି ଅନୁବାଦ ସାହିତ୍ୟ ପର୍ଯ୍ୟନ୍ତ ବିଭିନ୍ନ ଦିଗରେ ପ୍ରସାରିତ ହେଲା । ବେଶ୍ କିଛି ବିଳମ୍ବରେ ଶ୍ରୀଯୁକ୍ତ ଲର୍‌ସ୍ ମୋତେ ଛାଡ଼ିଦେଇ ଗଲେ ମୁଁ ରହୁଥିବା ହଷ୍ଟେଲ୍ 'ଓଷ୍ଟ୍ରନ୍‌ପାର୍'ରେ । x x x

ବିଲାତ ତଥା ୟୁରୋପ୍‌ରେ ବହୁ ପରିବାରଙ୍କ ଆତିଥେୟତାର ସୌଭାଗ୍ୟ ଲାଭ କରିଛି । କିନ୍ତୁ ଲର୍‌ସ୍ ପରିବାର ପ୍ରତି ମୋର ଶ୍ରଦ୍ଧା ସ୍ୱତନ୍ତ୍ର । ତା'ର କାରଣ ବେଟୀ ଓ ଏକା – ଲର୍‌ସ୍ ଦମ୍ପତିଙ୍କ କନ୍ୟାଯୁଗଳ ।

ବେଟୀ ଓ ଏକାଙ୍କ ବୟସ ଆନୁମାନିକ ବାର ଓ ଦଶ । ସେମାନଙ୍କ ରଙ୍ଗ କଳା । ସେମାନେ ଲର୍‌ସ୍ ଦମ୍ପତିଙ୍କ ପାଳିତାକନ୍ୟା । ଖୁବ୍ ଛୋଟ ଥିବା ସମୟରେ ସେମାନେ ପିତୃମାତୃହୀନ ହୋଇ ପଡ଼ିଥିଲେ । ଦକ୍ଷିଣ ଭାରତରୁ ସେମାନଙ୍କୁ ସୁଇଡେନ୍‌କୁ ଘେନିଗଲେ ଶ୍ରୀଯୁକ୍ତ ଲର୍‌ସ୍ । ଏକଦା କିଛି ମାସ ଶ୍ରୀଯୁକ୍ତ ଲର୍‌ସ୍ ଭାରତରେ କଟାଇଥିଲେ ଏବଂ ସେଇ ଅବସରରେ ପରିଚିତ ହୋଇଥିଲେ ଭାରତୀୟ ଦାରିଦ୍ର୍ୟ ଓ ଅନାଥ ଶିଶୁମାନଙ୍କ ମର୍ମନ୍ତୁଦ ଜୀବନ ସଙ୍ଗେ ।

ବେଟୀ ଓ ଏକାଙ୍କ ମନରେ ଭାରତର ସ୍ମୃତି କ୍ଷୀଣ । ସେମାନେ କୌଣସି ଭାରତୀୟ ଭାଷା ଜାଣନ୍ତି ନାହିଁ । ଚମଡ଼ାର ରଙ୍ଗ କଳା ନ ହୋଇଥିଲେ ସେମାନେ ଭାରତୀୟ ବୋଲି କୌଣସି ପ୍ରମାଣ ହିଁ ନ ଥା'ନ୍ତା ।

ସ୍ୱୀୟ ସନ୍ତାନ ଡେଭିଡ୍ ଭଳି ବେଟୀ ଓ ଏକାଙ୍କ ଯତ୍ନ ନିଅନ୍ତି ଲରସ୍ ଦମ୍ପତି । ବେଟୀ ଓ ଏକାଙ୍କୁ ସେମାନଙ୍କ ଜନ୍ମଭୂମିଠାରୁ ସମ୍ପୂର୍ଣ୍ଣ ବିଚ୍ଛିନ୍ନ କରିବାକୁ ଚାହାନ୍ତି ନାହିଁ ସେମାନେ । ତେଣୁ ସେମାନଙ୍କ ପରିକଳ୍ପନା – ନିକଟ ଭବିଷ୍ୟତରେ ସେମାନେ ବେଟୀ ଓ ଏକାଙ୍କ ସହିତ ଭାତର ଭ୍ରମଣରେ ଆସିବେ ।

'ଗୋରା ଲୋକଟି କଳା ଲୋକଠାରୁ ଉତ୍କୃଷ୍ଟ' – ଏଇ ଅନ୍ଧବିଶ୍ୱାସ ଦ୍ୱାରା କବଳିତ ୟୁରୋପ୍ ମହାଦେଶରେ ଲର୍‌ସ୍–ଦମ୍ପତି ଏକ ଉଜ୍ଜ୍ୱଳ ବ୍ୟତିକ୍ରମ । ଦେଶ, କାଳ ଓ ବର୍ଣ୍ଣବିଭେଦ ସତ୍ତ୍ୱେ ସମଗ୍ର ମଣିଷ ଜାତି ଗୋଟିଏ ପରିବାର – ଲର୍‌ସ୍ ଦମ୍ପତି ନୀରବରେ ତାହା ହିଁ ଯେପରି ଘୋଷଣା କରି ଚାଲିଛନ୍ତି !



## ଉତ୍ତର ୟୁରୋପ୍ ଓ ଓଡ଼ିଶା : ସମ୍ପର୍କର ସମ୍ଭାବନା

ପଶ୍ଚିମ ସୁଇଡେନ୍‌ରେ ଅସଂଖ୍ୟ ପାହାଡ଼, ହ୍ରଦ ଓ ଜଙ୍ଗଲରେ ଛୋଟ ଗାଁ'ଟିଏ – ଭିଟଲିକ୍ । କେବେ ଆଦିମ ଯୁଗରେ ପ୍ରସ୍ତରଯୁଗର ମଣିଷ ସ୍ଥାପନ କରିଥିଲା ଗାଁ'ଟି । ଆଜି ଅବଶ୍ୟ ପ୍ରସ୍ତର ଯୁଗର ମଣିଷ ନାହାନ୍ତି; କିନ୍ତୁ ଦୁଇଟି ଅନୁଚ୍ଚ ପାହାଡ଼ ଉପରେ ତଥାପି ସ୍ପଷ୍ଟ ସେମାନଙ୍କ ଦ୍ୱାରା ଖୋଦିତ ଅନେକଗୁଡ଼ିଏ ଚିତ୍ର (rock carvings) । ସେଇ ପ୍ରସ୍ତର ଚିତ୍ରଗୁଡ଼ିକ ଦେଖିବା ପାଇଁ ଭିଟଲିକ୍‌ରେ ପର୍ଯ୍ୟଟନକାରୀ ଓ ଗବେଷକମାନଙ୍କ ସମାଗମ ।

ଆମେ କେତେଜଣ ଲେଖକ ଓ ଅଧ୍ୟାପକ ଦିନଟିଏ କଟାଇଥିଲୁ ସେଇ ଗାଁ'ରେ । ଉଜ୍ଜ୍ୱଳ ପାଗରେ ଆମ ଭଳି ଅନ୍ୟାନ୍ୟ ଟୁରିଷ୍ଟମାନେ ସେଠାରେ ଇତସ୍ତତଃ ହେଉଥିଲେ; ସ୍ଥାନୀୟ କ୍ଷୁଦ୍ର ଦୋକାନଟିରେ ସୋଭେନିର୍ (ମୁଖ୍ୟତଃ ପ୍ରସ୍ତର ଚିତ୍ରର ଫଟୋଗ୍ରାଫି ଓ ପେଣ୍ଟିଂ), କୋଲଡ୍ ଡ୍ରିଙ୍କ ପ୍ରଭୃତିର ବେଶ୍ କିଣା ବିକା ଚାଲିଥିଲା ।

ଭିଟଲିକ୍ ଗାଁଆଟି ତାନମ୍ ପ୍ୟାରିସ୍ ବା ଜିଲ୍ଲାର ଗୋଟିଏ ଅଂଶ । ସମଗ୍ର ଡେନ୍‌ମାର୍କ, ନରଓ୍ୱେ ଓ ସ୍ୱିଡ଼େନ୍ ଅର୍ଥାତ୍ ସ୍କାଣ୍ଡିନେଭିୟାନ୍ ଅଞ୍ଚଳର ପର୍ଯ୍ୟଟନ ମାନଚିତ୍ରରେ ତାନମ୍ ଏକ ପରିଚିତ ନାମ । ଏଇ ଅଞ୍ଚଳରେ ଆଦିମ ମଣିଷଦ୍ୱାରା ଖୋଦିତ ଚାରିଶହଟି ପ୍ରସ୍ତରଚିତ୍ର ଦେଖିବାକୁ ମିଳେ ।

ସପ୍ତଦଶ ଶତାବ୍ଦୀର ଆରମ୍ଭ ଯାଏଁ ତାନମ୍ ସମ୍ପର୍କରେ ବାହାର ଜଗତ ଅନ୍ଧାରରେ ହିଁ ଥିଲେ । ୧୬୨୭ ଖ୍ରୀଷ୍ଟାବ୍ଦରେ ଅମ୍ଲୋର ଜଣେ ଭ୍ରମଣକାରୀ ପ୍ରଥମେ ତାନମ୍ ସମ୍ପର୍କରେ ଲେଖିବା ପରେ ସେଠାକୁ ଛୁଟିଲା ଦର୍ଶକ ଓ ଗବେଷକମାନଙ୍କ ସ୍ରୋତ । ସଂପ୍ରତି ତାନମ୍ ତଥା ଭିଟଲିକ୍‌ର ପ୍ରସ୍ତର ଚିତ୍ରଗୁଡ଼ିକ ସମ୍ପର୍କରେ ବହୁ ମୂଲ୍ୟବାନ୍ ତଥ୍ୟ ଆବିଷ୍କୃତ ହୋଇ ପାରିଛି ।

ପାହାଡ଼ ଉପରେ ଆଦିମ ମଣିଷ କାହିଁକି ଖୋଦନ କରିଥିଲା ଏଇ ଚିତ୍ରଗୁଡ଼ିକ ? ଏହାର ଉଦ୍ଦେଶ୍ୟ ଥିଲା ଅବସର ବିନୋଦନ ନା ଏଇ ଚିତ୍ରଗୁଡ଼ିକ ଏକପ୍ରକାର ବର୍ଣ୍ଣମାଳା (Picture-writing) ? ଏଇ ଚିତ୍ରଗୁଡ଼ିକ ସହିତ ଆଦିମ ମଣିଷର ଧର୍ମ, ବିଶ୍ୱାସ ଓ ମନ୍ତ୍ରଯନ୍ତ୍ରର କିଛି ସମ୍ପର୍କ ଥିଲା କି ? ନୃତତ୍ତ୍ୱବିଦ୍‌ମାନେ ଏ ସମ୍ପର୍କରେ ଏକ ସ୍ଥିର ସିଦ୍ଧାନ୍ତରେ ପହଞ୍ଚିବା ତଥାପି ସମ୍ଭବ ହୋଇ ନାହିଁ ।

ଭିଟଲିକ୍ ଗାଆଁରେ ଦୁଇଟି ଅନୁଚ୍ଚ ପାହାଡ଼ ଉପରେ ଆମେ ଦେଖି ଥିବା ଚିତ୍ରଗୁଡ଼ିକ ମଧ୍ୟରୁ ଅଧିକାଂଶ ସ୍ପଷ୍ଟ ଓ ସେମାନଙ୍କ ରେଖାଗୁଡ଼ିକ ଉପରେ ଏକପ୍ରକାର ନାଲିରଙ୍ଗ ମଡ଼ାଯାଇଛି । ଚିତ୍ରର ରେଖାଗୁଡ଼ିକୁ ସ୍ପଷ୍ଟ କରିବା ପାଇଁ ନିକଟ ଅତୀତରେ ଏ ରଙ୍ଗ ମଡ଼ା ଯାଇଥିବା ନିଶ୍ଚିତ । ଚିତ୍ରଗୁଡ଼ିକ ଉପରେ କୌଣସି ଆବରଣ ନାହିଁ ଏବଂ ଖୁବ୍ ନିକଟରୁ ଚିତ୍ରଗୁଡ଼ିକ ନିରୀକ୍ଷଣ କରିବା ବା ଫଟୋଗ୍ରାଫ୍ ନେବା ଅନୁମତିସାପେକ୍ଷ ନୁହେଁ । କେତୋଟି ଚିତ୍ରର ସଂକ୍ଷିପ୍ତ ପରିଚୟ ଏହିପରି :

**ଗୋଲାକାର ଓ ଅର୍ଦ୍ଧ ଗୋଲାକାର ଗର୍ତ୍ତ** – ଏହାର ସଂଖ୍ୟା ଅନ୍ୟାନ୍ୟ ଯେକୌଣସି ଚିତ୍ରଠାରୁ ବେଶି । ଏମାନେ ଆପାତତଃ କୃଷି ବା ଶସ୍ୟ ବପନର ପ୍ରତୀକ ।

**ପାଦଚିହ୍ନ** – ଏଗୁଡ଼ିକ କୌଣସି ଦେବତାର କିମ୍ବା ମୃତ୍ୟୁର ହୋଇ ପାରନ୍ତି ।

**ସୂର୍ଯ୍ୟ** – ପ୍ରାୟ ଦଶଟି ସୂର୍ଯ୍ୟ ଚିତ୍ର ଦେଖିବାକୁ ମିଳେ । ଗୋଟିଏ ଚିତ୍ରରେ ସୂର୍ଯ୍ୟ ରଥରେ ବସିଛନ୍ତି ଓ ରଥଟି ଗୋଟିଏ ଘୋଡ଼ା (କିମ୍ବା ହରିଣ ?) ଦ୍ୱାରା ଟଣାଯାଉଛି ।

**ବୋଇତ** – ପ୍ରାୟ ନବେଟି ବୋଇତ ଚିତ୍ର ଆମେ ଦେଖିବାକୁ ପାଉ ।

**ମଣିଷ ଓ ପଶୁ** – ପ୍ରାୟ ପଚାଶଟି ମଣିଷ ଚିତ୍ର ଦେଖିବାକୁ ମିଳେ । ଏମାନେ ମୁଖ୍ୟତଃ ପୂଜକ କିମ୍ବା ଖଣ୍ଡା ବର୍ଚ୍ଛାଧାରୀ ଯୋଦ୍ଧା । ପଶୁମାନଙ୍କ ମଧ୍ୟରେ ଘୋଡ଼ା, କୁକୁର ଓ ହରିଣ ମୁଖ୍ୟ ।

ଗୋଟିଏ ଚିତ୍ରରେ ଜଣେ ମଣିଷ ସାପଟି ସମ୍ମୁଖରେ ପ୍ରାର୍ଥନା କରୁଥିବା ପରି ମନେହୁଏ ।

ଅନେକଗୁଡ଼ିଏ ଚିତ୍ର ଉତ୍ପାଦନ (fertility cult) ସହିତ ସମ୍ପର୍କିତ । ଉତ୍ପାଦନ ଦେବତାଙ୍କ ମୃତ୍ୟୁ ବା ଗ୍ରୀଷ୍ମ ଏବଂ ଶୀତ ମଧ୍ୟରେ ଯୁଦ୍ଧ ପ୍ରତୀକାତ୍ମକ ରୂପରେ ମଣିଷର ମୃତ୍ୟୁ କିମ୍ବା ମଣିଷ ମଣିଷ ମଧ୍ୟରେ ଯୁଦ୍ଧରେ ପ୍ରକାଶିତ ।

ମୋଟାମୋଟି ଖ୍ରୀଷ୍ଟପୂର୍ବ ୧୫୦୦-୪୦୦ ମଧ୍ୟରେ ଏଇ ଚିତ୍ରଗୁଡ଼ିକ ଖୋଦିତ ହୋଇଥିଲେ ବୋଲି ଅନୁମାନ କରାଯାଏ । × × ×

ପ୍ରାୟ ଦୁଇବର୍ଷ ତଳେ ଅସ୍ଲୋ ବିଶ୍ୱବିଦ୍ୟାଳୟର ନୃତତ୍ତ୍ୱ ଅଧ୍ୟାପକ ନ୍ୟୁଟ୍ ଆଡ୍ରନୁର୍ ଆସିଥିଲେ ଓଡ଼ିଶା । ଅଳ୍ପ ସମୟ ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟ ଅତିଥିଶାଳାରେ ତାଙ୍କ ସଙ୍ଗେ ଆଳାପ କରିବାର ସୁଯୋଗ ପାଇଥିଲି ।

ଅଧ୍ୟାପକ ଆଡ୍ରନୁର୍‌ଙ୍କ ଓଡ଼ିଶା ଆଗମନର ଉଦ୍ଦେଶ୍ୟ ଥିଲା ପ୍ରାୟ ଛଅହଜାର ବର୍ଷ ତଳେ ଓଡ଼ିଶାରେ ରହୁଥିବା ଆଦିମ ମଣିଷ ସମ୍ପର୍କରେ ତଥ୍ୟ ସଂଗ୍ରହ କରିବା । ଓଡ଼ିଶାର ପ୍ରାୟ ପ୍ରତି ଜିଲ୍ଲାରେ ନିଓ-ଲିଥିକ୍ ସଭ୍ୟତାର ପ୍ରମାଣ ରହିଥିବା ନୃତତ୍ତ୍ୱବିଦ୍‌ମାନେ ଆବିଷ୍କାର କରିଛନ୍ତି ।

ସୁଇଡ଼େନ୍‌ର ଭିଟଲିକ୍ ଗାଁଆରେ ଅଧ୍ୟାପକ ଅଡ୍ରନୁରଙ୍କୁ ସ୍ମରଣ କଲି । ଉତ୍ତର ୟୁରୋପ୍‌ରୁ ଓଡ଼ିଶା ଯାଏଁ ଏକଦା ଯେ ବ୍ୟାପିଗଲା ଆଦିମ ମଣିଷର ସ୍ଥିତି ଓ ସଭ୍ୟତା, ଏହା ବାସ୍ତବିକ ଆଶ୍ଚର୍ଯ୍ୟକର ଓ ରହସ୍ୟମୟ । ପୁଣି ତା'ଠାରୁ ଅଧିକ ରହସ୍ୟମୟ ଏଇ ସଭ୍ୟତା ମଧ୍ୟରେ ଅନ୍ତର୍ନିହିତ ସାମଞ୍ଜସ୍ୟ ଓ ସମାନ୍ତରଳତା । ଭିଟଲିକ୍ ପ୍ରସ୍ତର ଚିତ୍ରର ବୋଇତ, ପାଦଚିହ୍ନ, ସର୍ପ ଉପାସନା ଓ ରଥାରୂଢ଼ ସୂର୍ଯ୍ୟ ଓଡ଼ିଶାର କଳା ସ୍ଥାପତ୍ୟରେ ରୂପାୟିତ ଅନୁରୂପ ଚିତ୍ରଗୁଡ଼ିକର ସମଗୋତ୍ରୀୟ ।

କୌଣସି ଅନ୍ଧକାରାଚ୍ଛନ୍ନ ଅତୀତରେ ଉତ୍ତର ୟୁରୋପ୍ ସହିତ ଓଡ଼ିଶାର କଳା, ସଂସ୍କୃତି ଓ ବିଶ୍ୱାସର ଯୋଗସୂତ୍ରଟିଏ ଥିଲା, ଏପରି ସମ୍ଭାବନା ନିହାତି ଉଦ୍ଭଟ ନୁହେଁ । ତେବେ ଅଧ୍ୟାପକ ଆଡ୍ରନୁର୍‌ଙ୍କ ଭଳି ଗବେଷକମାନେ ଏ ସମ୍ପର୍କରେ ଅଧିକ ଆଲୋକପାତ କରିବା ଯାଏଁ ଏଇ ସମ୍ଭାବନା କେବଳ ସମ୍ଭାବନାରେ ହିଁ ରହିଥିବ !



## ସୁଇଡ଼େନ୍‌ର ଓଡ଼ିଆ ଶିଳ୍ପୀ

ସୁଇଡେନ୍‌ର ପଶ୍ଚିମ ଉପକୂଳରେ ଚମତ୍କାର ସହରଟିଏ – ବୋରସ୍ । ୧୯୮୦ ଜୁନ୍ ମାସରେ ଗୋଟିଏ ଦିନ କଟାଇଥିଲି ସେଇ ସହରରେ । ବୋରସ୍‌ରେ ରହୁଥିବା ଓଡ଼ିଆ ଶିଳ୍ପୀ ଶ୍ରୀ ପ୍ରଦ୍ୟୁମ୍ନ କୁମାର ମହାନନ୍ଦିଆ ମୋତେ ନିମନ୍ତ୍ରଣ କରିଥିଲେ ତାଙ୍କ ସହରକୁ ।

ଗଟେନ୍‌ବର୍ଗରୁ ରେଳଯୋଗେ ଗୋଟିଏ ଘଣ୍ଟାର ବାଟ ବୋରସ୍ । ଦୁଇପାର୍ଶ୍ୱରେ ସବୁଜ ଅରଣ୍ୟ, ଅନୁଚ୍ଚ ପାହାଡ଼ ଓ ଅନେକ ଛିଦ୍ର । ମଝିରେ ମଝିରେ କ୍ଷୁଦ୍ର କ୍ଷୁଦ୍ର ସହର – ଲୋହିତ ରଙ୍ଗର ପାରମ୍ପରିକ ଗୃହସବୁ, ରାସ୍ତାଘାଟ ଜନଶୂନ୍ୟ । ପାଗ ଅସ୍ୱାଭାବିକଭାବେ ଉଷ୍ମ ଓ ଉଜ୍ଜ୍ୱଳ । ତେଣୁ ରେଳଯାତ୍ରୀମାନେ ମନେହେଉଥାନ୍ତି ଚଞ୍ଚଳ, ଉଲ୍ଲସିତ ।

ପ୍ରଦ୍ୟୁମ୍ନ କାର୍‌ରେ ତାଙ୍କ ଫ୍ଲାଟ୍‌କୁ ଘେନିଗଲେ । ତାଙ୍କ ଡ୍ରଇଂ ରୁମ୍‌ରେ ଜଗନ୍ନାଥଙ୍କ ପେଣ୍ଟିଂ, କ୍ୟାସେଟ୍‌ରେ ଜଗନ୍ନାଥଙ୍କ ଜଣାଣ – ଶୁଣାଇଲେ କୋଠଭୋଗଖିଆ, ମୋ ଚକାଆଖିଆ, ଉଠ ହେ... । ବିହ୍ୱଳିତ ହେଲି । ସ୍ୱିଡ଼େନ୍ ଓ ଓଡ଼ିଶା ମଧ୍ୟରେ ବ୍ୟବଧାନ ନିମିଷକେ କୁଆଡ଼େ ମିଳାଇ ଗଲା !

ଟେଲିଫୋନ୍‌ରେ ପ୍ରଦ୍ୟୁମ୍ନ ଜଣାଇଦେଲେ ଲତାଙ୍କୁ – ଯେ ମୁଁ ପହଞ୍ଚି ସାରିଛି । ସେ ସୁଇଡ଼ିସ୍‌ରେ କହୁଥିଲେ । ତେଣୁ ତାଙ୍କ କଥାଭାଷାରେ ମୋ ନାମଟି ବ୍ୟତୀତ ଆଉ କିଛି ବୁଝିବା ମୋ ପାଇଁ ସହଜ ନ ଥିଲା !

ଲତା ପ୍ରଦ୍ୟୁମ୍ନଙ୍କ ସ୍ତ୍ରୀ । (ମଜାର କଥା, 'ଲତା' ଗୋଟିଏ ସାଧାରଣ ସୁଇଡ଼ିସ୍ ନାମ ! ସଂସ୍କୃତ ଓ ସୁଇଡ଼ିସ୍ ମଧ୍ୟରେ ସାମଞ୍ଜସ୍ୟ ବିପୁଳ, ତାହା ଅବଶ୍ୟ ଅନ୍ୟ ଏକ ବ୍ୟାପାର ।) ସେ ଓ ତାଙ୍କ ମା' ଆମ ପାଇଁ ଅପେକ୍ଷା କରୁଥିଲେ ବୋରସ୍ ଉପକଣ୍ଠରେ ତାଙ୍କର କଣ୍ଟ୍ରିହାଉସ୍ ଅର୍ଥାତ୍ ଗାଁ–ଘରେ । ସେଇଠାରେ ଆମ ଲଞ୍ଚର ଆୟୋଜନ ହୋଇଥିଲା ।

କଣ୍ଟ୍ରି–ହାଉସରେ ପହଞ୍ଚାଇବା ଆଗରୁ ଅଳ୍ପ ସମୟ ମଧ୍ୟରେ ପ୍ରଦ୍ୟୁମ୍ନ ମୋତେ ବୁଲାଇ ଦେଖାଇଲେ ବୋରସ୍ ସହର । ସହରଟି ତିନିଶହ ବର୍ଷର ପୁରୁଣା । ଏହାର ମୂଳ ଅଧିବାସୀମାନେ ଥିଲେ କୃଷକ, ତନ୍ତୀ, କମାର ଓ ବଢ଼େଇ । ତିନିଶହ ବର୍ଷ ପରେ ଏହା ଆଜି ସୁଇଡ଼େନ୍‌ର 'ଫ୍ୟାସନ୍ ସେଣ୍ଟର୍' – ପର୍ଯ୍ୟଟକମାନଙ୍କର ଏକ ମୁଖ୍ୟ ଆକର୍ଷଣ । ××× 

ପ୍ରଦ୍ୟୁମ୍ନ ଓ ଲତାଙ୍କର କଣ୍ଟ୍ରି ହାଉସ୍‌ଟିର ଦୃଶ୍ୟ ଅପୂର୍ବ । ପ୍ରାୟ ଏକଶହ ପଚାଶ ଏକର ବିସ୍ତୀର୍ଣ୍ଣ ଚିରସବୁଜ ପାଇନ୍ ଅରଣ୍ୟ ମଧ୍ୟରେ ଲୋହିତ ରଙ୍ଗର କଣ୍ଟ୍ରି–ହାଉସ୍ । ଅରଣ୍ୟ ମଧ୍ୟରେ ଚମତ୍କାର ହ୍ରଦ ଓ ହ୍ରଦରେ ଜଳବିହାର ପାଇଁ ଦୁଇ ତିନୋଟି ବୋଟ୍ ।

ସମଗ୍ର ଅରଣ୍ୟ, ହ୍ରଦ ଓ କଣ୍ଟ୍ରି–ହାଉସ୍ ପ୍ରଦ୍ୟୁମ୍ନ ଓ ଲତାଙ୍କର ବ୍ୟକ୍ତିଗତ ସମ୍ପତ୍ତି । ସୁଇଡ଼େନ୍‌ର ଆଇନ୍ ଅରଣ୍ୟ–ସମ୍ପଦ ଉପରେ ବ୍ୟକ୍ତିଗତ ମାଲିକାନା ସ୍ୱୀକାର କରେ । ଏଇ ଅରଣ୍ୟରୁ ଟନ୍ ଟନ୍ କାଠ ନିୟମିତ ଚାଲାଣ ହୁଏ କାନାଡ଼ାର କାଗଜକଳମାନଙ୍କୁ । ମହାନନ୍ଦିଆ–ଦମ୍ପତିଙ୍କ ଆର୍ଥିକ ସ୍ୱଚ୍ଛଳତା ଏଇ ଅରଣ୍ୟ ସମ୍ପଦରୁ ହିଁ ଅନୁମେୟ । ଶୁଣିଲି, ବହୁ ସ୍ୱିଡ଼ିସ୍ ପରିବାର ଏଭଳି ଅରଣ୍ୟ ସମ୍ପଦର ଅଧିକାରୀ । ବହୁ ପରିବାର ନଗରର ଫ୍ଲାଟ୍ ସାଙ୍ଗକୁ ଅରଣ୍ୟ କିମ୍ବା ଗ୍ରାମାଞ୍ଚଳରେ କଣ୍ଟ୍ରି–ହାଉସ୍ ରଖିଥା'ନ୍ତି । କାର୍ଯ୍ୟରୁ ରିହାତି ପାଇଲେ ସେମାନେ ଅବସର କଟାଇଥା'ନ୍ତି ସେମାନଙ୍କ କଣ୍ଟ୍ରି–ହାଉସ୍‌ରେ ।

'ନମସ୍ତେ, ଆପନ କେମିତି ଅଛନ୍ତି ? ଓଡ଼ିଆରେ ମୋତେ ସ୍ୱାଗତ ଜଣାଇଲେ ଲତା । ସେ ସମ୍ବଲପୁରୀ ଶାଢ଼ିଟିଏ ପିନ୍ଧି କେତେକାଂଶରେ ଓଡ଼ିଆ ବୋହୂଟିଏ ପରି ଦିଶୁଥିଲେ । ତାଙ୍କ ମା' ମୋତେ ନିଜକୁ ପରିଚିତ କରାଇ କହିଲେ, 'ଶାଶୁ' । ତାଙ୍କ ଓଡ଼ିଆ ଉଚ୍ଚାରଣ ବୁଝିବା ଅବଶ୍ୟ ଏତେ ସହଜ ନ ଥିଲା ।

ଲତା ଜଣେ ସୁନ୍ଦରୀ, ମେଳାପୀ ଭଦ୍ର ମହିଳା । ସୁଇଡ଼େନ୍‌ର ରାଜପରିବାର ସହିତ ସେ ଦୂରସମ୍ପର୍କୀୟ । ପ୍ରଦ୍ୟୁମ୍ନଙ୍କ ସହିତ ବିବାହ ପରେ ସେ ଦୁଇଥର ଓଡ଼ିଶା ଆସିଛନ୍ତି ଓ ଆଠମଲ୍ଲିକରେ ପ୍ରଦ୍ୟୁମ୍ନଙ୍କ ଗାଁରେ ମାଟିଘରେ ରହିଛନ୍ତି । ସ୍ୱିଡ଼େନ୍ ଭଳି ଅତି ଉନ୍ନତ ରାଷ୍ଟ୍ରର ଅଭିଜାତ ପରିବାରରୁ ଆଠମଲ୍ଲିକର ଓଡ଼ିଆ ଗାଁ-ରଙ୍ଗ-ମଞ୍ଚରେ ସୁଦ୍ଧା ଏଭଳି ନାଟକୀୟତା କ୍ୱଚିତ୍ ଦେଖାଯାଏ ।

ଲତା କିନ୍ତୁ ଓଡ଼ିଆ ଗାଁକୁ ଭଲ ପାଆନ୍ତି ଏବଂ ଯଥାଶୀଘ୍ର ପୁଣି ଆସିବାକୁ ଚାହାନ୍ତି ତାଙ୍କ ଶାଶୁଘରକୁ । ତାଙ୍କ ମତରେ ଗାଁର ସ୍ତ୍ରୀଲୋକମାନେ ଅତ୍ୟନ୍ତ ସ୍ନେହୀ ଓ ତାଙ୍କୁ ଖୁବ୍ ଭଲ ପାଆନ୍ତି । ପ୍ରଥମଥର ପାଇଁ ଯେତେବେଳେ ସେ ପହଞ୍ଚିଲେ ଗାଁରେ, ସ୍ତ୍ରୀ ଲୋକମାନେ ତାଙ୍କୁ ଆଶ୍ଚର୍ଯ୍ୟ ହୋଇ ଘେରିଗଲେ । କେହି କେହି ତାଙ୍କୁ ଆଉଁସି ପକାଇଲେ । ତାଙ୍କ ଚମଡ଼ା ଓ କେଶର ରଙ୍ଗ ସେମାନଙ୍କ ପାଇଁ ଥିଲା ଏକ ରହସ୍ୟ । ସେ ଖରା ପୋଇଁବାକୁ ଗଲେ – ଛତା ଆଣି ସେମାନେ ତାଙ୍କୁ ଘୋଡ଼ାଇ ପକାଇଲେ ।

ଲତା ମା' କଥା କହନ୍ତି କମ୍, ଦିଶନ୍ତି ହସ ହସ । ଅଧିକାଂଶ ସମୟ ସେ ରହନ୍ତି ନିର୍ଜନ କଣ୍ଟ୍ରି – ହାଉସ୍‌ରେ । ତାଙ୍କର ଦୁଇଟି ବିଳାସ – ଟେଲିଭିଜନ୍ ଓ ଅଧ୍ୟୟନ । ଶୀତ-ଋତୁରେ ଯେତେବେଳେ ବରଫରେ ଆଚ୍ଛନ୍ନ ହୋଇଯାଏ ଚତୁର୍ଦ୍ଦିଗ-କଣ୍ଟ୍ରି ହାଉସ୍ ବିଚ୍ଛିନ୍ନ ହୋଇପଡ଼େ ବାହାର ପୃଥିବୀରୁ – ସେତେବେଳେ ବି ସେ ସହରକୁ ନ ଯାଇ କଣ୍ଟ୍ରିହାଉସ୍‌ରେ ରହିବାକୁ ଭଲପାଆନ୍ତି । ଲତାଙ୍କ ଆଈଙ୍କର ମାତ୍ର ଅଳ୍ପ କେତେ ମାସ ତଳେ ପରଲୋକ ହୋଇଯାଇଛି ଏଇ କଣ୍ଟ୍ରି ହାଉସ୍‌ରେ ।

'ଆପଣ କେବେ ଭାରତ ଯାଉଛନ୍ତି ?' ଲତାଙ୍କ ମାଆଙ୍କୁ ପଚାରିଲି । ସେ ସ୍ୱିଡ଼ିସ୍‌ରେ ଉତ୍ତର ଦେଲେ ।

ବୁଝାଇ ଦେଲେ ପ୍ରଦ୍ୟୁମ୍ନ, ସେ (ଲତାଙ୍କ ମା') ଭାରତ ସମ୍ପର୍କରେ ଅନେକ କିଛି ପଢ଼ିଛନ୍ତି । କିନ୍ତୁ ଭ୍ରମଣ ସେ ପସନ୍ଦ କରନ୍ତି ନାହିଁ । କଳ୍ପନାର ଭାରତକୁ ସେ ଅଧିକ ଭଲ ପାଆନ୍ତି । ×××

ଚମତ୍କାର କଟିଲା ଦିନଟି । ଲତା ଓ ତାଙ୍କ ମା' ଲଞ୍ଚ୍ ପାଇଁ ପ୍ରସ୍ତୁତ କରିଥିଲେ, ଭାତ, କୁକୁଡ଼ା ମାଂସ ତରକାରି ଓ ଆଚାର । ସେମାନଙ୍କ ପାଇଁ ମୁଁ ଥିଲି ଜଣେ 'ବିଶିଷ୍ଟ ଅତିଥି' । ତେଣୁ ସ୍ୱିଡ଼ିସ୍ ପ୍ରଥାରେ 'ବିଶିଷ୍ଟ ଅତିଥି'ଙ୍କୁ ସ୍ୱାଗତ କରିବା ପାଇଁ ସେମାନେ କଣ୍ଟ୍ରିହାଉସ୍ ସାମ୍ନାରେ ସ୍ୱିଡ଼େନ୍‌ର ଜାତୀୟ ପତାକା ଉଡ଼ାଇଥିଲେ ଓ ଫାୟାର୍ ପ୍ଲେସ୍‌ରେ କାଠ ଖଣ୍ଡିଏ ଜଳାଇ ରଖିଥିଲେ । ମହାନଦିଆ-ଦମ୍ପତିଙ୍କ ଆତିଥେୟତା ଭୁଲିବାର ନୁହେଁ ।

ପ୍ରଦ୍ୟୁମ୍ନ ବୟସରେ ତରୁଣ; କିନ୍ତୁ ଅନୁଭୂତି ଓ ସିଦ୍ଧିରେ ପ୍ରବୀଣ । ୧୯୭୫ରେ ଦିଲ୍ଲୀ ବିଶ୍ୱବିଦ୍ୟାଳୟରୁ ଫାଇନ୍ ଆର୍ଟ୍‌ସ୍‌ରେ ଏମ୍.ଏ. ଡିଗ୍ରୀ ହାସଲ ପରେ ସ୍ୱୀୟ ଉଦ୍ୟମରେ ସେ ମଧ୍ୟ ପ୍ରାଚ୍ୟ ଦେଇ ପହଞ୍ଚିଲେ ୟୁରୋପ୍‌ରେ ଓ ଅବଶେଷରେ ସ୍ଥାୟୀ ଭାବରେ ରହିଗଲେ ସ୍ୱିଡ଼େନ୍‌ରେ । ଲତାଙ୍କ ସହିତ ବିବାହର ପରିଣତି ସୁଇଡ଼େନ୍‌ର ନାଗରିକତ୍ୱ । ମୁଖ୍ୟତଃ ସେ ଜଣେ ଚିତ୍ରଶିଳ୍ପୀ । ସ୍ୱିଡେନ୍, ଭାରତ ଓ ଅନ୍ୟାନ୍ୟ ଦେଶମାନଙ୍କରେ ତାଙ୍କର ଏକକ ଚିତ୍ର ପ୍ରଦର୍ଶନୀମାନ ଅନୁଷ୍ଠିତ ହୋଇଛି । ଓଡ଼ିଶାର କଳା ଓ ନୃତ୍ୟ ପ୍ରତି ତାଙ୍କର ଆଗ୍ରହ ଯଥେଷ୍ଟ । ନିକଟ ଅତୀତରେ ସେ ସୁଇଡ଼େନ୍‌ରେ ଓଡ଼ିଶା ସମ୍ପର୍କରେ ପ୍ରଦର୍ଶନୀଟିଏ ମଧ୍ୟ ଆୟୋଜନ କରିଥିଲେ ।

ସନ୍ଧ୍ୟାରେ ପ୍ରଦ୍ୟୁମ୍ନ ଓ ଲତା ମୋତେ ରେଲୱେ ଷ୍ଟେସନ୍‌ରେ ଛାଡ଼ି ଗୋଇଗଲେ । କାର୍ ଡ୍ରାଇଭ୍ କରୁଥିଲେ ଲତା । ଲତାଙ୍କ କହିବା ଅନୁସାରେ, ବୋରସ୍‌ରେ ପାଦ ଦେବାରେ ପ୍ରଦ୍ୟୁମ୍ନଙ୍କ ପରେ ମୁଁ ହିଁ ଏକମାତ୍ର ଓଡ଼ିଆ । ମୁଁ କିଛିଦିନ ବୋରସ୍‌ରେ ରହେ, ଏହା ଥିଲା ପ୍ରଦ୍ୟୁମ୍ନ ଓ ଲତାଙ୍କ ଏକାନ୍ତ ଇଚ୍ଛା ।

ଭବିଷ୍ୟତରେ ପୁଣି ଥରେ ସ୍ୱିଡେନ୍ ଯାଇପାରିବି କି ନା, ଜାଣେନା । ମାତ୍ର ଓଡ଼ିଶାରେ ବାରମ୍ବାର ପ୍ରଦ୍ୟୁମ୍ନ-ଲତାଙ୍କ ସାକ୍ଷାତ ମିଳିବ, ଏଥିରେ ମୁଁ ନିଃସନ୍ଦେହ ।

### ଉତ୍ତର ପ୍ରବାସୀ

ଗଜେନ୍ଦ୍ର କୁମାର ଘୋଷ୍ ଜଣେ ଇଞ୍ଜିନିୟର୍: କାର୍ଯ୍ୟ କରନ୍ତି ସୁଇଡ଼େନ୍‌ର ଗଟନ୍‌ବର୍ଗ୍ ସହରର କୌଣସି ତୈଳ ବିଶୋଧନାଗାରରେ । ଜନ୍ମ ବାଂଲାଦେଶରେ, ବୟସ ଚାଳିଶିରୁ କମ୍ । ସୁଗଠିତ, ଦାଢ଼ିବନ୍ତ ଚେହେରା । ଗମ୍ଭୀର ଓ ମୃଦୁଭାଷୀ । ୧୯୬୪ରୁ ସସ୍ତ୍ରୀକ ରହିଆସିଛନ୍ତି ସୁଇଡ଼େନ୍‌ରେ ।

ଭାରତୀୟ କଳା ଓ ସାହିତ୍ୟରେ ଶ୍ରୀ ଘୋଷ୍‌ଙ୍କର ଯଥେଷ୍ଟ ଆଗ୍ରହ । ଗଟନ୍‌ବର୍ଗ୍ ବିଶ୍ୱବିଦ୍ୟାଳୟ ଆନୁକୂଲ୍ୟରେ ୧୯୮୪ ଜୁନ୍ ମାସରେ ଅନୁଷ୍ଠିତ ଆନ୍ତର୍ଜାତିକ ସାହିତ୍ୟ ଆଲୋଚନାଚକ୍ରରେ ସେ ଯୋଗ ଦେଇଥା'ନ୍ତି । ସେଇଠାରେ ତାଙ୍କ ସହିତ ମୋର ପରିଚୟ । ଦିନେ ସନ୍ଧ୍ୟାରେ ମୋତେ ସେ ନିମନ୍ତ୍ରଣ କରିନେଲେ ତାଙ୍କ ଗୃହକୁ । ସେ ରହନ୍ତି ଗଟନ୍‌ବର୍ଗ୍ ଉପକଣ୍ଠରେ ସୁର୍ତ୍ତେ ନାମଧେୟ କ୍ଷୁଦ୍ର ସହରରେ । ଗଟନ୍‌ବର୍ଗ୍‌ରୁ ସୁର୍ତ୍ତେ ଯିବା ରାସ୍ତାରେ ବାମ ଦିଗରେ ନଦୀ 'ଗୋଟା' – ଗଟନ୍‌ବର୍ଗ୍ ସହରର ନାମକରଣ ଏହି ନଦୀ 'ଗୋଟା'ରୁ ।

ଶ୍ରୀ ଘୋଷ୍ ଜଣେ ଚିତ୍ରକର ଓ ସାମୟିକ ଲେଖକ । ସ୍ୱ-ଅଙ୍କିତ କେତୋଟି ଚିତ୍ର ଦେଖାଇଲେ । କଳା ସମ୍ପର୍କରେ ଅନେକ ସୁନ୍ଦର ଗ୍ରନ୍ଥ ତାଙ୍କ ପଢ଼ା ଥାକରେ । ସେଥିରେ କୋଣାର୍କ ସମ୍ପର୍କରେ ଗ୍ରନ୍ଥଟିଏ । ଜଗନ୍ନାଥଙ୍କର ମୂର୍ତ୍ତି ସେ ନିୟମିତ ପୂଜା କରନ୍ତି । ଛୁଟି କଟାଇବାକୁ ସେ ଏକାଧିକଥର ଆସିଛନ୍ତି ପୁରୀ ।

କାର୍ଯ୍ୟବ୍ୟସ୍ତ ଇଞ୍ଜିନିୟର୍ ଜୀବନରେ ମଧ୍ୟ ଶ୍ରୀ ଘୋଷ୍ ସମ୍ପାଦନା କରନ୍ତି ତ୍ରୈମାସିକ ବଙ୍ଗଳା ପତ୍ରିକାଟିଏ – 'ଉତ୍ତରପ୍ରବାସୀ' । ପାଞ୍ଚବର୍ଷ ହେଲା ନିୟମିତ ପ୍ରକାଶ ପାଇଆସୁଛି ପତ୍ରିକାଟିଏ ।

ଏଥିରେ ମୁଖ୍ୟତଃ ସ୍ଥାନୀୟ ବଙ୍ଗଳା ଲେଖକ-ଲେଖିକାଙ୍କ ଲେଖା ପ୍ରକାଶ ପାଇଥାଏ । ତା' ଛଡ଼ା ଭାରତ ବା ବାଂଲାଦେଶରୁ ପ୍ରକାଶିତ କିଛି ଲେଖା ଏଥିରେ ପୁନଃ ପ୍ରକାଶିତ ହୁଏ । କିଛି ବଙ୍ଗଳା ଲେଖାର ଇଂରାଜୀ ଅନୁବାଦ ମଧ୍ୟ । 'ସ୍ଥାନୀୟ ସମ୍ବାଦ', 'କୋପାନ୍‌ହାଗାନେର ଚିଠି', 'ଷ୍ଟକ୍‌ହୋମ୍ ଚିଠି' ପ୍ରଭୃତି ସ୍ତମ୍ଭଗୁଡ଼ିକ ଏଥିରେ ନିୟମିତ ବାହାରେ ।

ଗଟନ୍‌ବର୍ଗ୍ ଭଳି ସହରରୁ ବ୍ୟକ୍ତିଗତ ଉଦ୍ୟମରେ ବଙ୍ଗଳା ଭାଷାରେ ପତ୍ରିକାଟିଏ ଯେ ପ୍ରକାଶ ଯାଏ, ଏହା ବଙ୍ଗଳା ତଥା ଭାରତୀୟ ସାହିତ୍ୟପାଇଁ ଏକ ସୁସମ୍ବାଦ । ସମଗ୍ର ସୁଇଡ଼େନ୍‌ରେ ଭାରତୀୟ ପରିବାର ସଂଖ୍ୟା ପ୍ରାୟ ଦୁଇଶହ । ସେଥିମଧ୍ୟରେ ବଙ୍ଗଳାଭାଷୀଙ୍କ ସଂଖ୍ୟା ବା କେତେ ? କିନ୍ତୁ ସଂଖ୍ୟା ଅପେକ୍ଷା ବ୍ୟକ୍ତିଗତ ସାଧନା ଓ ନିଷ୍ଠା ହିଁ ବହୁ ସମୟରେ କୌଣସି ଜାତିର ସଭ୍ୟତା ଓ ସଂସ୍କୃତିର ପ୍ରଚାର ଓ ସଂରକ୍ଷଣରେ ଅଧିକ ସହାୟକ ହୋଇଥାଏ । ଶ୍ରୀ ଘୋଷ୍‌ଙ୍କ ପତ୍ରିକାଟି କେବଳ ସୁଇଡ଼େନ୍ ନୁହେଁ, ସୁଇଡ଼େନ୍-ନରୱେ-ଡେନ୍‌ମାର୍କ୍ ଅର୍ଥାତ୍ ସମଗ୍ର ସ୍କାଣ୍ଡିନେଭିଆନ୍ ଅଞ୍ଚଳରେ ଭାରତୀୟ ଭାଷାରେ ପ୍ରକାଶିତ ବୋଧହୁଏ ଏକମାତ୍ର ସାହିତ୍ୟ ପତ୍ରିକା । ଇଂଲାଣ୍ଡ, ଆମେରିକା ବା କାନାଡ଼ାରେ ଭାରତୀୟମାନଙ୍କ ସଂଖ୍ୟାର ଆଧିକ୍ୟ ଦୃଷ୍ଟିରୁ ଏହି ଦେଶମାନଙ୍କରେ ଭାରତୀୟ ସଂସ୍କୃତି ଓ ସାହିତ୍ୟର ପ୍ରଚାର ବା ସଂରକ୍ଷଣ ଉଦ୍ୟମ ଅପେକ୍ଷାକୃତ ସହଜ । ମାତ୍ର ଗଭୀର ନିଷ୍ଠା ଓ ଅଧ୍ୟବସାୟ ବ୍ୟତୀତ ସୁଇଡ଼େନ୍ ଭଳି ଦେଶରେ ଭାରତୀୟ ଭାଷାରେ ପତ୍ରିକାଟିଏ ପ୍ରକାଶ କରିବା କଳ୍ପନାତୀତ !

## ଓସ୍‌ମାନ୍‌ଙ୍କ ସ୍ୱର୍ଗ

ଗଟନ୍‌ବର୍ଗ୍ ରାସ୍ତାରେ ଆକସ୍ମିକ ସାକ୍ଷାତ୍ ହୋଇଥିଲା ତାଙ୍କ ସଙ୍ଗେ ଅଳ୍ପ ସମୟ ପାଇଁ । ସେ ମୋ ନିକଟକୁ ଆସିଲେ । ମୁଖରେ ତାଙ୍କର ସ୍ମିତ ହସ ।

ଏବଂ ତାଙ୍କ ହସଟିର ଅର୍ଥ ବୁଝିବା ମୋ ପକ୍ଷରେ କଠିନ ନ ଥିଲା । ମୁଁ କହିଲି, 'ମୁଁ ଭାରତରୁ ଆସିଛି । ଆପଣ କେଉଁ ଅଞ୍ଚଳରୁ ?' 'କେରଳରୁ' – ସେ କହିଲେ ।

'ସୁଇଡ଼େନ୍ କେମିତି ଲାଗୁଛି ?' ମୁଁ ପଚାରିଲି ।

'ସୁଇଡ଼େନ୍ ତ ସ୍ୱର୍ଗ' ସେ କହିଲେ । 'ଆଗରୁ ମୁଁ ଇଂଲାଣ୍ଡରେ ଅନେକ ଦିନ ରହିଛି । ସେଠି ଯେପରି କଳା-ଗୋରା ଭେଦଭାବ, ଏଠି ସେମିତି ନାହିଁ । ଏଠି ଆମେ ଭାରତୀୟମାନେ ଖୁବ୍ ଭଲରେ ଅଛୁ ।'

ତାଙ୍କର ନାମ ଓସ୍‌ମାନ୍ । ତେବେ କେବଳ ଓସ୍‌ମାନ ନୁହନ୍ତି, ସୁଇଡ଼େନ୍‌ରେ ରହୁଥିବା ଅନ୍ୟାନ୍ୟ ଭାରତୀୟମାନଙ୍କ ମତାମତ ମୋଟାମୋଟି ଏହିପରି ।

ଏହାର କାରଣ ବୁଝିବା ହୁଏ ତ କଷ୍ଟ ନୁହେଁ । ଆମେମାନେ ଏକଦା ଇଂଲାଣ୍ଡର ଉପନିବେଶଟିଏ ଥିବାରୁ ଇଂରେଜମାନେ ତଥାପି ଆମ ଭାରତୀୟମାନଙ୍କୁ ସେମାନଙ୍କ

ପ୍ରଜା କିମ୍ବା ଭୃତ୍ୟ ସ୍ଥାନ କରନ୍ତି ଏବଂ ଆମକୁ ହେୟ ଦୃଷ୍ଟିରେ ଦେଖନ୍ତି । ଆପଣଙ୍କ ଗୃହରେ ଚାକିରି କରିଥିବା ବ୍ୟକ୍ତିଟିଏ ପରବର୍ତ୍ତୀ କାଳରେ ଆପଣଙ୍କ ସମସ୍କନ୍ଧ ହେଲେ ମଧ୍ୟ ଆପଣ ତାଙ୍କୁ କେଉଁ ଦୃଷ୍ଟିରେ ଦେଖିବେ, ଚିନ୍ତା କରନ୍ତୁ ତ !

କିନ୍ତୁ ସୁଇଡ଼େନ୍ ସହିତ ଅତୀତରେ ଆମର ରାଜନୀତିକ ସମ୍ପର୍କ ପ୍ରାୟତଃ ନ ଥିଲା । ଅବଶ୍ୟ ସପ୍ତଦଶ ଶତାବ୍ଦୀର କୌଣସି ସମୟରେ ଉପନିବେଶବାଦର ପ୍ରାରମ୍ଭ କାଳରେ ଅନ୍ୟାନ୍ୟ ୟୁରୋପୀୟ ଦେଶଗୁଡ଼ିକଭଳି ସୁଇଡ଼ିଶ୍‌ମାନେ ମଧ୍ୟ ଭାରତ ସହିତ ବାଣିଜ୍ୟ ସମ୍ପର୍କ ସ୍ଥାପନ ପାଇଁ ମନ ବଳାଉଥିଲେ ଏବଂ ଗଟନ୍‌ବର୍ଗ୍ ନଗରରେ ତଥାପି ଏକଦା 'ଇଷ୍ଟଇଣ୍ଡିଆ କମ୍ପାନୀ' ଅଫିସ୍‌ଥିବା ପ୍ରାସାଦଟିଏ ଦେଖିବାକୁ ମିଳେ !

ଇଂଲଣ୍ଡରେ ବହୁ ଭାରତୀୟ ତଥା କଳାଲୋକଙ୍କ ଉପସ୍ଥିତି ଇଂଲଣ୍ଡର ସମାଜ, ସଂସ୍କୃତି ଓ ଅର୍ଥନୀତିର ଚେହେରା କେତେକାଂଶରେ ବଦଳାଇ ଦେଇଛି । ରକ୍ଷଣଶୀଳ ଇଂରେଜମାନେ ଏଥିରେ ସୁଖୀ ନୁହନ୍ତି । ସେମାନଙ୍କ ପ୍ରତିକ୍ରିୟା ପ୍ରକାଶ ପାଇଛି କଳାଲୋକମାନଙ୍କ ପ୍ରତି ଘୃଣା ଓ ଅସୂୟାରେ !

ସୁଇଡ଼େନ୍‌ରେ ତଥାପି ଭାରତୀୟ ତଥା କଳାଲୋକଙ୍କ ସଂଖ୍ୟା ଏକାନ୍ତ ସୀମିତ । କଳାଲୋକଙ୍କ ଉପସ୍ଥିତି ପ୍ରତି ସୁଇଡ଼ିଶ୍‌ମାନେ କୌଣସି ଘୃଣା ବା ବୈରଭାବ ଏଯାବତ୍ ପ୍ରକାଶ କରି ନାହାନ୍ତି । କିନ୍ତୁ ଏହି ଅବସ୍ଥା ହୁଏତ ସବୁଦିନେ ରହିବ ନାହିଁ । ଅଳ୍ପ କେତେ ମାସ ତଳ ଯାଏଁ ଭାରତୀୟମାନେ ସୁଇଡ଼େନ୍‌ରେ ପ୍ରବେଶ କରିବାପାଇଁ ସୁଇଡ଼େନ୍ ସରକାରଙ୍କ ଅନୁମତି ବା 'ଭିସା' ଆବଶ୍ୟକ ପଡୁ ନ ଥିଲା । ଏବେ କିନ୍ତୁ ସେ ନିୟମ ପରିବର୍ତ୍ତିତ ହୋଇଛି ।

ଓସ୍‌ମାନ୍‌ଙ୍କ ସ୍ୱର୍ଗ ସବୁଦିନେ ସ୍ୱର୍ଗ ହୋଇ ରହିବ, ଏହା କୁହାଯାଇ ନ ପାରେ !

**ଆନୀକା**

ଦିନେ ସନ୍ଧ୍ୟାରେ ଗଟନ୍‌ବର୍ଗ୍‌ର କୌଣସି ପାନ୍ଥଶାଳାରେ ବିଭିନ୍ନ ଦେଶରୁ ଆଗତ ବନ୍ଧୁମାନେ ମଦ୍ୟ ବା କୋଲ୍‌ଡ୍ରିଙ୍କ୍ ପାନ କରୁଥା'ନ୍ତି ଓ ଖୋଲାଖୋଲି ଆଲୋଚନା କରୁଥା'ନ୍ତି । ସେମାନଙ୍କ ମଧ୍ୟରେ ଥିଲେ ଆନୀକା–ମଧ୍ୟବୟସ୍କା ସୁଇଡ଼ିଶ୍ ମହିଳା, ସୁନ୍ଦରୀ ନୁହନ୍ତି । ତାଙ୍କ ସହିତ କଥୋପକଥନର ବିବରଣୀ ସଂକ୍ଷେପରେ ଏହିପରି !

ମୁଁ : ଆପଣ ଚିନ୍ତିତ ଦିଶୁଛନ୍ତି ।

ଆନୀକା : ଠିକ୍ । ମୋ ବୟଫ୍ରେଣ୍ଡ୍ ମୋତେ ଅଳ୍ପ ଦିନରେ ଛାଡ଼ି ଦେବାକୁ ଯାଉଛନ୍ତି । ଆମେ ଏକାଠି ଅନେକ ବର୍ଷ କଟାଇଲୁ ।

ମୁଁ : କାହିଁକି ତେବେ ସେ ଆପଣଙ୍କୁ ଛାଡ଼ିବାକୁ ଚାହୁଁଛନ୍ତି ?

ଆନୀକା : କାରଣ ସେ ମୋଠାରୁ କମ୍ ବୟସ୍କ ଗୋଟିଏ ଝିଅର ପ୍ରେମରେ ପଡ଼ିଛନ୍ତି । ମୁଁ ତ ତାଙ୍କଠାରୁ ଯଥେଷ୍ଟ ବଡ଼ ।

ମୁଁ : ସେ କିନ୍ତୁ ଠିକ୍ କାର୍ଯ୍ୟ କରୁ ନାହାନ୍ତି ।

ଆନୀକା : ତେବେ ତାଙ୍କର ଭୁଲ୍ କେଉଁଠି ? ତାଙ୍କର ବୟସ କମ୍; ଜୀବନରେ ସୁଖୀ ହେବାକୁ ସେ ଚାହିଁବା ସ୍ୱାଭାବିକ୍ ।

ଆନୀକା ଚିନ୍ତିତ ଦିଶୁଥିଲେ ନିଶ୍ଚୟ, କିନ୍ତୁ ବୟଫ୍ରେଣ୍ଡଙ୍କଠାରୁ ବିଚ୍ଛେଦକୁ ସହଜ ଭାବରେ ଗ୍ରହଣ କରିନେବାକୁ ଚାହୁଁଥିଲେ । ସେଇଥିପାଇଁ ହୁଏତ ଅନ୍ୟମାନଙ୍କ ସମ୍ମୁଖରେ ସେ ଦିନ ସେ ଖୋଲିଦେଇଥିଲେ ନିଜର ବ୍ୟକ୍ତିଗତ ସମସ୍ୟାଟି !

ପୃଥିବୀର ସମୃଦ୍ଧତମ ରାଷ୍ଟ୍ରମାନଙ୍କ ମଧ୍ୟରେ ଅନ୍ୟତମ ସୁଇଡ଼େନ୍ । କିନ୍ତୁ ସୁଇଡ଼ିଶ୍‌ମାନଙ୍କ ବିପୁଳ ଆର୍ଥିକ ସମୃଦ୍ଧି ସହିତ ସେମାନଙ୍କ ପାରିବାରିକ ବା ସାମାଜିକ ଜୀବନର ସୁଖ ଶାନ୍ତିର କୌଣସି ସମ୍ପର୍କ ଥିବା ଭଳି ମନେହୁଏ ନାହିଁ । ସାମାଜିକ ଜୀବନର ମୂଳ ଉତ୍ସ ବିବାହ ଅନୁଷ୍ଠାନ ପ୍ରତି ବହୁ ସୁଇଡ଼ିଶ୍ ତରୁଣ ତରୁଣୀଙ୍କର ଏକାନ୍ତ ଅନାସ୍ଥାଭାବ । ତରୁଣ ଓ ତରୁଣୀ ସ୍ୱଇଚ୍ଛାରେ ଏକାଠି ରହନ୍ତି; ପୁଣି ଯେକୌଣସି ମୁହୂର୍ତ୍ତରେ ଚାଲିଯା'ନ୍ତି ନିଜ ନିଜ ବାଟରେ । ମଣିଷ ମଣିଷ ମଧ୍ୟରେ ଚିରନ୍ତନ ସମ୍ପର୍କ ଏକ ଅନାବଶ୍ୟକ ବନ୍ଧନ – ଏଇଥିରେ ହିଁ ଯେପରି ବିଶ୍ୱାସ କରନ୍ତି ସେମାନେ !

ସୁଇଡ଼େନ୍‌ର ଲୋକସଂଖ୍ୟା ଆଠ ନିୟୁତ (ଓଡ଼ିଶା ଲୋକସଂଖ୍ୟାର ପ୍ରାୟ ଏକ ତୃତୀୟାଂଶ) । କିନ୍ତୁ ପ୍ରତିବର୍ଷ ସୁଇଡ଼େନ୍‌ରେ ଆତ୍ମହତ୍ୟା କରୁଥିବା ଲୋକଙ୍କ ସଂଖ୍ୟା ପନ୍ଦର ଶହ ।

'ଆପଣଙ୍କ ଦେଶ ଏତେ ସୁନ୍ଦର, ଏତେ ସମୃଦ୍ଧ । ଅଥଚ ଆପଣଙ୍କ ଦେଶରେ ଆତ୍ମହତ୍ୟାର ହାର ଏତେ ଅଧିକ କାହିଁକି ?' ସୁଇଡ଼ିଶ୍ ଡକ୍ଟର୍ ଲାରସ୍‌ଙ୍କୁ ଏଇ ପ୍ରଶ୍ନଟି ପଚାରିଥିଲି ।

ମୋ ପ୍ରଶ୍ନର ସେ ବିଶେଷ ଗୁରୁତ୍ୱ ଦେଲା ଭଳି ମନେହେଲା ନାହିଁ । କହିଲେ, 'କାରଣ ଜୀବନ ସେମାନଙ୍କ ପ୍ରତି ବିରକ୍ତିକର ହେଉଥିବ !'

ସୁଇଡ଼ିଶ୍‌ମାନଙ୍କ ପାଇଁ ଜୀବନ ଏତେ ବିରକ୍ତିକର ହୁଏ କାହିଁକି ? ଦାରିଦ୍ର୍ୟ, ଅଶିକ୍ଷା, କୁସଂସ୍କାରଗ୍ରସ୍ତ ଆଫ୍ରିକା ବା ଏସିଆ ମହାଦେଶରେ ତ ଆତ୍ମହତ୍ୟାର ହାର ଏତେ ଅଧିକ ନୁହେଁ ! ପାଶ୍ଚାତ୍ୟ ଅର୍ଥନୀତି ଓ ଦର୍ଶନର ଆକ୍ରମଣରେ ହୁଏତ ଭାଙ୍ଗିପଡ଼ୁଛି ପାରମ୍ପରିକ ମାନବିକ ସମ୍ପର୍କ ଓ ତାହାର ପରିଣାମ ନିଃସହାୟ, ନିଃସଙ୍ଗ ମଣିଷର ଆତ୍ମହତ୍ୟା !

ସକଳ ଚାକଚକ୍ୟ ଓ ସମୃଦ୍ଧି ସତ୍ତ୍ୱେ ପାଶ୍ଚାତ୍ୟ ସଭ୍ୟତା ଯେ କିପରି ଅନ୍ତଃସାରଶୂନ୍ୟ – ଆନୀକାଙ୍କ ଜୀବନର ବେଦନା ଓ ନିଃସଙ୍ଗତା ଯେପରି ତାହାର ହିଁ ଆଲେଖ୍ୟ !!

(୧୯୮୪-୮୬)

# ସୂଚୀ

# ଜୋହାନ୍‌ସ୍‌ବର୍ଗ୍‌ର ଜଣେ ମାଆ

୧୯୭୮ ଫେବୃୟାରୀ ମାସରେ କସ୍‌ମସ୍ ଟ୍ରାଭଲ୍ ଏଜେନ୍ସିଙ୍କ ଆୟୋଜନରେ ଗୋଟିଏ ଟୁରିଷ୍ଟ ଦଳରେ ପଶ୍ଚିମ ୟୁରୋପ୍ ଭ୍ରମଣରେ ଯାଇଥିଲି ମୁଁ । ଆମେମାନେ ବିଲାତରେ ଡୋଭର୍ ବନ୍ଦରରୁ ଜାହାଜରେ ଆସିଲୁ ବେଲଜିୟମ୍‌ର ଓ୍ୱେଷ୍ଟେଣ୍ଡ ସହରକୁ ଓ ସେହିଠାରେ ଆମକୁ ୟୁରୋପ୍ ବୁଲାଇବା ପାଇଁ ଅପେକ୍ଷା କରିଥିଲା ଚମତ୍କାର ବସ୍‌ଟିଏ ।

ବସ୍‌ରେ ମୋ ବାମ ଦିଗର ସିଟ୍‌ଟି ସଂରକ୍ଷିତ ଥିଲା ଜଣେ ବୃଦ୍ଧାଙ୍କ ପାଇଁ । ଆମେ ଟୁରିଷ୍ଟମାନେ ଯଥା ସମୟରେ ବସ୍‌ରେ ନିଜ ନିଜ ସ୍ଥାନରେ ବସିଲୁ ଓ ଆମର ବେଲଜିୟାନ୍ ଗାଇଡ୍ ରାଲ୍‌ଫ ଆମମାନଙ୍କ ନାମ ଓ ପରିଚୟ ପଢ଼ି ଶୁଣାଇଲା । ସେଥିରୁ ମୁଁ ବୁଝିଲି, ମୋ ବାମ ଦିଗରେ ବସିଥିବା ବୃଦ୍ଧା ଆସିଛନ୍ତି ଦକ୍ଷିଣ ଆଫ୍ରିକାର ଜୋହାନ୍‌ସ୍‌ବର୍ଗ୍ ନଗରରୁ । ତାଙ୍କ ନାମ ମିସେସ୍ ଜେରାଲ୍‌ଡ୍ । ସପ୍ତାହ ପରେ ସପ୍ତାହ ଦକ୍ଷିଣ ଆଫ୍ରିକାର ଜଣେ ବୃଦ୍ଧାଙ୍କ ନିକଟରେ ବସି ୟୁରୋପ୍ ଭ୍ରମଣ କରିବାର ସୁଯୋଗରେ ମୁଁ ଅବଶ୍ୟ ଉତ୍ସାହିତ ହେଲି ନାହିଁ । ତେବେ କୌଣସି ପ୍ରତିକ୍ରିୟା ମଧ୍ୟ ପ୍ରକାଶ କଲି ନାହିଁ । ଯାତ୍ରୀ ଦଳଟିରେ ଥିଲେ ବହୁ ଦେଶର ତରୁଣତରୁଣୀ, ବୃଦ୍ଧବୃଦ୍ଧା । ଇସ୍ରାଏଲ, ଜାପାନ, ଚୀନ୍, ମାଲେସିଆ, ଆମେରିକା – ମୋଟ ଉପରେ କ୍ଷୁଦ୍ର ପୃଥିବୀଟାଏ ଯାକିଯୁକି ହୋଇ ବସିଥିଲେ ସେଇ ବସ୍ ଭିତରେ ଏବଂ ତାହା ଭିତରେ ଭାରତ ଓ ଦକ୍ଷିଣ ଆଫ୍ରିକାର ସହାବସ୍ଥାନ ମୋତେ ଇତିହାସର ବିଦ୍ରୂପ ଭଳି ହିଁ ମନେହେଲା ।

ଅବଶ୍ୟ ମିସେସ୍ ଜେରାଲ୍‌ଡ୍‌ଙ୍କ ଚେହେରା ଓ ଚାଲିଚଳନରେ କିଛି ବିରକ୍ତିକର ନ ଥିଲା । ହସ ହସ ମୁହଁ । ଅଳ୍ପ ସମୟ ପରେ ଆମେ ଆଳାପ ଆରମ୍ଭ କଲୁ ଏବଂ କି ଆଶ୍ଚର୍ଯ୍ୟ ! ମାତ୍ର ଅଳ୍ପ କେତେ ପଦ କଥା ବିନିମୟ ପରେ ସେ କହିଲେ, 'ମିଶ୍ର, ତମେ ମୋ ପୁଅ ବୟସର । ଜୋହାନ୍‌ସ୍‌ବର୍ଗ୍‌ରେ ମୁଁ ମୋ ପୁଅ ଓ ଝିଅଙ୍କୁ ଛାଡ଼ି ଆସିଛି । ତେଣୁ ଏ ଯାତ୍ରା ସମୟରେ ମୁଁ ତମର ମାଆ ପରି ଯତ୍ନ ନେବି ।' ସେ ହସିଲେ ଏବଂ ବୃଦ୍ଧାଙ୍କ ଆନ୍ତରିକତାରେ ମୁଁ କେତେକାଂଶରେ ଆଶ୍ଚର୍ଯ୍ୟ ହେଲି । ସତକୁ ସତ ୟୁରୋପ୍ ଯାତ୍ରାରେ ହୋଟେଲ୍‌ରେ ରହିବା ଓ ଖାଇବା ସମୟରେ ସେ ବାରମ୍ବାର ମୋ ସୁବିଧା ଅସୁବିଧା ପଚାରୁଥିଲେ ଓ ଥରେ ମୁଁ କୌଣସି ରେସ୍ତୋରାଁରେ ଛତାଟି ଛାଡ଼ି ଆସିଥିବାରୁ ନିଜେ ଛତାଟି ଆଣି ମୋତେ ଦେଇଥିଲେ ।

ପ୍ରଥମ ଦିନର ଆଳାପ ପରେ ହିଁ ମୁଁ ସ୍ଥିର କରିନେଇଥିଲି, ବସ୍‌ରେ ମୋ ସିଟ୍‌ଟି ବଦଳାଇବା ପାଇଁ ଚେଷ୍ଟା କରିବି ନାହିଁ । ୟୁରୋପ୍ ଯାତ୍ରାରେ ଜଣେ ଉତ୍ତମ ସହଯାତ୍ରୀ

ପାଇଛି ବୋଲି ଖୁସି ହେଲି । ଆଳାପରୁ ଜାଣିଲି, ମିସେସ୍ ଜେରାଲ୍ଡ଼୍ ଜଣେ ଘରୋଇ ମହିଳା । ରାନ୍ଧିବାକୁ ଓ ପିଲାମାନଙ୍କ ଯତ୍ନ ନେବାକୁ ଭଲ ପାଆନ୍ତି । ନିୟମିତ ଚର୍ଚ୍ଚକୁ ଯାଆନ୍ତି ସେ । ତାଙ୍କର କଥାରେ ମଝିରେ ମଝିରେ ସେ ଯୀଶୁଙ୍କ ପ୍ରସଙ୍ଗ ଉଠାଉଥିଲେ । ଭାରତ ସମ୍ପର୍କରେ ତାଙ୍କର ମଧ କିଛି କିଛି ଧାରଣା ଥିଲା । ସେ କହିଲେ, 'ମୋର ଜଣେ ବନ୍ଧୁ ଭାରତରେ ଅନ୍ଧମାନଙ୍କ ସମ୍ପର୍କରେ ଗବେଷଣା କରୁଛି । ଗବେଷଣା କାର୍ଯ୍ୟରେ ତାକୁ କେତେଥର ଭାରତ ଯିବାକୁ ପଡ଼ିଛି ।'

ୟୁରୋପ୍ ଭ୍ରମଣ ସାଙ୍ଗ ହେବା ଯାଏଁ ମିସେସ୍ ଜେରାଲ୍ଡ଼୍ଙ୍କ ସହିତ ମୋ ସମ୍ପର୍କ ଥିଲା ଏକାନ୍ତ ସୌହାର୍ଦ୍ଦ ପୂର୍ଣ୍ଣ ଏବଂ ଅନ୍ତରଙ୍ଗ । ତେବେ ଆମର ସୁଦୀର୍ଘ ଆଳାପ ଆଲୋଚନା ମଧରେ ମୁଁ ଥରେ ହେଲେ ତାଙ୍କୁ ତାଙ୍କ ଦେଶ ସାଉଥ୍ ଆଫ୍ରିକାର ବର୍ଣ୍ଣ ବୈଷମ୍ୟ ନୀତି ସମ୍ପର୍କରେ କିଛି କହି ନ ଥିଲି । ଅଥଚ ତାଙ୍କ ସହିତ ପରିଚୟ ହେବା ପରଠାରୁ ବର୍ଣ୍ଣବୈଷମ୍ୟ ସମ୍ପର୍କରେ ତାଙ୍କଠାରୁ କିଛି ଶୁଣିବାକୁ ମୁଁ ଥିଲି ବ୍ୟାକୁଳ । ପୁଣି ସେହି ସମୟରେ ସାଉଥ୍ ଆଫ୍ରିକା ସରକାରଙ୍କ ବର୍ଣ୍ଣବୈଷମ୍ୟ ନୀତି ଅତି ଉଗ୍ର ଆକାର ଧାରଣ କରିଥାଏ । ସେଠାରେ ସରକାର ବାଣ୍ଟୁ ଓ ଅନ୍ୟ କେତେକ ଆଫ୍ରିକୀୟ ଉପଜାତିକୁ ମୂଳ ଭୂଖଣ୍ଡରୁ ଭିନ୍ନ କରିବା ପାଇଁ ସୃଷ୍ଟି କରିଥା'ନ୍ତି କ୍ଷୁଦ୍ର ଦେଶଟିଏ – ବଟ୍‌ସ୍ୱାନା ।

ସରକାରଙ୍କ ବିଚାର ଥାଏ – ଆଫ୍ରିକାର କଳାଲୋକଙ୍କୁ ଦେଶର ଅପେକ୍ଷାକୃତ ଅନୁନ୍ନତ ଅଞ୍ଚଳରେ ଏକତ୍ରିତ କରି ରଖିବା ଓ ସେମାନଙ୍କ ପାଇଁ ସ୍ୱତନ୍ତ୍ର 'ହୋମ୍‌ଲ୍ୟାଣ୍ଡ' ସୃଷ୍ଟି କରିବା । ଏହାର ଅର୍ଥ ସାଉଥ୍ ଆଫ୍ରିକାର ମୂଳ ଅଧିବାସୀମାନେ ସମଗ୍ର ଦେଶ ଉପରୁ ସେମାନଙ୍କ ଅଧିକାର ହରାଇବେ ଏବଂ କ୍ଷୁଦ୍ର କ୍ଷୁଦ୍ର ଅନୁନ୍ନତ ଅଞ୍ଚଳମାନଙ୍କରେ 'ସ୍ୱାଧୀନ' ହୋଇପଡ଼ି ରହିବେ । ଏଣେ ଦେଶର ସମୃଦ୍ଧ ଅଞ୍ଚଳଗୁଡ଼ିକର ଅପ୍ରତିଦ୍ୱନ୍ଦ୍ୱୀ ମାଲିକ ହେବେ ମାତ୍ର ଦୁଇ ତିନି ଶହ ବର୍ଷ ତଳେ ଦକ୍ଷିଣ ଆଫ୍ରିକାକୁ ଆସିଥିବା ୟୁରୋପୀୟ ଅଧିବାସୀଗଣ । କେବଳ ଦକ୍ଷିଣ ଆଫ୍ରିକାରେ କାହିଁକି, ୟୁରୋପ୍‌ରେ ବିଶେଷତଃ ବିଲାତରେ ବର୍ଣ୍ଣ ବିଚାରରେ ଦକ୍ଷିଣ ଆଫ୍ରିକାର ବିଭକ୍ତିକରଣକୁ ଘୋର ସମାଲୋଚନା କରାଯାଉଥାଏ । ସେଇ ପରିପ୍ରେକ୍ଷୀରେ ତାଙ୍କ ସରକାରଙ୍କ ବର୍ଣ୍ଣ ବୈଷମ୍ୟ ନୀତି ସମ୍ପର୍କରେ ମିସେ୍ ଜେରାଲ୍ଡ଼୍ଙ୍କ ମତାମତ ଜାଣିବାକୁ ମୁଁ ଆଗ୍ରହୀ ହେଲି ।

ୟୁରୋପ୍ ଭ୍ରମଣ ଶେଷରେ ଆମେମାନେ ପୁଣି ଓ୍ୱେଷ୍ଟେଣ୍ଡ୍ ବନ୍ଦରରୁ ବିଲାତକୁ ଜାହାଜ ଧରିବାକୁ ଅପେକ୍ଷା କରିଛୁ, ସେତିକିବେଳେ ମିସେସ୍ ଜେରାଲ୍ଡ଼୍ଙ୍କୁ ମୋର ପ୍ରଶ୍ନଟି ପଚାରି ଦେଲି, 'ଆପଣଙ୍କ ସରକାରଙ୍କ ବର୍ଣ୍ଣବୈଷମ୍ୟ ନୀତି ସମ୍ପର୍କରେ ଆପଣଙ୍କ ମତ କ'ଣ ?' ମିସେସ୍ ଜେରାଲ୍ଡ଼୍ଙ୍କ ହସ ହସ ମୁହଁ ଚିନ୍ତିତ ଦେଖାଗଲା, ଏପରି କି ସେଥିରେ ସ୍ପଷ୍ଟ ହୋଇ ଉଠିଲା ବିରକ୍ତିର ମୁଦ୍ରା । ମୋ ପ୍ରଶ୍ନଟିର ସେ କୌଣସି ସିଧାସଳଖ ସହଜ ଉତ୍ତର ଦେଲେ ନାହିଁ । କେବଳ ପ୍ରକାଶ କରି ଚାଲିଲେ ଗୁଡ଼ାଏ କ୍ରୋଧ – ସାଉଥ୍ ଆଫ୍ରିକାର

କଳାଲୋକ ବା 'ଆଫ୍ରିକାନ୍'ମାନଙ୍କ ବିରୁଦ୍ଧରେ । ତାଙ୍କ କହିବା ଅନୁସାରେ, 'ଏଇ ଆଫ୍ରିକାନ୍‌ମାନେ ଅସଭ୍ୟ, ବର୍ବର, ହୀନ । ଗଣତନ୍ତ୍ର ବା ସଭ୍ୟତା କଥା ସେମାନେ ବୁଝିବେ କ'ଣ ? ସେମାନଙ୍କ ଅତ୍ୟାଚାରରେ ସାଉଥ୍ ଆଫ୍ରିକାର ସଭ୍ୟ ଲୋକେ (ୟୁରୋପୀୟମାନେ) ଅତିଷ୍ଠ ହୋଇ ପଡ଼ିଲେଣି ।'

ଓ୍ୱେଷ୍ଟେଣ୍ଡରେ ବିଲାତ ଅଭିମୁଖେ ଜାହାଜ ଧରିବା ପର୍ଯ୍ୟନ୍ତ ମିସେସ୍ ଜେରାଲ୍ଡ଼୍‌ଙ୍କ ମୁଖମଣ୍ଡଳ ଆଫ୍ରିକାନ୍‌ମାନଙ୍କ ପ୍ରତି ଘୃଣାରେ ଦିଶୁଥିଲା କୁଞ୍ଚିତ ଓ ମଳିନ । ମୋ ପ୍ରତି ତାଙ୍କ ସ୍ନେହ ପାଇଁ ତାଙ୍କୁ କୃତଜ୍ଞତା ଜଣାଇ ଯଥାଶୀଘ୍ର ମୁଁ ତାଙ୍କଠାରୁ ସବୁ ଦିନ ପାଇଁ ବିଦାୟ ନେଲି । ×××

ଭାରତୀୟ ସ୍ୱାଧୀନତା ସଂଗ୍ରାମ ସହିତ ସାଉଥ୍ ଆଫ୍ରିକାର ସମ୍ପର୍କ ସୁବିଦିତ । ପ୍ରଥମେ ଏଇ ସାଉଥ୍ ଆଫ୍ରିକାର ପ୍ରେଟୋରିଆରେ ହିଁ ମହାତ୍ମା ଗାନ୍ଧି ଭାରତୀୟ ଅଧିବାସୀମାନଙ୍କୁ ସଂଘବଦ୍ଧ କରି ଗୋରା ସରକାରଙ୍କ ବର୍ଣ୍ଣ ବୈଷମ୍ୟ ନୀତି ବିରୁଦ୍ଧରେ ଆରମ୍ଭ କରିଥିଲେ ଆନ୍ଦୋଳନ । ସେ ଆନ୍ଦୋଳନର ଆଂଶିକ ସଫଳତାରେ ଉତ୍ସାହିତ ହୋଇ ଫେରି ଆସିଲେ ଭାରତ ଏବଂ ଏକ ବୃହତ୍ତର ପରିପ୍ରେକ୍ଷୀରେ ସାଉଥ୍ ଆଫ୍ରିକାର ଅନୁଭୂତିକୁ ପ୍ରୟୋଗ କଲେ । ମହାତ୍ମା ଗାନ୍ଧି ଭାରତ ଆସିବା ପରେ ପରେ କିନ୍ତୁ ସାଉଥ୍ ଆଫ୍ରିକାରେ ସେ ଆରମ୍ଭ କରିଥିବା ଅହିଂସା ଆନ୍ଦୋଳନର ସମାପ୍ତି ଘଟିଥିଲା । ଆଫ୍ରିକାନ୍‌ମାନେ ଗୋରା ସରକାରଙ୍କ ବିରୁଦ୍ଧରେ ଗାନ୍ଧିଙ୍କ ସମୟଠାରୁ ଯେଉଁ ମୁକ୍ତି ଆନ୍ଦୋଳନ ଚଳାଇ ଆସିଛନ୍ତି, ତାହାକୁ ଅହିଂସାତ୍ମକ ବୋଲି କୁହାଯାଇ ପାରିବ ନାହିଁ ।

ଏସିଆ ଓ ଆଫ୍ରିକାର ବହୁ ଦେଶଭଳି ସାଉଥ୍ ଆଫ୍ରିକା ଅଷ୍ଟାଦଶ ଶତାବ୍ଦୀର କୌଣସି ସମୟରେ ୟୁରୋପୀୟମାନଙ୍କ ଉପନିବେଶରେ ପରିଣତ ହୋଇଥିଲା । କିନ୍ତୁ ଏସିଆ ଓ ଆଫ୍ରିକାର ବହୁ ଦେଶ ଭଳି ଏହା ବର୍ତ୍ତମାନ ସୁଦ୍ଧା ଗଣତନ୍ତ୍ର ଶାସନ ଲାଭ କରିବା ତ ଦୂରର କଥା, ଉପନିବେଶବାଦଠାରୁ ଆହୁରି ଜଘନ୍ୟ – ଆହୁରି ଭୟଙ୍କର ବର୍ଣ୍ଣ ବୈଷମ୍ୟବାଦର ଜୀବାଣୁମାନଙ୍କ ଦ୍ୱାରା ତିଳେ ତିଳେ ଜର୍ଜରିତ ହୋଇ ଉଠୁଛି । ମଣିଷର ଘୃଣା ଯେ କି ଉତ୍କଟ ରାଜନୀତିକ ରୂପ ନେଇପାରେ, ସାଉଥ୍ ଆଫ୍ରିକାର ସାମ୍ପ୍ରତିକ ଇତିହାସ ତାହାର ଜ୍ୱଳନ୍ତ ପ୍ରମାଣ ।

ସାଉଥ୍ ଆଫ୍ରିକା ଆଫ୍ରିକା ମହାଦେଶର ସମୃଦ୍ଧତମ ରାଷ୍ଟ୍ର । ଦେଶଟି ସୁନା, ହୀରା, ତମ୍ବା, ୟୁରାନିୟମ୍ ଖଣିରେ ପୂର୍ଣ୍ଣ; କୃଷି ଉତ୍ପାଦନ ମଧ୍ୟ ପ୍ରଚୁର ଲୋକସଂଖ୍ୟାର ଦୁଇ-ତୃତୀୟାଂଶ ନିଗ୍ରୋ, ଅନ୍ୟମାନେ ୟୁରୋପ୍ ଓ ଏସିଆ ମହାଦେଶର ଅଧିବାସୀଙ୍କ ବଂଶଧର । ମୂଳ ଅଧିବାସୀ ନିଗ୍ରୋମାନେ ଶତାବ୍ଦୀ ଶତାବ୍ଦୀ ଧରି ଥିଲେ ଏକାନ୍ତ ଅନୁନ୍ନତ, ଆଦିମ ପନ୍ଥାରେ ଶିକାର ଓ କୃଷି କରି ଜୀବନ ବିତାଉଥିଲେ । ଏଇ ସମୃଦ୍ଧ ଦେଶଟିକୁ ନିଜର ଉପନିବେଶରେ ପରିଣତ କରିବାକୁ ଅଷ୍ଟାଦଶ-ଊନବିଂଶ ଶତାବ୍ଦୀରେ ପ୍ରବଳ ପ୍ରତିଦ୍ୱନ୍ଦ୍ୱିତା

ହେଲା – ଡଚ୍, ଜର୍ମାନ୍ ଓ ଇଂରେଜମାନଙ୍କ ମଧ୍ୟରେ । ଅବଶେଷରେ ଏହା ଇଂରେଜମାନଙ୍କ ଦଖଲରେ ରହିଲା । କିନ୍ତୁ ସ୍ୱାଧୀନତା ପରେ ଏ ଦେଶରେ ପୁରୁଷାନୁକ୍ରମେ ରହି ଆସିଥିବା ୟୁରୋପୀୟମାନେ ଏ ଦେଶର ନାଗରିକ ହୋଇ ରହିଲେ ଏବଂ ଏ ଦେଶର ରାଜନୀତି ଓ ଅର୍ଥନୀତିକୁ ନିୟନ୍ତ୍ରିତ କରି ଚାଲିଲେ । ଏପରି କି ସ୍ୱାଧୀନ ସାଉଥ୍ ଆଫ୍ରିକା ସରକାରଙ୍କ ନୀତି ହେଲା ବର୍ଣ୍ଣ ବୈଷମ୍ୟ । ୟୁରୋପୀୟ ଓ ଅଣୟୁରୋପୀୟମାନଙ୍କୁ ପରସ୍ପରଠାରୁ ଭିନ୍ନ କରି ରଖିବା ଓ ସେମାନଙ୍କ ପାଇଁ ଭିନ୍ନ ନୀତି ଗ୍ରହଣ କରିବା ହେଲା ଜାତୀୟ ସରକାରଙ୍କ ନୀତି । ଏହି ବର୍ଣ୍ଣ ବୈଷମ୍ୟ ନୀତିର ଚୂଡ଼ାନ୍ତ ପରିଣତି ହୋଇଛି ନିକଟ ଅତୀତରେ ସାଉଥ୍ ଆଫ୍ରିକାର କଳାଲୋକମାନଙ୍କ ପାଇଁ ଅପେକ୍ଷାକୃତ ଅନୁନ୍ନତ ଅଞ୍ଚଳରେ ସ୍ୱତନ୍ତ୍ର 'ହୋମ୍-ଲ୍ୟାଣ୍ଡ' ସୃଷ୍ଟି କରିବା ।

ୟୁରୋପ୍ ଭ୍ରମଣରେ ମୋର ସହଯାତ୍ରୀ ମିସେସ୍ ଜେରାଲ୍ଡ୍‌ଙ୍କ ପୂର୍ବ ପୁରୁଷ ହୁଏତ ଅଷ୍ଟାଦଶ କିମ୍ବା ଊନବିଂଶ ଶତାବ୍ଦୀର କୌଣସି ଅଂଶରେ ସାଉଥ୍ ଆଫ୍ରିକା ଯାଇଥିବେ । ପୁରୁଷାନୁକ୍ରମେ ଗ୍ରୀଷ୍ମକାଳୀନ ଆଫ୍ରିକାରେ ରହି ଆସିଥିବାରୁ ମିସେସ୍ ଜେରାଲ୍ଡ୍‌ଙ୍କ ଚମଡ଼ାର ରଙ୍ଗ ସାବନା, ତାଙ୍କ ଉଚ୍ଚାରଣ ମଧ୍ୟ ଇଂରେଜ ବା ଆମେରିକାନ୍‌ମାନଙ୍କ ସହିତ ମିଶେ ନାହିଁ । ସେ ନିଜେ ଯଦି ଆଜି ବିଲାତ ବା ଆମେରିକାରେ ଆସି ରହନ୍ତେ, ତେବେ ତାଙ୍କୁ ହୁଏତ ଇଂରେଜ ବା ଆମେରିକାନ୍‌ମାନେ 'କଳାଲୋକ' ବୋଲି ହେୟ ଦୃଷ୍ଟିରେ ଦେଖନ୍ତେ । ସେତକ ବୁଝିବା ଭଳି ଶକ୍ତି କିନ୍ତୁ ଯୀଶୁ ମିସେସ୍ ଜେରାଲ୍ଡ୍‌ଙ୍କୁ ଦେଇ ନାହାନ୍ତି ।

ତେବେ ଆଶ୍ୱାସନାର କଥା, ମିସେସ୍ ଜେରାଲ୍ଡ୍ ଜଣେ ସ୍ନେହ ପ୍ରବଣା ମାଆ । ୟୁରୋପ୍ ଭ୍ରମଣ କାଳରେ ତାଙ୍କର ସେଇ ମାତୃସ୍ନେହର ପରିଚୟ ମୁଁ ପାଇଥିଲି । ଆଫ୍ରିକାନ୍‌ମାନଙ୍କ ପ୍ରତି ଯେତେ ଘୃଣା ପ୍ରକାଶ କରିଥିଲେ ମଧ୍ୟ ମିସେସ୍ ଜେରାଲ୍ଡ୍‌ଙ୍କ ହୃଦୟରେ ଲୁକ୍‌କାୟିତ ମାତୃସ୍ନେହ ଦିନେ ଆଫ୍ରିକାନ୍‌ମାନଙ୍କ ପାଇଁ ଯେ ବିକଶିତ ନ ହେବ, ଏହା କିଏ କହିବ ? (୧୯୭୯)



## ଆମ୍‌ଷ୍ଟର୍‌ଡ୍ୟାମ୍‌ର ବିରାଡ଼ି

ଆମଷ୍ଟର୍‌ଡ୍ୟାମ୍‌ର କୌଣସି ଏକ କେନାଲ୍‌ରେ ମୋଟର ଲଞ୍ଚ୍ ଯୋଗେ ଆମେ ଟୁରିଷ୍ଟମାନେ ଜଳ ବିହାର କରୁଛୁ, ଚିତ୍କାର କରିଉଠିଲା ବେଲ୍‌ଜିୟାନ୍ ଗାଇଡ୍ ରାଲ୍‌ଫ୍, 'ଏଇ ଦେଖ ସେ ଡଙ୍ଗାରେ ଶତାଧିକ ବିରାଡ଼ି, ବିଭିନ୍ନ ଆକାରର, ବିଭିନ୍ନ ରଙ୍ଗର ।' ସେମାନଙ୍କ ଡଙ୍ଗାଟି କେନାଲ୍ ଜଳରେ ଅବଲୀଳା କ୍ରମେ ଭାସି ଚାଲିଥାଏ । ବିଲେଇଗୁଡ଼ିକ

ଜଳ ଯାତ୍ରାରେ ଏକାନ୍ତ ଅଭ୍ୟସ୍ତ ନିଶ୍ଚୟ । ସେମାନଙ୍କଠାରେ ଟିକିଏ ବି ଚାଞ୍ଚଲ୍ୟ ନ ଥାଏ; ସେମାନଙ୍କ ଗତିବିଧି ସମ୍ପୂର୍ଣ୍ଣ ସ୍ୱାଭାବିକ, ଅବିଚଳିତ ।

ଆମେ ଟୁରିଷ୍ଟମାନେ ସ୍ୱାଭାବିକ ଭାବେ କୌତୂହଳୀ ହୋଇ ଉଠିଲୁ । ଡଙ୍ଗାରେ ଶତାଧିକ ବିଲେଇଙ୍କ ସମାବେଶଠାରୁ ଅଧିକ ବିଚିତ୍ର ଅଧିକ ଆମୋଦଦାୟକ ଦୃଶ୍ୟ ଆଉ କ'ଣ ଥାଇପାରେ ? ରାଲ୍‌ଫ ନାଟକୀୟ ରୀତିରେ ପରିବେଷଣ କଲା ତଥ୍ୟ – "ଆମ୍‌ଷ୍ଟର୍‌ଡ୍ୟାମ୍‌ରେ ଅଳ୍ପ କେତେକ ବର୍ଷ ତଳେ ବୁଲାବିରାଡ଼ିମାନେ ନଗରର ପ୍ରଶାସକମାନଙ୍କୁ ମହା ସମସ୍ୟାରେ ପକାଇଲେ । ସେମାନଙ୍କ ସଂଖ୍ୟା ଏତେ ହେଲା ଯେ ରାସ୍ତା, ରେସ୍ତୋରାଁ ସବୁଠାରେ ମିଆଁଉ ଶବ୍ଦ ଶୁଣାଗଲା । କ'ଣ କରାଯାଏ ବିଲେଇଗୁଡ଼ିକୁ ? ଅବଶ୍ୟ ହତ୍ୟା କରିବା ସବୁଠାରୁ ସହଜ ଉପାୟ । କିନ୍ତୁ ହତ୍ୟା ପ୍ରସଙ୍ଗ ଉଠାଇବା ମାତ୍ରେ Society for Prevention of Cruelty to Animals ଦେଶସାରା ଏପରି ଆନ୍ଦୋଳନ ଆରମ୍ଭ କରିଦେବେ ଯେ, ସମସ୍ୟାଟି ଜଟିଳତର ହୋଇପଡ଼ିବ । ତେଣୁ ବିଜ୍ଞ ପ୍ରଶାସକମାନେ ସ୍ଥିର କଲେ, ସେମାନେ ବିରାଡ଼ିମାନଙ୍କୁ ହତ୍ୟା ନ କରି ସେମାନଙ୍କ ପାଇଁ ବାସଗୃହ ଓ ଖାଦ୍ୟପେୟ ପ୍ରଭୃତିର ବନ୍ଦୋବସ୍ତ କରି ଦେବେ । ତାହା ହିଁ ହେଲା । ଆମ୍‌ଷ୍ଟର୍‌ଡ୍ୟାମ୍‌ର ବୁଲା ବିରାଡ଼ିମାନେ ସରକାରୀ ଖର୍ଚ୍ଚରେ ପ୍ରଚୁର ଖାଦ୍ୟପେୟ ଉଦରସ୍ଥ କରି ନୌକା ଗୃହରେ ସ୍ୱଚ୍ଛନ୍ଦରେ ବଂଶ ବଢ଼ାଇ ଚାଲିଲେ ।'

ଏଥିରେ କିନ୍ତୁ ସରକାରଙ୍କର କ୍ଷତି ନ ହୋଇ ଲାଭ ହିଁ ହେଲା । ଟୁରିଷ୍ଟମାନଙ୍କ ପାଇଁ ଆମ୍‌ଷ୍ଟର୍‌ଡ୍ୟାମ୍‌ର ବହୁ ଦର୍ଶନୀୟ ବସ୍ତୁ ମଧ୍ୟରେ ନୂତନତମ ସଂଯୋଜନଟି ହେଲା ନୌକା ଗୃହରେ ଅସଂଖ୍ୟ ବିରାଡ଼ି ।

ବୁଲା ବିରାଡ଼ିମାନଙ୍କୁ ଟୁରିଷ୍ଟମାନଙ୍କ ପାଇଁ ଏକ ଆକର୍ଷଣରେ ପରିଣତ କରିବାର ପରିକଳ୍ପନା କେବଳ ଡଚ୍‌ମାନେ ହିଁ କରିପାରନ୍ତି । କେବଳ ଡଚ୍‌ମାନେ ହିଁ ଏକଦା ପରିତ୍ୟକ୍ତ ଖାଲ ଜମିକୁ ପରିଣତ କରିପାରନ୍ତି କଳା ଓ ସୌନ୍ଦର୍ଯ୍ୟର ଆଧାର ନେଦର୍‌ଲାଣ୍ଡ ବା ହଲାଣ୍ଡ ଦେଶରେ ।

ବେଲଜିୟମ୍ ସୀମା ଅତିକ୍ରମ କରି ଆମର କୋଚ୍‌ଟି ହଲାଣ୍ଡରେ ପ୍ରବେଶ କରିବା ମାତ୍ରେ ପ୍ରଗଳ୍‌ଭ ହୋଇଉଠିଲା ରାଲ୍‌ଫ – 'ବର୍ତ୍ତମାନ ଆମେ ଡଚ୍‌ମାନଙ୍କ ଦେଶକୁ ଆସିଲେ । ଆପଣମାନେ ଜାଣନ୍ତି, ଡଚ୍‌ମାନଙ୍କ ମଧ୍ୟରେ ପ୍ରବାଦଟି ପ୍ରଚଳିତ ଅଛି – ଈଶ୍ୱର ପୃଥିବୀ ସୃଷ୍ଟି କଲେ, କିନ୍ତୁ ଡଚ୍‌ମାନେ ସୃଷ୍ଟି କଲେ ହଲାଣ୍ଡ ।'

ପ୍ରବାଦଟିରେ ଅତିରଞ୍ଜନ ଆଦୌ ନାହିଁ । ନେଦର୍‌ଲାଣ୍ଡ ବା ହଲାଣ୍ଡ ନାମରେ ପରିଚିତ ଏଇ କ୍ଷୁଦ୍ର ଦେଶଟି (ଆୟତନ ପ୍ରାୟ ଷୋଳ ହଜାର ବର୍ଗମାଇଲ୍; ଓଡ଼ିଶାର ଏକ ଚତୁର୍ଥାଂଶ) ସୁଦୂର ଅତୀତରେ ୟୁରୋପ୍ ମହାଦେଶର ନର୍ଦ୍ଦମା ରୂପେ ହିଁ ପରିଚିତ ଥିଲା । ସମୁଦ୍ର

ପତ୍ତନଠାରୁ ନିମ୍ନଜମି ନର୍ଦ୍ଦମା ବ୍ୟତୀତ ଆଉ କ'ଣ ବା ହୋଇପାରେ ? ଖଣିଜ ବା ପ୍ରାକୃତିକ ସମ୍ପଦ ବୋଲି କିଛି ହେଲେ ଥା'ନ୍ତା ! ତାହା ମଧ୍ୟ ନାହିଁ, ଈଶ୍ୱରଙ୍କ ଦ୍ୱାରା ଅବହେଳିତ ଏଇ ଅଞ୍ଚଳଟିକୁ କିନ୍ତୁ ଡଚ୍‌ମାନେ ସେମାନଙ୍କ ବୁଦ୍ଧି ଓ ଅଧ୍ୟବସାୟର ଯାଦୁକରି ସ୍ୱର୍ଗରେ ସମ୍ପୂର୍ଣ୍ଣ ରୂପାନ୍ତରିତ କରିଦେଲେ । କୃଷି, ଗୋପାଳନ ପାଇଁ ସେମାନେ ଏଇ 'ନର୍ଦ୍ଦମା'କୁ ପ୍ରକୃଷ୍ଟ କ୍ଷେତ୍ର ରୂପେ ବ୍ୟବହାର କଲେ । ଟିଉଲିପ୍ ଫୁଲ ଓ ଛେନା ରପ୍ତାନି କରି ସେମାନେ ବର୍ଷକୁ ନିୟୁତ ନିୟୁତ ଗିଲ୍‌ଡ଼ାର୍ ଉପାର୍ଜନ କରନ୍ତି, ତା'ଛଡ଼ା ହୀରା ବ୍ୟବସାୟ, ଲବଣ, ମତ୍ସ୍ୟ ଓ ପେଟ୍ରୋଲିୟମ୍ ଶିଳ୍ପ ମଧ୍ୟ ବହୁ ଲୋକଙ୍କ କର୍ମସଂସ୍ଥାନ କରେ ।

ବ୍ୟବସାୟ ବାଣିଜ୍ୟରେ ଡଚ୍‌ମାନେ ଏକ ସମୟରେ ଇଂରେଜ ତଥା ଅନ୍ୟ ଯେକୌଣସି ଜାତିଠାରୁ ଅଧିକ ପାରଙ୍ଗମ ଥିଲେ ଏବଂ ପଞ୍ଚଦଶ ଶତାବ୍ଦୀ ବେଳକୁ ଆମଷ୍ଟର୍‌ଡ୍ୟାମ୍ ୟୁରୋପୀୟ ଅର୍ଥନୀତିର 'ହୃତ୍‌ପିଣ୍ଡ' ରୂପେ ପରିଗଣିତ ହେଉଥିଲା । ମହାନଗରୀ ଲଣ୍ଡନ୍‌ର ଅଭ୍ୟୁଦୟ ସପ୍ତଦଶ ଶତାବ୍ଦୀର ପରବର୍ତ୍ତୀ ଘଟଣା । ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀରେ ଉପନିବେଶ ସ୍ଥାପନ ପାଇଁ କ୍ଷୁଦ୍ର ଡଚ୍‌ଜାତିଟି ଜଳପଥରେ ପୃଥିବୀର କ୍ଷୁଦ୍ର ବୃହତ୍ ସମସ୍ତ ଦେଶକୁ ସ୍ପର୍ଶ କରିଥିଲା । ଏକ ସମୟରେ ସେମାନେ ଓଡ଼ିଶାର ପିପିଲିରେ ମଧ୍ୟ ସେମାନଙ୍କ ଡେରା ପକାଇ ଥିଲେ ।

ଓଡ଼ିଆ ଭାଷାରେ ବର୍ତ୍ତମାନ ମଧ୍ୟ କେତୋଟି ଡଚ୍ ଶବ୍ଦ ପ୍ରଚଳିତ । ଆମଷ୍ଟର୍‌ଡ୍ୟାମ୍‌ର ଯେଉଁ ହୋଟେଲରେ ମୁଁ ରହୁଥିଲି, ତାହାର କୋଠରି ସମ୍ମୁଖରେ ଲେଖା ହୋଇଥିଲା – କମ୍‌ରା (Kamara) ଏବଂ ଓଡ଼ିଆରେ କୌଣସି କୌଣସି ଅଞ୍ଚଳରେ ବୁଢ଼ାମାନେ କୋଠରିକୁ 'କମ୍‌ରା' କହିବା ମୁଁ ଶୁଣିଛି ।

ହଲାଣ୍ଡର ପ୍ରାକୃତିକ ସୌନ୍ଦର୍ଯ୍ୟ ଅପୂର୍ବ । ସ୍ଥଳଭାଗ ମୋଟାମୋଟି ସମତଳ । ସମଗ୍ର ଦେଶର ପ୍ରାୟ ଦୁଇ–ପଞ୍ଚମାଂଶ ଜମି ଏକଦା ସମୁଦ୍ର ଗର୍ଭରେ ନିମଜ୍ଜିତ ଥିଲା । 'ଡାଇକ୍' ନିର୍ମାଣ କରି ସମୁଦ୍ରଜଳ ନିଷ୍କାସନ କରି ଡଚ୍‌ମାନେ ସେମାନଙ୍କ ଦେଶର ଆୟତନ ବଢ଼ାଇଛନ୍ତି । ସ୍ଥଳଭାଗର ସ୍ୱଳ୍ପତା ହେତୁ ଗୃହଗୁଡ଼ିକ କ୍ଷୁଦ୍ର କ୍ଷୁଦ୍ର । ପଲ୍ଲୀ ଅଞ୍ଚଳରେ ତଥାପି ମଧ୍ୟଯୁଗୀୟ ପରିବେଶ ଅକ୍ଷୁଣ୍ଣ ରହିଛି । ଆମଷ୍ଟର୍‌ଡ୍ୟାମ୍ ଯିବା ବାଟରେ ଡଚ୍ ଗ୍ରାମ ସବୁ ଦୃଷ୍ଟିରେ ପଡ଼ିଲା । ବହୁ କୃଷକଙ୍କ ବାସଗୃହ ଗୋଟିଏ ମାତ୍ର ବଖରା । ତାହାରି ମଧ୍ୟରେ ସେମାନଙ୍କ ପରିବାର ଓ ଗୋରୁ ଗାଈ । କୁଟା ଜାଳି ଘର ଗରମ ରଖାଯାଏ । ଅଳ୍ପ ଖର୍ଚ୍ଚରେ ମନୁଷ୍ୟ ଓ ଜୀବଜନ୍ତୁ ନିଜକୁ ଉଷ୍ମ ରଖନ୍ତି । ତଥାପି ଗାଉଁଲି ଡଚ୍‌ମାନେ କାଠର ଜୋତା ପିନ୍ଧନ୍ତି । ହଲାଣ୍ଡର କୃଷିକ୍ଷେତ୍ରମାନଙ୍କରେ ପବନ କଳ ସବୁ ଦୂରରୁ ମଧ୍ୟଯୁଗୀୟ ଦୈତ୍ୟର ଭ୍ରମ ସୃଷ୍ଟି କରନ୍ତି ।

ନବେଗୋଟି କ୍ଷୁଦ୍ର କ୍ଷୁଦ୍ର ଦ୍ୱୀପକୁ ନେଇ ଗଢ଼ି ଉଠିଛି ଆମଷ୍ଟର୍‌ଡ଼୍ୟାମ୍ ନଗର, ଛଅଶହ ସେତୁ ଦ୍ୱାରା ଏଇ ଦ୍ୱୀପସବୁ ସଂଯୁକ୍ତ । ସେଥିପାଇଁ ଅନେକ ଏହାକୁ ଭେନିସ୍ ସହିତ ତୁଳନା କରିଥା'ନ୍ତି । ଆମଷ୍ଟର୍‌ଡ଼୍ୟାମ୍ ଅନେକାଂଶରେ ଲଣ୍ଡନ୍ ଭଳି ହିଁ ଦିଶେ ।

ସହନଶୀଳତା ଓ ଆତିଥେୟତା ପାଇଁ ଡଚ୍‌ମାନଙ୍କର ବେଶ୍ ସୁନାମ ଅଛି । ଡଚ୍ ଭାଷାଭାଷୀଙ୍କ ସଂଖ୍ୟା ମୋଟେ ଦେଢ଼କୋଟି । କିନ୍ତୁ ଔପନିବେଶିକ ଶକ୍ତି ଭାବରେ ସେମାନଙ୍କ ଗୌରବ ଅସ୍ତମିତ ହୋଇ ସାରିଥିଲେ ହେଁ ପୃଥିବୀର ବ୍ୟବସାୟ ବାଣିଜ୍ୟରେ ତଥାପି ଡଚ୍‌ମାନଙ୍କ କର୍ତ୍ତୃତ୍ୱ ଯଥେଷ୍ଟ । ଆନ୍ତର୍ଜାତିକ ନଗରମାନଙ୍କରେ ଡଚ୍‌ମାନେ ବିଭିନ୍ନ କ୍ଷେତ୍ରରେ ତୀବ୍ର ପ୍ରତିଯୋଗିତାରେ ଅବତୀର୍ଣ୍ଣ । ୧୯୭୪ରେ ଲଣ୍ଡନ୍‌ରେ ପହଞ୍ଚି ଯେଉଁ ଭଦ୍ରବ୍ୟକ୍ତିଙ୍କୁ ପ୍ରଥମେ ମୁଁ ଲଣ୍ଡନ୍‌ର ରାସ୍ତା ସମ୍ପର୍କରେ ପ୍ରଶ୍ନ କରିଥିଲି, ସେ ମୋତେ ବିନୟର ସହିତ କହିଥିଲେ, 'କ୍ଷମା କରିବେ, ମୋତେ ମଧ୍ୟ ଲଣ୍ଡନ୍‌ର ରାସ୍ତା ଭଲଭାବରେ ଜଣା ନାହିଁ । ମୁଁ ଜଣେ ଡଚ୍ ।' (୧୯୭୯)



## ହୋଟେଲ ସ୍ୱାଣ୍ଡର୍ ଓ ରେମ୍‌ବ୍ରାଣ୍ଟ୍

ହଲାଣ୍ଡରେ ରହଣି କାଳରେ ଗୋଟିଏ ରାତ୍ରି ମୁଁ କଟାଇଥିଲି ହୋଟେଲ୍ ସ୍ୱାଣ୍ଡର୍‌ରେ । ଆମଷ୍ଟର୍‌ଡ଼୍ୟାମ୍ ସୀମାନ୍ତରେ ମଧ୍ୟମ ଶ୍ରେଣୀୟ ହୋଟେଲଟିଏ – ସମୁଦ୍ର କୂଳକୁ ସ୍ପର୍ଶ କରିଛି । ହୋଟେଲ୍ ଓ ସମୁଦ୍ର ମଧ୍ୟରେ ଡାଇକ୍ – ହୋଟେଲ୍‌ର ଚଟାଣ ସମୁଦ୍ର ପତ୍ତନଠାରୁ ନିମ୍ନରେ । ଡାଇକ୍ ଯୋଗୁଁ ସମୁଦ୍ରର ବେଳାଭୂମି କିମ୍ବା ଲହଡ଼ିମାନଙ୍କ ଗର୍ଜନ ନାହିଁ । ସମୁଦ୍ର ମନେ ହେଉଛି ବିରାଟ ହ୍ରଦପରି । ସନ୍ଧ୍ୟାରେ ଆମେ ଟୁରିଷ୍ଟମାନେ ହୋଟେଲ୍‌ରେ ପହଞ୍ଚିବା ବେଳକୁ ପାଗଟି ଥିଲା ଖୁବ୍ କୁହୁଡ଼ିଆ । ପବନରେ ହାଲୁକା ମେଘଖଣ୍ଡ ପରି ଭାସି ବୁଲୁଥାଏ କୁହୁଡ଼ି । ସମୁଦ୍ରର ଜଳରାଶି ସ୍ଥିର କୁହୁଡ଼ି ରଙ୍ଗ । ତା' ଉପରେ ଭାସମାନ ଧଳା ରଙ୍ଗର ଡଙ୍ଗାସବୁ । ସ୍ୱପ୍ନ ଜଗତର ରହସ୍ୟମୟ ପରିବେଶ ।

ବାହାରର ପ୍ରାକୃତିକ ସୌନ୍ଦର୍ଯ୍ୟ ସହିତ ସମତା ରକ୍ଷା କରିଥାଏ ହୋଟେଲ୍ ସ୍ୱାଣ୍ଡର୍‌ର ଅଭ୍ୟନ୍ତରର ସାଜସଜ୍ଜା । ହୋଟେଲ୍ ଅଭ୍ୟନ୍ତରରେ ମଧ୍ୟଯୁଗୀୟ ପରିବେଶ । ହଠାତ୍ ମନେହୁଏ, ହୋଟେଲ୍ ନୁହେଁ, କୌଣସି ଏକ ଯାଦୁଘର । ହୋଟେଲ୍‌ରେ କାଠର ବ୍ୟବହାର ଅଧିକ । ଶିଡ଼ିର ସମ୍ମୁଖ ଭାଗରେ କାଠର ଚମତ୍କାର ମୂର୍ତ୍ତିଗୁଡ଼ିଏ – ମୂର୍ତ୍ତିଗୁଡ଼ିକ ପ୍ରାଚ୍ୟ ରୀତିରେ ନିର୍ମିତ । ଇଣ୍ଡୋନେସିଆ ସହିତ ଡଚ୍‌ମାନଙ୍କ ଔପନିବେଶିକ ସମ୍ପର୍କ ହେତୁ ଏଇ ମୂର୍ତ୍ତିଗୁଡ଼ିକ ହୁଏତ ଇଣ୍ଡୋନେସିଆରୁ ଆନୀତ କିମ୍ବା ଇଣ୍ଡୋନେସିଆର୍ ଭାସ୍କର୍ଯ୍ୟ ଅନୁକରଣରେ

ନିର୍ମିତ । ତଳ ମହଲାରେ ମୋ ପାଇଁ ଉଦ୍ଦିଷ୍ଟ ବଖରାଟିଏ ସତରେ ଅପୂର୍ବ । ସେଥିରେ ସଜ୍ଜିତ କଳାକୃତିଗୁଡ଼ିକ କେତେକାଂଶରେ ଡଚ୍‌ମାନଙ୍କ କଳା ପରମ୍ପରାର ସୂଚନା ଦେଉଥିଲା । କୋଠରିର ଗୋଟିଏ କୋଣରେ ଦୁଇଟା ବଡ଼ କୋଠା ଓ ଗୋଟିଏ ପୁରୁଣା ସୂତାକଟାକଳ । ଥାକମାନଙ୍କରେ ସଜ୍ଜିତ ପିତଳ ଓ ତମ୍ବାର ପାତ୍ର ସବୁ । ଚିନା ମାଟିର ଅନେକଗୁଡ଼ିଏ ଚିତ୍ରିତ ପ୍ଲେଟ୍, ପେଣ୍ଟିଂ ଓ ଲେସ୍‌କାମ । ସବୁଥିରେ ଡଚ୍‌ମାନଙ୍କ ସ୍ୱକୀୟତା ଓ ପରମ୍ପରାର ଛାପ । ଉଲ୍ଲେଖ କରାଯାଇପାରେ, ବର୍ତ୍ତମାନ ସୁଦ୍ଧା ଡଚ୍ ଗ୍ରାମମାନଙ୍କରେ ବହୁ କୃଷକ ପାରମ୍ପରିକ କାଠକୋଠା ବ୍ୟବହାର କରନ୍ତି ଏବଂ ପିତଳ ଓ ତମ୍ବା ପାତ୍ର ସବୁର ବ୍ୟବହାର ଆଭିଜାତ୍ୟ ଓ କଳାପ୍ରୀତି ରୂପେ ବିବେଚିତ ହୁଏ ।

ହୋଟେଲ୍‌ରେ ଲଗେଜ୍ ପ୍ରଭୃତି ରଖି ଆମେ କେତେଜଣ ଅଳ୍ପ ସମୟ ପାଇଁ ବାହାରକୁ ଆସିଲୁ । ବାହାରେ ପ୍ରଚୁର ଥଣ୍ଡା, କୁହୁଡ଼ି – ଅଖଣ୍ଡ ନୀରବତା । ରାସ୍ତାର ବିଦ୍ୟୁତ୍ ଆଲୋକ କୋମଳ ଓ ମ୍ଳାନ । ସନ୍ଧ୍ୟା ପରେ ସୁଦ୍ଧା କେତୋଟି ସୋଭେନିର୍ ଦୋକାନ ତଥାପି ଖୋଲା ଥିଲା । ହୋଟେଲ ସ୍ୱାଣ୍ଡର୍ ଓ ନିକଟବର୍ତ୍ତୀ ହୋଟେଲ୍‌ମାନଙ୍କର ଟୁରିଷ୍ଟ୍‌ମାନଙ୍କ ପାଇଁ ଏଇ ସୋଭେନିର୍ ଦୋକାନ ତଥାପି ଖୋଲା ଥିଲା । ହୋଟେଲ୍ ସ୍ୱାଣ୍ଡର୍ ଓ ନିକଟବର୍ତ୍ତୀ ହୋଟେଲ୍‌ମାନଙ୍କରେ ଟୁରିଷ୍ଟମାନଙ୍କ ପାଇଁ ଏଇ ସୋଭେନିର୍ ଦୋକାନ । ହଲାଣ୍ଡକୁ ଭୁଲି ନ ଯିବା ପାଇଁ ସୋଭେନିର୍ ଅର୍ଥାତ୍ ସ୍ମୃତିସନ୍ତକମାନେ ଏଇ ଦୋକାନଗୁଡ଼ିକରେ ବିକ୍ରୟ ହୁଏ । କ୍ଷୁଦ୍ର କ୍ଷୁଦ୍ର କାଠ କୋଠା, ପବନ କଳ, ଲେସ୍‌କାମ୍, ଡାକ ଟିକେଟ୍ ପ୍ରଭୃତି ପାଇଁ ଟୁରିଷ୍ଟ୍‌ମାନଙ୍କ ଆଗ୍ରହ । × × ×

ପୂର୍ବରୁ ଲେଖିଥିଲି, ହଲାଣ୍ଡ୍ ଦେଶଟି ଅତ୍ୟନ୍ତ କ୍ଷୁଦ୍ର – ଏହାର କ୍ଷେତ୍ରଫଳ ଓଡ଼ିଶା ରାଜ୍ୟର ଏକ-ଚତୁର୍ଥାଂଶ, ଜନସଂଖ୍ୟା ମାତ୍ର ଦେଢ଼ କୋଟି । କିନ୍ତୁ ଏଇ କ୍ଷୁଦ୍ର ଦେଶଟି ଯେ ଏକଦା ସାମ୍ରାଜ୍ୟବାଦ ଯୁଗରେ ଏକ ପ୍ରଚଣ୍ଡ ରାଜନୀତିକ ଓ ଆର୍ଥନୀତିକ ଶକ୍ତି ଥିଲା, ତା' ନୁହେଁ, ପୃଥିବୀର କଳା, ଜ୍ଞାନ ଓ ଦର୍ଶନର ଇତିହାସରେ ମଧ୍ୟ ଏହା ଏକ ସମ୍ଭ୍ରାନ୍ତ ସ୍ଥାନ ଦାବିକରେ ।

ଏଇ କ୍ଷୁଦ୍ର ଦେଶଟି ରେମବ୍ରାଣ୍ଡ୍ ଓ ଭିନସେଣ୍ଟ୍ ଭାନ୍‌ଗଗ୍‌ଙ୍କ ଭଳି ଯୁଗପ୍ରବର୍ତ୍ତକ ଚିତ୍ରଶିଳ୍ପୀମାନଙ୍କୁ ସୃଷ୍ଟି କରିବା କେବଳ ଏକ ଆକସ୍ମିକତା ବୋଲି ଲଘୁ ଭାବରେ ଗ୍ରହଣ କରାଯାଇ ନ ପାରେ । ଭାରତ ଭଳି ଉପମହାଦେଶରେ ସୁଦ୍ଧା ରେମ୍‌ବ୍ରାଣ୍ଡ୍ ବା ଭାନ୍‌ଗଗ୍‌ଙ୍କ ଭଳି ଚିତ୍ରଶିଳ୍ପୀ କେତେଜଣ ବା ଜନ୍ମ ହୋଇଛନ୍ତି ? ଏଭଳି ପ୍ରତିଭାମାନଙ୍କ ସୃଷ୍ଟି ଓ ବିକାଶ ମୂଳରେ ସେମାନଙ୍କ ଦେଶ ଓ ପରିବେଶ କିଛି ଭୂମିକା ଗ୍ରହଣ କରିଥାଏ କି ?

ଯେକୌଣସି ପ୍ରତିଭା ଈଶ୍ୱର ସୃଷ୍ଟ ବୋଲି ଯୁକ୍ତି କରାଗଲେ ମଧ୍ୟ ପ୍ରତିଭାଟିର ପୂର୍ଣ୍ଣବିକାଶ ପାଇଁ ସମାଜ, ଦେଶ ଓ ପରିବେଶର ଯଥେଷ୍ଟ ଅବଦାନ ରହିପାରେ । ସେଥିପାଇଁ ବିଶେଷତଃ ୟୁରୋପ୍‌ରେ ବହୁ କବି, କଳାକାର ଓ ଶିଳ୍ପୀ ସେମାନଙ୍କ ପ୍ରତିଭାର ବିକାଶ ପାଇଁ ଅନୁକୂଳ କ୍ଷେତ୍ର ଅନୁସନ୍ଧାନରେ ବହୁ ସମୟରେ ନିଜ ଦେଶ ଛାଡ଼ି ଅନ୍ୟ ଦେଶରେ ବସବାସ କରନ୍ତି ।

ଲଣ୍ଡନ୍, ପ୍ୟାରିସ୍ ଭଳି ନଗରମାନଙ୍କରେ କେବଳ ଇଂରେଜ ଫରାସୀ ନୁହଁନ୍ତି, ଅନ୍ୟ ଭାଷାଭାଷୀ ବିଦେଶୀ ଲେଖକ ଓ ଶିଳ୍ପୀମାନଙ୍କ ସଂଖ୍ୟା କିଛି କମ୍ ନୁହେଁ । ଉଦାହରଣ ସ୍ୱରୂପ – ୱେଷ୍ଟଇଣ୍ଡିଜ୍ ଭଳି ଅନୁନ୍ନତ ଇଂରାଜୀଭାଷୀ ଦେଶର ସମସ୍ତ ମୁଖ୍ୟ ଲେଖକମାନଙ୍କୁ ଲଣ୍ଡନ୍ ସହରରେ ହିଁ ସାକ୍ଷାତ କରାଯାଇପାରେ ।

ହଲାଣ୍ଡ ଭଳି କ୍ଷୁଦ୍ର ଦେଶଟି ଯେ ରେମବ୍ରାଣ୍ଟ ଓ ଭାନ୍‌ଗଗ୍‌ଙ୍କ ଭଳି ଚିତ୍ରଶିଳ୍ପୀଙ୍କୁ ସୃଷ୍ଟି କରିପାରିଲା, ଏହାର କାରଣ କେତେକାଂଶରେ ହୋଟେଲ୍ ସାଣ୍ଡର୍‌ର ଆଭ୍ୟନ୍ତରୀଣ ସାଜସଜ୍ଜାରୁ ହିଁ ବୁଝି ହୁଏ । ହୋଟେଲ୍ ଭଳି ବ୍ୟବସାୟିକ ସଂସ୍ଥାଟିରେ ଯାଦୁଘରର ପରିବେଶ ସୃଷ୍ଟି କରିବା ଡଚ୍‌ମାନଙ୍କ କଳାପ୍ରୀତିର ନିଦର୍ଶନ ଏବଂ କଳାପ୍ରୀତି ଡଚ୍‌ମାନଙ୍କ ଚରିତ୍ରର ଏକ ଉଲ୍ଲେଖଯୋଗ୍ୟ ଅଂଶ । ଓଡ଼ିଶା ରାଜ୍ୟର ଏକଚତୁର୍ଥାଂଶ କ୍ଷେତ୍ରଫଳ ବିଶିଷ୍ଟ ହଲାଣ୍ଡ ଦେଶରେ ସରକାରୀ ଯାଦୁଘର ବା ମିଉଜିୟମ୍‌ର ସଂଖ୍ୟା ଚାଳିଶ, ଆର୍ଟ୍–ଗ୍ୟାଲେରୀର ସଂଖ୍ୟା ଚାରିଶତ । କଳା ପ୍ରତି ଡଚ୍‌ମାନଙ୍କ ପୃଷ୍ଠପୋଷକତାର ଏହା ନିଶ୍ଚିତ ପ୍ରମାଣ ।

କଳାପ୍ରାଣ ଡଚ୍‌ମାନେ ସପ୍ତଦଶ ଶତାବ୍ଦୀ ବେଳକୁ ଉତ୍କର୍ଷତାରେ ୟୁରୋପ୍‌ରେ ଅନ୍ୟ ଦେଶମାନଙ୍କୁ ଅତିକ୍ରମକରି ସାରିଥିଲେ । ସପ୍ତଦଶ ଶତାବ୍ଦୀର ଚିତ୍ରଶିଳ୍ପୀ ରେମ୍‌ବ୍ରାଣ୍ଟ ଥିଲେ ସମକାଳୀନ ୟୁରୋପ୍‌ର ଶ୍ରେଷ୍ଠତମ ଶିଳ୍ପୀ । ତାଙ୍କର କୌଣସି ବିଶ୍ୱବିଦ୍ୟାଳୟ ଡିଗ୍ରୀ ନ ଥିଲା । କିନ୍ତୁ ଆମ୍‌ଷ୍ଟର୍‌ଡ୍ୟାମ୍‌ରେ ସେ ସ୍ୱଚ୍ଛଳ ଓ ସୁଖୀ ବିବାହିତ ଜୀବନଯାପନ କରିଥିଲେ ଓ ବହୁ ପେଣ୍ଟିଂ ଓ ରେଖାଚିତ୍ର ଅଙ୍କନ କରିଥିଲେ । ଆଲୋକ ଓ ଛାୟାର ଅପୂର୍ବ ସମନ୍ୱୟରେ ତାଙ୍କ ଚିତ୍ରଗୁଡ଼ିକ ଏକାନ୍ତ ଜୀବନ୍ତ ଓ ଗତିଶୀଳ ମନେ ହୁଅନ୍ତି । ସେ ବିଶେଷ ଉଜ୍ଜ୍ୱଳରଙ୍ଗ ବ୍ୟବହାର କରୁ ନ ଥିଲେ ଓ କମ୍ ସଂଖ୍ୟକ ରଙ୍ଗ ବ୍ୟବହାର କରି ଅପୂର୍ବ ପ୍ରଭାବ ସୃଷ୍ଟି କରି ପାରୁଥିଲେ । ମଣିଷ ଚରିତ୍ରମାନଙ୍କ ସହିତ ଅନ୍ତରଙ୍ଗ ବୁଝାମଣା ତାଙ୍କର ପୋଟ୍ରେଟ୍ ବା ପ୍ରତିକୃତିଗୁଡ଼ିକରୁ ବୁଝାପଡ଼େ ।

ଊନବିଂଶ ଶତାବ୍ଦୀର ଚିତ୍ରଶିଳ୍ପୀ ଭିନ୍‌ସେଣ୍ଟ ଭାନ୍‌ଗଗ୍ ପ୍ରାୟ ଆଠଶହ ତୈଳଚିତ୍ର ଓ ସାତଶହ ରେଖାଚିତ୍ର ଛାଡ଼ି ଯାଇଛନ୍ତି । ଚିତ୍ର–ପ୍ରତିଭା ଭଳି ତାଙ୍କ ବ୍ୟକ୍ତିଗତ ଜୀବନ ମଧ୍ୟ ଥିଲା ଏକାନ୍ତ ବୈଚିତ୍ର୍ୟପୂର୍ଣ୍ଣ । ବ୍ରୁସେଲ୍‌ସ୍ ଓ ପ୍ୟାରିସ୍‌ରେ ସେ ଚିତ୍ରକଳା ଅଧ୍ୟୟନ କରିଥିଲେ ଏବଂ ପ୍ରାକୃତିକ ପରିବେଶ ଓ କୃଷକମାନଙ୍କ ଜୀବନରୁ ଚିତ୍ରକଳା ପାଇଁ ଯଥେଷ୍ଟ ପ୍ରେରଣା ପାଇଥିଲେ । ରଙ୍ଗର ଯାଦୁକରି ମାୟା ତାଙ୍କୁ ସାରାଜୀବନ ଅଭିଭୂତ କରି ରଖିଥିଲା । ଚିତ୍ରଗୁଡ଼ିକରେ ସେ ଆକାର, ଓଜନ, ଏପରିକି ଅନୁଭୂତିର ନିବିଡ଼ତା ପ୍ରକାଶ କରିବାକୁ ଉଦ୍ୟମ କରିଥିଲେ । ଭାନ୍‌ଗଗ୍‌ଙ୍କ ଜୀବନୀ ଉପରେ ଆଧାରିତ ଆମେରିକାନ୍ ଲେଖକ ଆର୍‌ଭିଂଷ୍ଟୋନ୍‌ଙ୍କ ଲିଖିତ Lust for Life ପୃଥିବୀର ଏକ ବହୁପଠିତ ଉପନ୍ୟାସ ।

(୧୯୮୦)



# ରିଫିଉଜୀମାନଙ୍କ ଦେଶ

ମାନ୍‌ସନ୍ ହାଉସ୍ ଅଣ୍ଡରଗ୍ରାଉଣ୍ଡ୍ ଷ୍ଟେସନ୍‌ରେ ଅସ୍ୱାଭାବିକ ପରିସ୍ଥିତିରେ ପରିଚୟ ହୁଏ ସିନେକ୍ସ୍ ସହିତ । କେନ୍‌ସିଙ୍ଗଟନ୍ ହାଇଷ୍ଟ୍ରିଟ୍‌ରୁ ଇଷ୍ଟ୍‌ହାମ୍ ଯାଉଥିବା ସମୟରେ ମାନ୍‌ସନ୍ ହାଉସ୍‌ଠାରେ ଟ୍ରେନ୍ ଅଟକିଲା । ଲଣ୍ଡନ୍‌ରେ ସର୍ବତ୍ର ବର୍ତ୍ତମାନ ବୋମାମୟ । କ୍ରିସ୍‌ମାସ୍ ପୂର୍ବରୁ ପ୍ରତିବର୍ଷ ପରି ଏବର୍ଷ ମଧ୍ୟ ଆତଙ୍କବାଦୀ ଆଇ. ଆର୍. ଏ. ପକ୍ଷରୁ ବୋମା ବିସ୍ଫୋରଣ ଆରମ୍ଭ ହୋଇଯାଇଥାଏ । କୌଣସି କାରଣରୁ ସନ୍ଦେହ କଲେ ପୋଲିସ୍ ଅଣ୍ଡର୍‌ଗ୍ରାଉଣ୍ଡ୍ ଟ୍ରେନ୍ କ୍ୟାନ୍‌ସଲ୍ କରିଦେଉଥାନ୍ତି । ଟ୍ରେନ୍ ଅଟକିବାରୁ ମାନସନ୍ ହାଉସ୍‌ରେ ଯାତ୍ରୀମାନେ ଓହ୍ଲାଇ ପଡ଼ିଲେ । ଭୟ ଓ ବିଶୃଙ୍ଖଳା ।

ଅଣ୍ଡର୍‌ଗ୍ରାଉଣ୍ଡ୍ ଷ୍ଟେସନ୍‌ରୁ ବାହାରକୁ ବାହାରି ଆସିଲେ ସମସ୍ତେ – ବସ୍‌ରେ ବା ଟ୍ୟାକ୍ସିରେ ନିଜ ନିଜର ଗନ୍ତବ୍ୟ ସ୍ଥଳକୁ ଯିବାପାଇଁ ।

ଭୟଙ୍କର ଥଣ୍ଡା ଓ ଝିପି ଝିପି ବର୍ଷା । ଡିସେମ୍ବର ପ୍ରଥମ ସପ୍ତାହରେ ଇଂଲାଣ୍ଡରେ ଏହିପରି ପାଗ ଆଶାକରିବା ହିଁ ସ୍ୱାଭାବିକ ।

ଅଣ୍ଡର୍‌ଗ୍ରାଉଣ୍ଡ୍‌ରୁ ବାହାରକୁ ଆସି ବସ୍ ପାଇଁ ଅପେକ୍ଷା କଲି କିଛି ସମୟ । କିନ୍ତୁ ଇଷ୍ଟ୍‌ହାମ୍ ବସ୍‌ର ଦେଖା ନାହିଁ । ସମବେତ ଯାତ୍ରୀମାନଙ୍କ ମଧ୍ୟରେ ଥିଲେ ଜଣେ ଦାଢ଼ିବନ୍ତ, ବିପୁଳକାୟ ପଞ୍ଜାବୀ ବୃଦ୍ଧ । ହିନ୍ଦୀରେ ପ୍ରଶ୍ନକଲେ ସେ, ‘‘ଆପଣ ଯିବେ କେଉଁଠି କି ?’’

‘ଇଷ୍ଟ୍‌ହାମ୍’ । ମୁଁ କହିଲି ।

‘ମୁଁ ମଧ୍ୟ ଇଷ୍ଟ୍‌ହାମ୍ ଯିବି । ବସ୍ ପାଇଁ ଅପେକ୍ଷା ନ କରି ଟ୍ୟାକ୍ସିରେ ଚାଲିଗଲେ ଭଲ ହୁଅନ୍ତା । ଭଡ଼ା ଆମେ ଶେୟାର୍ କରି ଦିଅନ୍ତେ ।’

ତେଣୁ ଟ୍ୟାକ୍ସିଟିଏ ଅଟକାଗଲା । କିନ୍ତୁ ଟ୍ୟାକ୍ସି ଅଟକାଇ ସାରିଲା ବେଳକୁ ବୃଦ୍ଧ ଆଉ ସେଠାରେ ନ ଥିଲେ । ତେବେ ସାବନା ରଙ୍ଗର କ୍ଷୁଦ୍ରକାୟ ତରୁଣ ଜଣେ କହିବାର ଶୁଣାଗଲା, ‘ମୁଁ ମଧ୍ୟ ଯିବି ଇଷ୍ଟ୍‌ହାମ୍ । କିନ୍ତୁ ମୋ ନିକଟରେ ଏତେ ଟଙ୍କା ନାହିଁ । ଇଷ୍ଟ୍‌ହାମ୍ ଟ୍ୟୁବ୍‌ଷ୍ଟେସନ୍ ପାଖରେ ମୋ ଘର । ଆପଣ ଟ୍ୟାକ୍ସିବାଲାକୁ ଭଡ଼ା ଦେଇଦେବେ । ମୁଁ ଘରୁ ଟଙ୍କା ଆଣି ମୋ ଶେୟାର୍ ଦେବି ।’

ଟ୍ୟାକ୍ସିରେ ଆମେ ଆସିଲୁ ଇଷ୍ଟ୍‌ହାମ୍ । ବାଟରେ ଆମର ସଂକ୍ଷିପ୍ତ କଥାବାର୍ତ୍ତା ।

‘ଆପଣ ଆସିଛନ୍ତି ଭାରତରୁ ?’

‘ନା, ଶ୍ରୀଲଙ୍କାରୁ ।’

‘ନାମ ?’

‘ସିନେକ୍ସ୍’

ଲଣ୍ଡନ୍ ମହାନଗରୀରେ ଅପରିଚିତମାନଙ୍କ ସହିତ ଏପରି ଯାତ୍ରା କରିବା ସମ୍ପୂର୍ଣ୍ଣ ନିରାପଦ ନୁହେଁ । ଆତଙ୍କବାଦୀ କାର୍ଯ୍ୟକଳାପର ଭୟ ବେଶ୍ କିଛିବର୍ଷ ହେଲା କୁହୁଡ଼ି ପରି ଆବୋରି ରଖିଛି ଇଂଲାଣ୍ଡ ଓ ୟୁରୋପ୍‌ର ଆକାଶକୁ ।

'ଆପଣ ଏଠାରେ କ'ଣ କରନ୍ତି ?'

'ମୁଁ ଜଣେ ତାମିଲ୍ ରିଫିଉଜୀ । ସାମୟିକ ଚାକିରି ଖଣ୍ଡିଏ ଯୋଗାଡ଼ କରିପାରିଛି ।'

ଆପଣଙ୍କ ପରିବାର ?

'ସମସ୍ତଙ୍କୁ ଏଠାକୁ ନେଇଆସିଛି ।'

ଇଷ୍ଟ୍‌ହାମ୍‌ରେ ଟ୍ୟାକ୍ସିବାଲାର ପୂରା ଭଡ଼ାଟା ଦେଇଦେଲି ମୁଁ । କହିଲେ ସିନେକ୍ସ୍, 'ଆପଣ ଆସନ୍ତୁ ମୋ ସାଥିରେ । ଖୁବ୍ ନିକଟରେ ମୋର ଘର । ମୋ ଶେୟାର୍‌ଟା ଆପଣଙ୍କୁ ଦେଇଦେବି ।''

ଅଗତ୍ୟା ଅନୁସରଣ କଲି ସିନେକ୍ସଙ୍କୁ । ଘରଟା ଇଷ୍ଟ୍‌ହାମ୍ ଷ୍ଟେସନ୍‌ରୁ ପାଞ୍ଚମିନିଟ୍‌ର ରାସ୍ତା । ଘର ପାଖରେ ମୋତେ ସେ ନିମନ୍ତ୍ରଣ କଲେ ଚା' କପେ ପିଇଦେଇ ଯିବାପାଇଁ ।

ଘରଟି କ୍ଷୁଦ୍ର , ଓଦାଳିଆ, ଚଟାଣର ଗାଲିଚା ମଇଳା ଓ ଛିଣ୍ଡା । ବିମର୍ଷ ଓ ନିରାନନ୍ଦ ପରିବେଶ । ଡ୍ରଇଂରୁମ୍‌ରେ ଅପେକ୍ଷା କଲି ।

ଆବିର୍ଭୂତ ହେଲେ ଦୁଇଟି ଶିଶୁ ସିନେକ୍ସଙ୍କ ପୁତ୍ର ନିଶ୍ଚୟ । ଜଣେ ସ୍କୁଲ୍‌ରେ ନାମ ଲେଖାଇଛି , ଆଉ ଜଣେ ସ୍କୁଲ୍‌କୁ ଯାଇ ନାହିଁ । ଇଂରାଜୀ ପ୍ରାୟ ଶିଖି ନାହାନ୍ତି ଏ ଯାଏଁ । ସଂକୀର୍ଣ୍ଣ ଘରଟି ଭିତରେ ଅଧିକାଂଶ ସମୟ ରହନ୍ତି ସେମାନେ । ବାହାରେ ପୃଥିବୀ ସହିତ – ମୋ ପରି ଅତିଥିମାନଙ୍କ ସହିତ – ଅଭ୍ୟସ୍ତ ନୁହନ୍ତି ମୋଟେ । ସେମାନଙ୍କ ସାଥି କଳା-ଧଳା ସେକେଣ୍ଡ ହ୍ୟାଣ୍ଡ୍ ଟେଲିଭିଜନ୍‌ଟିଏ ଓ କେତୋଟି ଶସ୍ତା ଖେଳନା ।

ଚା' ଆଣିଲେ ସିନେକ୍ସ୍ । ସେ ନିଜେ ଚା' ପିଅନ୍ତି ନାହିଁ ମୋଟେ । ତେଣୁ ଗୋଟିଏ କପ୍ ।

'ଆପଣଙ୍କ ସ୍ତ୍ରୀ ?' ପଚାରିଲି ।

'ସେ ହାର୍ଟ୍ ପେସେଣ୍ଟ୍ । ବେଡ୍‌ରେ ପଡ଼ିରହନ୍ତି ପ୍ରାୟ ସମୟ । ମୋତେ ହିଁ ସବୁ କାମ କରିବାକୁ ପଡ଼େ ।'

ମୋର ଚା'ପାନ ଓ ନୀରବତା ।

'ଆପଣ ଚାକିରି ଖଣ୍ଡିଏ ପାଇଗଲେ, ତାହା ଆପଣଙ୍କ ସୌଭାଗ୍ୟ । ବର୍ତ୍ତମାନ ଯେପରି ଛଟ୍‌କଟ୍ ଚାଲିଛି ଇଂଲାଣ୍ଡରେ, ସେ ଅବସ୍ଥାରେ ଆପଣଙ୍କ ପରି ଜଣେ ଏସିଆନ୍ ଚାକିରି ଖଣ୍ଡିଏ ପାଇବା ଯଥାର୍ଥରେ ଏକ ମିରାକ୍‌ଲ୍ ।'

'ସେଥିରେ ସନ୍ଦେହ ନାହିଁ', କହିଲେ ସିନେକ୍ସ୍ । 'କିନ୍ତୁ ଅସ୍ଥାୟୀ ଚାକିରି ଖଣ୍ଡିଏ ଯୋଗାଡ଼୍ କରିଛି ରେସ୍‌ରିଲେସନ୍‌ସ୍ ବୋର୍ଡ୍‌ରେ । ସପ୍ତାହରେ ଦୁଇଦିନ ଯାଏ ।'

'ଚଳିଯାଏ ସେଥିରେ ?'

'ହଁ' ସେ କହିଲେ । 'ଆମର ଚଏସ୍ କାହିଁ ? ଶ୍ରୀଲଙ୍କା ଛାଡ଼ିବାକୁ ହେଲା । ଇଂଲାଣ୍ଡ ହିଁ ଗ୍ରହଣ କଲା ଆମକୁ । ତେଣୁ ଏଇଠି ତ ରହିବାକୁ ହେବ ।'

ଦରିଦ୍ର, ସ୍ୱଦେଶରୁ ବିତାଡ଼ିତ, ହାର୍ଟ୍‌ପେସେଣ୍ଟ ସ୍ତ୍ରୀଟିଏର ସ୍ୱାମୀ, ଦୁଇଟି ସନ୍ତାନର ଜନକ ସିନେକ୍ସ୍ । ଏହିପରି ନୂଆ ଜୀବନ ଆରମ୍ଭ କରିଛନ୍ତି ଇଂଲାଣ୍ଡରେ । ଶ୍ରୀଲଙ୍କା ଆଜି ତାଙ୍କପାଇଁ ଅତୀତ । କିନ୍ତୁ ତାଙ୍କର ନୂତନ ଦେଶ ଇଂଲାଣ୍ଡରେ କେତେଦୂର ସୁରକ୍ଷିତ ତାଙ୍କର ଭବିଷ୍ୟତ ?

ସିନେକ୍ସ୍ ପରି ଅବ୍‌ଦୁଲ୍ଲା ମଧ ଜଣେ ରିଫିଉଜୀ ଇଂଲାଣ୍ଡରେ । କିନ୍ତୁ ସେ ଫେରିଯିବାକୁ ଚାହାନ୍ତି ତାଙ୍କ ଦେଶକୁ । ତାଙ୍କ ମତରେ ନିଜ ଦେଶ ଢେର ଭଲ ଇଂଲାଣ୍ଡଠାରୁ ।

ଭିକ୍ଟୋରିଆ ବସ୍ ଷ୍ଟେସନ୍‌ରେ ବସ୍‌କୁ ଅପେକ୍ଷା କରୁଥିବା ସମୟରେ ଗୋଟିଏ ବେଞ୍ଚରେ କେତେ ମିନିଟ୍ ବସିଥିଲୁ ଆମେ । ସେହି ଅବସରରେ ତାଙ୍କର ପ୍ରଶ୍ନ :

'ଆପଣ ମୁସ୍‌ଲିମ୍' ?

'ନାଁ', ଆପଣଙ୍କ ଦେଶ ?'

'ପାକିସ୍ତାନ ।'

'ଏଠାରେ କ'ଣ କରୁଛନ୍ତି ?'

'ମୁଁ ଜଣେ ପଲିଟିକାଲ୍ ରିଫିଉଜୀ । ବେନଜୀର୍ ଭୁଟ୍ଟୋଙ୍କ ପି.ପି.ର ସମର୍ଥକ ।'

'କିପରି ଚଳୁଛନ୍ତି ?'

'ଛୋଟ ଚାକିରିଟିଏ କରିଛି ଲିଡ୍‌ସ୍‌ରେ । ମୁଁ କିନ୍ତୁ ଏଠି ଆଉ ରହିବି ନାହିଁ ।'

'କେତେବର୍ଷ ରହିଲେଣି ଏଠି ?'

'ଆଠବର୍ଷ ।'

'ରହିବେ ନାହିଁ କାହିଁକି ?'

'କାରଣ ଫାମିଲି ଆଣିବା ପାଇଁ ମୋତେ ଅନୁମତି ମିଳୁ ନାହିଁ ।'

'ଆପଣଙ୍କ ନାମ ?'

'ଅବ୍‌ଦୁଲ୍ଲା ।'

ହିନ୍ଦୁସ୍ତାନୀରେ କଥାବାର୍ତ୍ତା କରୁଥିଲେ ଅବ୍ଦୁଲ୍ଲା । କେବେକେବେ ଭଙ୍ଗା ଇଂରାଜୀରେ । ନିଶହୀନ, ଦାଢ଼ିବନ୍ତ, ରୁକ୍ଷ, ନୃଶଂସ ଚେହେରା । ଦେଖିଲେ ଭୟ ଆସିବାର ସମ୍ଭାବନା ।

ସିନେକ୍‌ସ୍‌ଙ୍କ ପରି ଅବଦୁଲ୍ଲାଙ୍କୁ ବୁଝିବା ଏତେ ସହଜ ନୁହେଁ । ରାଜନୈତିକ କାରଣରୁ ବେଶି ସଂଖ୍ୟକ ରିଫିଉଜୀ ଅବଶ୍ୟ ଆଶ୍ରୟ ନେଇଛନ୍ତି ଇଂଲାଣ୍ଡରେ । କିନ୍ତୁ ଅଧିକ ସୁଖସମୃଦ୍ଧି ଅନୁସନ୍ଧାନରେ ନିଜକୁ 'ରାଜନୈତିକ ରିଫିଉଜୀ' ବୋଲାଇବାର ଲୋକଙ୍କର ଅଭାବ ମଧ ନାହିଁ । ସେଥିପାଇଁ ଇଂଲାଣ୍ଡରେ ହୋମ୍ ଡିପାର୍ଟମେଣ୍ଟ ରାଜନୀତିକ ରିଫିଉଜୀମାନଙ୍କୁ ଗ୍ରହଣ କରିବାରେ ଯଥେଷ୍ଟ ସତର୍କତା ଅନୁସରଣ କରୁଛି ଆଜିକାଲି ।

ଅବ୍ଦୁଲ୍ଲା ସତରେ ଜଣେ ରାଜନୈତିକ ରିଫିଉଜୀ ନା ଇଂଲାଣ୍ଡରେ ଆସି ବସବାସ କରିବା ଉଦ୍ଦେଶ୍ୟରେ ନିଜ ଉପରେ ନିଜେ ରାଜନୈତିକ ରିଫିଉଜୀର ଛାପ ମାରି ଇଂରେଜ ସରକାରଙ୍କୁ ବୋକା ବନାଇବାରେ ପ୍ରୟାସୀ, ଏ ରହସ୍ୟଟି ଉଦ୍‌ଘାଟନର ଅପେକ୍ଷା ରଖେ ।

ସାଧାରଣ ଅର୍ଥରେ ନିଜ ଦେଶରୁ ବିତାଡ଼ିତ ହୋଇ ଅନ୍ୟ ଦେଶରେ ଆଶ୍ରୟ ଅନୁସନ୍ଧାନ କରୁଥିବା ବ୍ୟକ୍ତିମାନଙ୍କୁ କୁହାଯାଏ ରିଫିଉଜୀ । କେତେକ ବାହ୍ୟ ଘଟଣା ଏଥିପାଇଁ ଦାୟୀ ହୋଇଥାନ୍ତି । ଯେପରି ଗୃହଯୁଦ୍ଧ, ରାଜନୀତିକ ହିଂସାକାଣ୍ଡ ଇତ୍ୟାଦି । ଶ୍ରୀଲଙ୍କାରେ ସିଂହଳୀ-ତାମିଲ୍ ସଂଘର୍ଷ ପରିପ୍ରେକ୍ଷୀରେ ସଂଖ୍ୟାନ୍ୟୂନ ତାମିଲ୍‌ମାନେ ନିଜ ଦେଶ ଛାଡ଼ି ଅନ୍ୟ ଦେଶରେ ଆଶ୍ରୟ ଅନୁସନ୍ଧାନ କରିବା କିମ୍ବା ରାଜନୀତିକ ଉତ୍ପୀଡ଼ନରେ ପାକିସ୍ତାନରେ ପାକିସ୍ତାନର ପି.ପି.ର ସଭ୍ୟମାନେ ପାକିସ୍ତାନ ଛାଡୁଥିବା ବ୍ୟକ୍ତିମାନଙ୍କୁ ରିଫିଉଜୀ କୁହାଯିବ ନିଶ୍ଚୟ ।

ଭିନ୍‌ସେଣ୍ଟ ପଲ୍ ସେହି ସାଧାରଣ ଅର୍ଥରେ ରିଫିଉଜୀ ନୁହେଁ । ତା'ର ଘର ମରିସସ୍, ସେ ଭାରତୀୟ ବଂଶୋଦ୍‌ଭବ ହିନ୍ଦୁ । ମରିସସ୍ ଛାଡ଼ି ସ୍ୱଇଚ୍ଛାରେ ସେ ଇଂଲାଣ୍ଡକୁ ଗ୍ରହଣ କରିନେଇଛି ନିଜ ଦେଶ ଭାବରେ । ନିଜ ପରିବାରକୁ ଇଲାଣ୍ଡ ଆଣିଛି ଓ ଲଣ୍ଡନ୍‌ରେ ଫ୍ଲାଟ୍‌ଟିଏ କିଣି ଆପାତତଃ ସ୍ୱଚ୍ଛଳ ଜୀବନଯାପନ କରୁଛି ।

ଦିନେ କାର୍‌ରେ ଯିବା ସମୟରେ ପଲ୍‌କୁ କହିଲି, 'ମରିସସ୍ ଛାଡ଼ିଥିବାରୁ ତୁମ ମନରେ ଅନେକ ସମୟରେ ଦୁଃଖ ହେଉଥିବ ନିଶ୍ଚୟ । ଇଂଲାଣ୍ଡରେ ଯେତେ ସୁଖ ସମୃଦ୍ଧି ଥିଲେ ବି ତୁମେ ନିଶ୍ଚୟ ଅନୁଭବ କରୁଥିବ - ତୁମେ ସଂଖ୍ୟାନ୍ୟୂନ ଏସିଆନ୍ ସମ୍ପ୍ରଦାୟର ଲୋକ । ତେଣୁ ଏଠାର ମୁଖ୍ୟ ସାମାଜିକ ସ୍ରୋତର ଅଂଶ ନୁହଁ ।'

ପଲ୍ ମୋ ମନ୍ତବ୍ୟରେ ଏକମତ ହେବ ବୋଲି ଆଶା କରୁଥିଲି । କିନ୍ତୁ ଆଶ୍ଚର୍ଯ୍ୟ ହେଲି ତା'ର ପ୍ରତିକ୍ରିୟାରେ ।

'ମରିସସ୍‌ରେ ବି ଆମେ ସଂଖ୍ୟାଲଘୁ । କାରଣ ମୁଁ ତାମିଲ୍ । ସଂଖ୍ୟାଗରିଷ୍ଠ ହିନ୍ଦୀଭାଷୀମାନେ ତେଣୁ ଆମ ଉପରେ ଆଧିପତ୍ୟ ଜାହିର କରନ୍ତି । ମୁସଲ୍‌ମାନ୍‌ମାନେ

ମଧ ଆମ ରୀତିନୀତି ଆମ ଧର୍ମକୁ ଥଟ୍ଟା କରନ୍ତି । ତେଣୁ ମରିସସ୍‌ରେ ରହିବାଠାରୁ ଇଂଲାଣ୍ଡରେ ରହିବା ଭଲ ।'

ପଲ୍‌ର ପ୍ରତିକ୍ରିୟାଠାରୁ ଆହୁରି ଆଶ୍ଚର୍ଯ୍ୟକର ଥିଲା ମହୀଉଦ୍ଦିନ୍‌ର ମନ୍ତବ୍ୟ ।

ମହୀଉଦ୍ଦିନ୍ ଭାରତର କୌଣସି ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ । ସ୍କଲାର୍‌ସିପ୍‌ଟିଏ ପାଇଁ ସମ୍ପ୍ରତି ଇଂଲାଣ୍ଡର କେଣ୍ଟ ବିଶ୍ୱବିଦ୍ୟାଳୟରେ ଗବେଷଣା କରେ । ପରିବାର ସହ ରହୁଛି ଛୋଟ ସମୁଦ୍ରକୂଳ ସହର ହ୍ୱଇଟ୍‌ଷ୍ଟେବଲ୍‌ରେ ।

ତା' ସହିତ ପରିଚୟ ଅଳ୍ପ କେତେଦିନ ପରେ ବର୍ଣ୍ଣନା କଲା ସେ ଇଂଲାଣ୍ଡରେ ତା'ର ଦୁରବସ୍ଥା । ସ୍ଥାନୀୟ ଲୋକେ ତାକୁ ଘୃଣା ଦୃଷ୍ଟିରେ ଦେଖନ୍ତି – କାରଣ ସେ ଜଣେ ପାକୀ – ଅର୍ଥାତ୍ କଳା ଏସିଆନ୍ ଲୋକ । ଏପରିକି କେହି କେହି ତାକୁ ପଛରୁ ଥରେ ଦି'ଥର ଡାକିଲେଣି – 'କୁକୁର' ।

'ଭାରତ ଫେରିଯିବାକୁ ତୁମେ ଚାହୁଁଥିବ ନିଶ୍ଚୟ !' କହିଲି ।

'ଫେରିଯିବାକୁ ତ ହେବ' କହିଲା ମହୀଉଦ୍ଦିନ୍ । 'କିନ୍ତୁ ଭାରତରେ ଆମେ ଭଲରେ ଅଛୁକି ? ମୁସଲ୍‌ମାନ୍ ହୋଇଥିବାରୁ ଆମ ଉପରେ ଅତ୍ୟାଚାର ଚାଲିଛି । ଭାରତରେ ଆମେ ସଂଖ୍ୟାଲଘୁ । ତେଣୁ ଇଂଲାଣ୍ଡ ଓ ଭାରତ ମଧ୍ୟରେ ତଫାତ୍ କେଉଁଠି ? ସଂଖ୍ୟାଗୁରୁଙ୍କ ଦୟା ଉପରେ ସବୁଠାରେ ତ ନିର୍ଭର କରିବାକୁ ପଡୁଛି ଆମକୁ ।'

ସିନେକ୍‌ସ୍, ଅବ୍‌ଦୁଲ୍ଲା, ପଲ୍ ଓ ମହୀଉଦ୍ଦିନ୍ – ବାହ୍ୟ ଅବସ୍ଥାରେ ହେଉ କି ମାନସିକତାରେ ହେଉ, ବିତାଡ଼ିତ ଏମାନେ ନିଜ ନିଜ ଦେଶରୁ । ତେଣୁ ପ୍ରତ୍ୟେକ ଜଣେ ଜଣେ ରିଫିଉଜୀ । ନିଜ ଦେଶକୁ ଛାଡ଼ିଛନ୍ତି ଏମାନେ – କିନ୍ତୁ ଏମାନଙ୍କୁ ସ୍ୱାଗତ କରିବାକୁ ଇଂଲାଣ୍ଡ କିମ୍ବା ପାଶ୍ଚାତ୍ୟ ପୃଥିବୀ କେତେଦୂର ପ୍ରସ୍ତୁତ ? ନିଜ ଦେଶର ସମସ୍ୟାର ଭୟାବହତାକୁ ସାମ୍ନା କରି ନ ପାରି ଏମାନେ ଚାହାନ୍ତି ଅନ୍ୟ ଦେଶକୁ ପଳାୟନ । ହୁଏତ ଏଇଥିପାଇଁ ଯେ ନୂଆ ଦେଶରେ ଏମାନଙ୍କୁ ମିଳିବ ଅଧିକ ନିରାପତ୍ତା, ମାନବିକ ମୂଲ୍ୟବୋଧ – ଅଧିକ ସୁଖସମୃଦ୍ଧି । କିନ୍ତୁ ଏଇ ସ୍ୱପ୍ନର ସଫଳତା ଏକ ବିରାଟ ପ୍ରଶ୍ନବାଚୀ – ଆଜିର ପୃଥିବୀରେ । ବେକାରି, ବର୍ଣ୍ଣବୈଷମ୍ୟ ଓ ମୌଳିକତାବାଦ କ୍ରମଶଃ ଆକ୍ରାନ୍ତ କରିବାରେ ଲାଗିଛି ଇଂଲାଣ୍ଡ ଓ ସମଗ୍ର ପାଶ୍ଚାତ୍ୟ ପୃଥିବୀକୁ । ଏଇ ପରିପ୍ରେକ୍ଷୀରେ ରିଫିଉଜୀମାନଙ୍କ ପାଇଁ ଦେଶ କାହିଁ ?

[ଇଂଲାଣ୍ଡର କେଣ୍ଟ ବିଶ୍ୱବିଦ୍ୟାଳୟରେ ଅକ୍ଟୋବର–ଡିସେମ୍ବର ୧୯୯୨ରେ 'ରାଇଟର୍–ଇନ୍–ରେସିଡେନ୍ସ୍' ଭାବରେ ଅବସ୍ଥାନ କରିବାପରେ ଲେଖକ ଭୁବନେଶ୍ୱର ଫେରି ଆସିଛନ୍ତି ।]

(୧୯୯୩)

# ସ୍ୱଦେଶରେ ବିଦେଶୀ

କିଉରେ ମୋ ସାମ୍ନାରେ ଠିଆ ହୋଇଥିଲେ ଜଣେ ଭାରତୀୟ । କ୍ୟାଣ୍ଟର୍‌ବରୀର କୌଣସି ଥିଏଟର୍ ହଲ୍‌ରେ ଟିକେଟ୍ କିଣିବା ପାଇଁ ଆମେ ଅପେକ୍ଷା କରୁଥିଲୁ । ୧୯୭୫ ମେ' ମାସରେ ଗୋଟିଏ ସନ୍ଧ୍ୟାର ଘଟଣା ।

ଉଷ୍ଣପାଗ ହୋଇଥିବାରୁ ଭଦ୍ରବ୍ୟକ୍ତି ପିନ୍ଧିଥିଲେ ଗୋଟିଏ ବ୍ୟାନିଅନ୍ । ଟିକେଟ୍ କିଣିବା ପାଇଁ ସେ କାଉଣ୍ଟର୍‌କୁ ହାତ ବଢ଼ାଇବା ବେଳେ ଲକ୍ଷ୍ୟ କଲି, ହାତରେ ସେ ଚିତା କୁଟାଇଛନ୍ତି । କେତୋଟି ଇଂରାଜୀ ଅକ୍ଷର ପଢ଼ିପାରିଲି – PANI... ।

ପାଣି ? ଆମୋଦିତ ହେଲି । ପଚାରିଲି, 'ଏକ୍ସକ୍ୟୁଜ୍ ମି, ଆପଣ ଭାରତୀୟ ?'

'ହଁ ।'

'କେଉଁ ରାଜ୍ୟରୁ ଆସିଛନ୍ତି ?'

'ଓଡ଼ିଶାରୁ ।'

ତା'ପରେ ଆମର କଥାବାର୍ତ୍ତା ଓଡ଼ିଆରେ ।

ମହେଶ ପାଣିଗ୍ରାହୀ କ୍ୟାଣ୍ଟର୍‌ବରୀ ଡାକ୍ତରଖାନାରେ ଡାକ୍ତର । ବାରବର୍ଷ ହେଲା ରହିଆସିଛନ୍ତି ଇଂଲାଣ୍ଡରେ । ସ୍ତ୍ରୀ ଭାରତୀୟ ବଂଶୋଦ୍‌ଭବ ଗୁଜୁରାଟୀ, କେବେ ଓଡ଼ିଶା ଯାଇନାହାନ୍ତି । ନିକଟ ଭବିଷ୍ୟତରେ ଓଡ଼ିଶା ଭ୍ରମଣର ପରିକଳ୍ପନା କରୁଛନ୍ତି ।

ଆମର ବନ୍ଧୁତା ବଢ଼ିଲା । ଦିନେ ଡାକ୍ତର ପାଣିଗ୍ରାହୀ ଶ୍ରୀମତୀ ପାଣିଗ୍ରାହୀଙ୍କ ସହିତ ଆମ ଗୃହରେ ଉପସ୍ଥିତ ହେଲେ । ସେମାନଙ୍କ ଅଭିଯୋଗ, ସେମାନେ ଆଉ ଇଂଲାଣ୍ଡରେ ରହିବାକୁ ଚାହୁଁନାହାନ୍ତି । ଏଠି ଏତେ ବର୍ଣ୍ଣବୈଷମ୍ୟ ମନୋଭାବ ସତରେ ଅପମାନଜନକ । 'ଆପଣ ହୁଏତ ଜାଣି ନ ଥିବେ' କହିଲେ ଡାକ୍ତର ପାଣିଗ୍ରାହୀ, 'ଡାକ୍ତରଖାନାରେ କେତୋଟି ଦାମିକା ଯନ୍ତ୍ରପାତି ବ୍ୟବହାର କରିବାକୁ ଭାରତୀୟମାନଙ୍କୁ ମନା । ତା'ଛଡ଼ା ଭାରତୀୟ ଡାକ୍ତରମାନଙ୍କ ପ୍ରମୋଶନରେ ବହୁ କଟକଣା ।'

ଇଂଲାଣ୍ଡରେ ଜନ୍ମ ହୋଇଥିଲେ ମଧ୍ୟ ଭାରତକୁ ହିଁ ସେ ନିଜ ଦେଶ ବୋଲି ମନେକରନ୍ତି – କହିଲେ ଶ୍ରୀମତୀ ପାଣିଗ୍ରାହୀ । ସେ ଚାହାନ୍ତି ସ୍ୱାମୀ ଓଡ଼ିଶା ଫେରି ଡାକ୍ତରୀ ବ୍ୟବସାୟ କଲେ ସେ କରିବେ ହୋଟେଲ୍‌ଟିଏ, ଭୁବନେଶ୍ୱରରେ କିମ୍ବା ସ୍ୱାମୀଙ୍କ ଜନ୍ମସ୍ଥାନ 'ଭଦ୍ରକ'ରେ ।

'ଆପଣ କ'ଣ ଭାବୁଛନ୍ତି ?'

'ଭଲହେବ ନିଶ୍ଚୟ ।' ମୋର ଉତ୍ତର ।

'ଭାରତରେ ଅବଶ୍ୟ କିଛି କିଛି ଅସୁବିଧା ହେବ' – କହିଲେ ଶ୍ରୀମତୀ ପାଣିଗ୍ରାହୀ । 'ଆପଣଙ୍କର ଏ ଯାଏଁ ଟେଲିଭିଜନ୍ ନାହିଁ ?'

'ନାଁ' ମୁଁ କହିଲି ।' ଅବଶ୍ୟ ଦିଲ୍ଲୀରେ ଅଛି, କିନ୍ତୁ ଓଡ଼ିଶାରେ ନାହିଁ ।

'ଆପଣମାନେ ତେବେ ସନ୍ଧ୍ୟାରେ କରନ୍ତି କ'ଣ ?'

ହଠାତ୍ କ'ଣ କହିବି ଜାଣିପାରିଲି ନାହିଁ ।

'ବନ୍ଧୁମାନଙ୍କ ସହିତ ଗପସପ, ବୁଲାବୁଲି ।'

'ଦିନେ ଅଧେ ସିନା ବନ୍ଧୁମାନଙ୍କ ଘରକୁ ଯାଇ ହେବ ଗପସପ କରିବାକୁ । କିନ୍ତୁ ସବୁଦିନ କ'ଣ କରିବେ ?' 'ସେ ଅସୁବିଧା ତ ଆମେ କେବେ ଅନୁଭବ କରି ନାହୁଁ । ସମୟ ତା' ବାଟରେ କଟିଯାଏ ।'

ପ୍ରତିଦିନ ଚାରିରୁ ଛ' ଘଣ୍ଟା ଟେଲିଭିଜନ୍ ପର୍ଦ୍ଦା ସାମ୍ନାରେ ବସିବାରେ ଅଭ୍ୟସ୍ତା ଶ୍ରୀମତୀ ପାଣିଗ୍ରାହୀଙ୍କୁ ଟେଲିଭିଜନ୍‌ବିହୀନ ଜୀବନ କଳ୍ପନା କରିବା ଦୁଃସହ ମନେ ହୋଇଥିବ ନିଶ୍ଚୟ । କିନ୍ତୁ ସ୍ୱଦେଶକୁ ଫେରିବା ମୋହରେ ସେ ଟେଲିଭିଜନ୍ ଭଳି ଆବଶ୍ୟକତାକୁ ମଧ ତ୍ୟାଗ କରିପାରିବା ପାଇଁ ବଦ୍ଧପରିକର ମନେହେଉଥିଲେ ।

'କିନ୍ତୁ ବହୁତ ମଶା ଭାରତରେ ?' ଶ୍ରୀମତୀ ପାଣିଗ୍ରାହୀଙ୍କର ଦ୍ୱିତୀୟ ସମସ୍ୟା ।

'ହଁ' ମୁଁ କହିଲି । 'କିନ୍ତୁ ଆମ ମଶାମାନେ ମଶାରି ଭିତରକୁ ଆସିପାରନ୍ତି ନାହିଁ । ତା'ଛଡ଼ା ଆପଣ ସେମାନଙ୍କୁ ଯେତେ ଭୟଙ୍କର ବୋଲି କଳ୍ପନା କରୁଛନ୍ତି, ସେମାନେ ସେପରି ନୁହନ୍ତି ।'

ଉଲ୍ଲିଖିତ ଘଟଣାର ଦୁଇ ତିନି ବର୍ଷ ପରେ ଦିନେ ଭୁବନେଶ୍ୱରରେ ଆମ କ୍ୱାଟର୍‌ସ୍‌ରେ ଆବିର୍ଭୂତ ହେଲେ ଡାକ୍ତର ପାଣିଗ୍ରାହୀ ।

'ଆପଣ ତେବେ ଶେଷରେ ଭାରତ ଫେରିଆସିଲେ ?' ମୁଁ ପଚାରିଲି ।

'ହଁ, ଛଅମାସ ହେଲା ଆସିଲିଣି । ଭଦ୍ରକରେ ସେଟ୍‌ଲ୍ କରିବାକୁ ସ୍ଥିର କଲି । ହୋଟେଲ୍ ପାଇଁ ଜମି ଖୋଜୁଛି ।'

'ଶ୍ରୀମତୀ ?'

'ସେ ମଧ ଆସିଛନ୍ତି ।'

'ଡାକ୍ତରୀ ଚାକିରି ଛାଡ଼ିଦେଲେ ?'

'ନାଁ, ଇଂଲାଣ୍ଡ ଛାଡ଼ି ନାହୁଁ, ଛୁଟିରେ ଅଛୁ । ଏଠି ସୁବିଧା ହେଲା ପରେ ଇଂଲାଣ୍ଡ ଛାଡ଼ିଦେବୁ ।'

ଏହାପରେ ପୁଣି ଦୁଇ ତିନି ବର୍ଷର ବିଚ୍ଛିନ୍ନତା । କୌଣସି ଖବର ନାହିଁ ପାଣିଗ୍ରାହୀ ଦମ୍ପତିଙ୍କର । ଶେଷରେ ପୁଣି ଥରେ ଇଂଲାଣ୍ଡରେ ଆକସ୍ମିକ ଭାବରେ ଆଉଜଣେ ଓଡ଼ିଆ ବନ୍ଧୁଙ୍କଠାରୁ ମିଳିଲା ପାଣିଗ୍ରାହୀ ଦମ୍ପତିଙ୍କ ଭାରତରେ ସେଟ୍‌ଲ୍ କରିବାର ବିବରଣୀ ।

ଆପଣ ଜାଣି ନାହାନ୍ତି ତେବେ ? ସେମାନେ ସେଟଲ୍ କଲେ ନାହିଁ ଭାରତରେ । ପୁଣି ଫେରିଆସିଲେ ଇଂଲାଣ୍ଡ । ଡାକ୍ତର ପାଣିଗ୍ରାହୀ ହୁଏତ ଭାରତରେ ରହିଯାଇ ପାରିଥା'ନ୍ତେ; କିନ୍ତୁ ଶ୍ରୀମତୀ ପାଣିଗ୍ରାହୀଙ୍କୁ ମୋଟେ ପୋଷେଇଲା ନାହିଁ ଭାରତ । ସନ୍ଧ୍ୟା ବିତାଇବା ପାଇଁ ଟେଲିଭିଜନ୍‌ଟିଏ ବି ପାଇଲେ ନାହିଁ ସେ । ସେଥିରେ ପୁଣି ମଶା ଭୟ ।

ଡାକ୍ତର ପାଣିଗ୍ରାହୀଙ୍କ ସହିତ ଯେଉଁ ସମୟରେ ପରିଚୟ ସେହି ସମୟରେ ଶ୍ରୀକଣ୍ଠ ମିଶ୍ର ମଧ୍ୟ ଥିଲେ କ୍ୟାଣ୍ଟର୍‌ବରୀର ଅଳ୍ପ ଦୂରରେ ଷ୍ଟର୍‌ଲିଂ ହସ୍ପିଟାଲରେ ଡାକ୍ତର । ରହୁଥିଲେ ସପରିବାର । ସ୍ତ୍ରୀ, ଗୋଟିଏ ପୁଅ ଓ ଗୋଟିଏ ଝିଅ । ଦେଖିଲେ ମନେହେଉଥିଲା ଇଂଲାଣ୍ଡର ଚାଲି ଚଳଣି ସଙ୍ଗେ ନିଜକୁ ବେଶ୍ ଖାପ ଖୁଆଇ ପାରିଛନ୍ତି ସେ । ଥରେ ବିଧବା ମାଆଙ୍କୁ ମଧ୍ୟ କିଛିଦିନ ପାଇଁ ନିକଟକୁ ନେଇଥିଲେ ।

କିନ୍ତୁ ସେ ମଧ୍ୟ ଚାହୁଁଥିଲେ ଫେରିବେ ସ୍ୱଦେଶକୁ – 'ଇଂଲାଣ୍ଡରେ ଅସୁବିଧା କିଛି ନାହିଁ' – ତାଙ୍କର ଯୁକ୍ତି, 'କିନ୍ତୁ ବିଦେଶ ନିଜ ଦେଶଭଳି ହୋଇପାରେ କେବେ ?'

ଅତଏବ ତାଙ୍କର ସିଦ୍ଧାନ୍ତ – ସେ ଫେରିବେ ଭାରତ । ପ୍ରଥମେ ସ୍ତ୍ରୀ ଓ ପିଲାମାନେ ଭୁବନେଶ୍ୱର ଆସିବେ; ପିଲାମାନେ ନାଁ ଲେଖାଇବେ ଭୁବନେଶ୍ୱରର ଇଂରାଜୀ ମିଡ଼ିୟମ୍ ସ୍କୁଲରେ । ତା'ପରେ ସେ ଆସି ଯୋଗଦେବେ ପରିବାର ସହିତ ।

ତାହା ହିଁ ହେଲା । ଡାକ୍ତର ମିଶ୍ରଙ୍କଠାରୁ ଅଧିକ ଆଗ୍ରହ ଦେଖାଉଥିଲେ ଶ୍ରୀମତୀ ମିଶ୍ର ଭାରତ ଫେରିବା ପାଇଁ ।

କ୍ୟାଣ୍ଟର୍‌ବରୀରୁ ୧୯୭୮ରେ ମୁଁ ଫେରିବାର ଅଳ୍ପ କେତେ ମାସ ପରେ ଶ୍ରୀମତୀ ମିଶ୍ର ଓ ତାଙ୍କର ଦୁଇଟି ପିଲା ପହଞ୍ଚିଲେ ଭୁବନେଶ୍ୱରରେ । ନିର୍ଦ୍ଦିଷ୍ଟ ଯୋଜନାରେ କାର୍ଯ୍ୟ କରିବାରେ ବିଶ୍ୱାସ କରନ୍ତି ଶ୍ରୀକଣ୍ଠବାବୁ । ପିଲାମାନଙ୍କ ନାମ ଲେଖାହେଲା ଇଂରାଜୀ ମିଡ଼ିୟମ୍ ସ୍କୁଲରେ । ଶ୍ରୀମତୀ ମିଶ୍ର ଶହୀଦନଗରରେ ଉତ୍ତମ ଘରଟିଏ ଭଡ଼ାନେଇ ଅପେକ୍ଷା କରି ରହିଲେ ସ୍ୱାମୀଙ୍କ ଆଗମନକୁ ।

କେବେ କିପରି ରାସ୍ତାଘାଟରେ ବଜାରରେ ଭେଟହେଲା ଶ୍ରୀମତୀ ମିଶ୍ରଙ୍କ ସହିତ । ସ୍ୱାମୀଙ୍କଠାରୁ ଦୂରରେ ରହିବାର ଉତ୍କଣ୍ଠା ବାରି ହୋଇ ପଡୁଥିଲା ତାଙ୍କ ଚେହେରାରେ । କିପରି କେଜାଣି ସେ ମନେହେଉଥିଲେ ବିମର୍ଷ, ଚିନ୍ତାକୁଳ । କାର୍ ନାହିଁ । ତେଣୁ ବସ୍ ଷ୍ଟାଣ୍ଡରେ ଅପେକ୍ଷା । ସୁପର୍ ମାର୍କେଟ୍‌ରୁ ପ୍ରସେସ୍‌ଡ୍ ଫୁଡ୍ ସପିଂ କରିବାର ସୁବିଧା ନାହିଁ । ତେଣୁ ପ୍ରତିଦିନ ହାଟକୁ ଧାଁ ଦଉଡ଼ ।

'କେବେ ଡାକ୍ତର ମିଶ୍ର ଆସୁଛନ୍ତି ଇଂଲାଣ୍ଡରୁ ?' ରାସ୍ତାଘାଟରେ ଦେଖାହୋଇଗଲେ ପଚାରେ ଶ୍ରୀମତୀ ମିଶ୍ରଙ୍କୁ ।

'ଅକ୍ଟୋବର ବା ନଭେମ୍ବରରେ । ସେ ନ ଆସିବାରୁ ଆମର ଅନେକ ଅସୁବିଧା ହେଉଛି । ଭାରତରେ ସ୍ତ୍ରୀ ଲୋକଟିଏ ଏକୁଟିଆ ଚଳିବା କିପରି କଷ୍ଟସାଧ୍ୟ ଆପଣ ତ ଜାଣନ୍ତି ।'

ଶେଷରେ ଫେରିଆସିଲେ ଡାକ୍ତର ମିଶ୍ର ଭୁବନେଶ୍ୱର । କୌଣସିଠାରେ ପ୍ରାଇଭେଟ୍ ପ୍ରାକ୍ଟିସ୍ ପାଇଁ କ୍ଲିନିକ୍‌ଟିଏ ଖୋଲିଲେ । ଏହାପରେ କୌଣସି କାରଣରୁ ମିଶ୍ର ପରିବାର ସହିତ ମୋର ଯୋଗାଯୋଗ ରହିଲା ନାହିଁ ପ୍ରାୟ । କିନ୍ତୁ ମୁଁ ନିଶ୍ଚିତ ହେଲି, ଯାହାହେଉ, ସେମାନେ ନିଜ ଦେଶକୁ ଫେରି ସୁଖୀ ହୋଇଛନ୍ତି ନିଶ୍ଚୟ । ବିଦେଶ କ'ଣ କେବେହେଲେ ସ୍ୱଦେଶ ପାଲଟିଯାଇ ପାରେ ? ତା'ଛଡ଼ା ଇଂଲାଣ୍ଡ ଫେରନ୍ତା ଡାକ୍ତର ଶ୍ରୀକଣ୍ଠବାବୁଙ୍କର ପ୍ରାଇଭେଟ୍ ପ୍ରାକ୍ଟିସ୍ ହେଉଥିବ ଖୁବ୍ ।

କିନ୍ତୁ ବାସ୍ତବତା ମୋଡ଼ନେଲା ଭିନ୍ନ ଦିଗରେ । ଶ୍ରୀକଣ୍ଠବାବୁଙ୍କୁ ଭଲଭାବେ ଜାଣିଥିବା କେହିଜଣେ ଖବର ଦେଲେ, 'ନା, ସେମାନେ ପୁଣି ଫେରିଗଲେ ଇଂଲାଣ୍ଡ । ଶ୍ରୀକଣ୍ଠବାବୁ ତ ଚାକିରି ଛାଡ଼ି ନ ଥିଲେ, ତେଣୁ ଫେରିବାରେ ଅସୁବିଧା ହେଲା ନାହିଁ । ଏଠି ତାଙ୍କର ପ୍ରାଇଭେଟ୍ ପ୍ରାକ୍ଟିସ୍ ହେଲା ନାହିଁ ମୋଟେ । ପିଲାମାନେ ବି ଇଂଲାଣ୍ଡ ଫେରିବାକୁ ସବୁବେଳେ ବ୍ୟସ୍ତ ହେଲେ ।' × × ×

ଦୁଇଟି ଘଟଣାରୁ କୌଣସି ସାଧାରଣ ସତ୍ୟରେ ଉପନୀତ ହେବା ସବୁବେଳେ ନିରାପଦ ନୁହେଁ । କିନ୍ତୁ ଡାକ୍ତର ପାଣିଗ୍ରାହୀ ବା ଡାକ୍ତର ମିଶ୍ରଙ୍କ ଅନୁଭୂତି ବିଦେଶରେ ବହୁବର୍ଷ ରହି ପୁନର୍ବାର ସ୍ୱଦେଶକୁ ଫେରି ଆସୁଥିବା ବହୁ ବ୍ୟକ୍ତିଙ୍କ ଅନୁଭୂତି ସହିତ ତୁଳନୀୟ ।

ଇଂଲାଣ୍ଡ ବା ଆମେରିକାରେ ବହୁବର୍ଷଧରି ରହିଆସିଥିବା ଭାରତୀୟ ବନ୍ଧୁମାନେ ସ୍ୱଦେଶକୁ ଅହରହ ଝୁରୁଥାନ୍ତି – ଏଥିରେ ଖୁବ୍ ଅତିରଞ୍ଜନ ନାହିଁ । ଅଧିକାଂଶ ମଧ୍ୟ ସ୍ୱପ୍ନ ଦେଖୁଥାନ୍ତି – ବିଦେଶରେ ଯଥେଷ୍ଟ ରହିଲୁଣି, ଏଥର ନିଜ ଦେଶକୁ ଫେରିଯିବା । ଭାରତର ସଂସ୍କୃତି, ପରମ୍ପରା, ଭାଷା, ପର୍ବପର୍ବାଣି, ବନ୍ଧୁବାନ୍ଧବ... ।

କିନ୍ତୁ ସେମାନେ ସ୍ୱଦେଶକୁ ଫେରନ୍ତି ନାହିଁ । ବନ୍ଧୁ ଫେରିବାକୁ ଚାହିଁଲେ ହୁଏତ ପିଲାମାନେ ତାହାର ବିରୋଧ କରନ୍ତି କିମ୍ବା ବନ୍ଧୁଙ୍କ ପସନ୍ଦ ମୁତାବକ ଚାକିରିଟିଏ ମିଳେ ନାହିଁ କିମ୍ବା ଅନ୍ୟ କୌଣସି ଅସୁବିଧା ବାଟ ଓଗାଳେ ।

ତଥାପି କେହି କେହି ଫେରନ୍ତି । କିନ୍ତୁ ତା'ପରେ ... ?

ତା'ପରେ ସେମାନେ ହୁଏତ ଝୁରି ହୁଅନ୍ତି ଛାଡ଼ିଆସିଥିବା ଦେଶର ସୁଖ ସମୃଦ୍ଧିକୁ । ସ୍ୱଦେଶର ଦାରିଦ୍ର୍ୟ, ଦୁର୍ନୀତି ଓ ମଇଳାରେ ଅତିଷ୍ଠ ଅନୁଭବ କରନ୍ତି ସେମାନେ । ଯେହେତୁ ଅପେକ୍ଷାକୃତ ଉନ୍ନତ ଦେଶରେ ରହିଆସିଛନ୍ତି, ସ୍ୱଦେଶର ଦାରିଦ୍ର୍ୟ, ଦୁର୍ନୀତି ଓ ମଇଳା ସେମାନଙ୍କୁ ଆବଶ୍ୟକତାଠାରୁ ଅଧିକ ଭୟଙ୍କର ଅଧିକ ଦୁର୍ଦ୍ଦାନ୍ତ ମନେହୁଅନ୍ତି । ବିଦେଶ

ଛାଡ଼ିଥିବାରୁ ସେମାନେ ଅନୁତାପ କରନ୍ତି; କିମ୍ବା ପୁନର୍ବାର ଲେଉଟନ୍ତି ବିଦେଶକୁ । ବିଦେଶରେ ସ୍ୱଦେଶର ଆକର୍ଷଣ ଯଥେଷ୍ଟ, କିନ୍ତୁ ସ୍ୱଦେଶକୁ ଫେରିବା ପରେ ହିଁ ବୁଝିହୁଏ – ବିଦେଶରେ ବର୍ଷ ବର୍ଷ ରହିବା ପରେ ବିଦେଶ ପ୍ରତି କିପରି ମୋହ, କିପରି ଆକର୍ଷଣ ସୃଷ୍ଟି ହୋଇପାରେ ମନରେ... । (୧୯୯୩)



## ସାବନା ମଣିଷର ଭାଗ୍ୟ

ଆକାଉଣ୍ଟିଏ ଖୋଲିବାକୁ ଯାଇ ପହଞ୍ଚିଲି ନ୍ୟାସନାଲ୍ ୱେଷ୍ଟମିନ୍‌ଷ୍ଟର୍ ବ୍ୟାଙ୍କରେ । କେଣ୍ଟ୍ ବିଶ୍ୱବିଦ୍ୟାଳୟରେ ଦିନକ ଆଗରୁ ଯୋଗ ଦେଇଥାଏ ରାଇଟର୍ ଇନ୍ ରେସିଡ଼େନ୍ସ୍ ଭାବରେ । ଗୋଟିଏ ମାସ ଚଳିବା ପାଇଁ ମୋତେ ଆଗତୁରା ମିଳିଥାଏ ଚେକ୍‌ଟିଏ ।

ଅକ୍ଟୋବର ମାସର ପ୍ରଥମ ସପ୍ତାହ । ଟର୍ମ୍ ଆରମ୍ଭ । ସେଥିପାଇଁ ବ୍ୟାଙ୍କରେ ଛାତ୍ର ଓ ଅଧ୍ୟାପକମାନଙ୍କ ଭିଡ଼ ।

ସୁଟ୍ ପରିହିତ ବ୍ୟାଙ୍କ୍ କର୍ମଚାରୀ ଜଣେ ମୋତେ ସ୍ୱାଗତ ଜଣାଇଲେ । ଆକାଉଣ୍ଟିଏ ଖୋଲିବାକୁ ଚାହୁଁଚି କହନ୍ତେ ସେ ନମ୍ରତାର ସହିତ ମୋ ପାଇଁ ଫର୍ମ୍‌ଟିଏ ପୂରଣ କରିଦେଲେ । ମୋ ପାସ୍‌ପୋର୍ଟ୍‌ର ଜେରକ୍ସ କପିଟିଏ ଯୋଡ଼ିଦେଲେ ସେ ଫର୍ମ୍‌ରେ । ଦସ୍ତଖତ କଲି ।

'ଆପଣ କେତେଦିନ ଇଂଲାଣ୍ଡରେ ରହିବେ ?'

'ପ୍ରାୟ ତିନିମାସ ।'

'ତା'ହେଲେ ଆମେ ଆପଣଙ୍କୁ ଚେକ୍ ବହି ଦେବୁ ନାହିଁ । ଆପଣ ଯେକୌଣସି ସମୟରେ ବ୍ୟାଙ୍କରୁ ଉଇଥ୍‌ଡ୍ରୟାଲ୍ ଫର୍ମ୍‌ଟିଏ ନେଇ ଟଙ୍କା ଉଠାଇପାରିବେ । ବ୍ୟାଙ୍କ କାର୍ଡ୍ ମଧ୍ୟ ଆପଣ ନେଇପାରିବେ ।'

ରସିଦ୍‌ଟି ନେଇ ଧନ୍ୟବାଦ ଦେଇ ଫେରିଲି ।

ସାତଦିନ ପରେ ଗଲି ବ୍ୟାଙ୍କରୁ ଟଙ୍କା ଉଠାଇବା ପାଇଁ । ଫର୍ମ୍‌ଟି ପୂରଣ କରି କ୍ୟାଶିୟର୍‌ଙ୍କୁ ଦିଅନ୍ତେ ସେ ମୋତେ ରସିଦ ଓ ପାସ୍‌ପୋର୍ଟ୍ ମାଗିଲେ । ଯଥାରୀତି ତାହା ଦାଖଲ କଲି ।

କିନ୍ତୁ କି ଆଶ୍ଚର୍ଯ୍ୟ ! ପଚାରିଲେ, 'ଆପଣଙ୍କ ଚେକ୍ ବହି ?'

'ଚେକ୍ ବହି ମୋତେ ମିଳିବ ନାହିଁ କୁହାଗଲା ।'

'କିଏ ଆପଣଙ୍କୁ ରସିଦ୍ ଦେଲେ କହିପାରିବେ ?'

ସୁଟ୍‌ପରିହିତ ଭଦ୍ରବ୍ୟକ୍ତିଙ୍କ ଚେହେରା ବର୍ଣ୍ଣନା କରିବାକୁ ଚେଷ୍ଟା କଲି । ବର୍ତ୍ତମାନ କ୍ୟାଶିୟର୍‌ଙ୍କ ଆଡ଼କୁ କୌତୂହଳରେ ଅନାଉଥିଲେ କାଉଣ୍ଟର୍‌ର ଅନ୍ୟ ଦୁଇତିନିଜଣ କ୍ୟାଶିୟର୍ । ସମସ୍ତେ ମହିଳା ।

'ଆପଣଙ୍କ ଟଙ୍କା ଆମ ପାଖରେ ରହିଥିବାର ଅନ୍ୟ କୌଣସି ପ୍ରମାଣ ଅଛି ଆପଣଙ୍କ ପାଖରେ ?'

'ନା ।'

'ଦୟାକରି ଟିକେ ଅପେକ୍ଷା କରନ୍ତୁ । ମୁଁ ଦେଖୁଛି ।'

ଏହା ମଧ୍ୟରେ ବ୍ୟାଙ୍କରେ ଉପସ୍ଥିତ କେହି କେହି ମଧ୍ୟ ଲକ୍ଷ୍ୟ କରୁଥିଲେ ଆମର କଥାଭାଷା । ଇଂଲାଣ୍ଡରେ ସାଧାରଣତଃ ଏପରି ଆଲୋଚନା ଚାଲେ ନାହିଁ ବ୍ୟାଙ୍କ୍‌ରେ । ଆପଣ ଚେକ୍‌ଟି କାଉଣ୍ଟର୍‌ରେ ବଢ଼ାଇ ଦେବାମାତ୍ରେ କ୍ୟାଶିୟର୍ ପଚାରନ୍ତି, 'କିପରି ନେବେ ?'

ଆପଣ କେତେ ପାଉଣ୍ଡର୍ ନୋଟ୍ ଚାହାନ୍ତି କହିଲେ, ସେ ଆପଣଙ୍କୁ ଧରାଇ ଦିଅନ୍ତି ଆପଣଙ୍କ ପ୍ରାପ୍ୟ । ତା'ପରେ ଧନ୍ୟବାଦ ବିନିମୟ ।

ଇଂଲାଣ୍ଡରେ ମୋର କେବେ ଏପରି ଅନୁଭୂତି ହୋଇ ନ ଥିଲା । ଅପେକ୍ଷା କଲି ପ୍ରାୟ ଅଧଘଣ୍ଟାଏ । କ୍ୟାଶିୟର୍ ବ୍ୟାଙ୍କ୍ ଅଫିସ୍‌ରେ କାଗଜପତ୍ର ଘଣ୍ଟାଘାଣ୍ଟି କରି କମ୍ପ୍ୟୁଟର୍‌ରେ ବହୁ କସରତ କଲାପରେ ମୋତେ କହିଲେ, 'ନା, ଆପଣଙ୍କ ଟଙ୍କା ଆମ ପାଖରେ ଥିବାର ଜଣାଯାଉ ନାହିଁ । କ୍ଷମା କରିବେ । ଆପଣଙ୍କ ପାସ୍‌ପୋର୍ଟ୍‌ଟି ଆମକୁ ଦେଇଥିଲେ ତ ?'

'ହଁ, ଆପଣଙ୍କ ଅଫିସର୍ ନିଜେ ମୋ ପାସ୍‌ପୋର୍ଟ୍‌ର ଜେରକ୍ସ କପିଟି ରଖିଥିଲେ ।'

'ପାସ୍‌ପୋର୍ଟ୍‌ରେ ଆପଣଙ୍କର ଅନ୍ୟ କୌଣସି ନାମ ଥିଲା କି ?'

କ୍ୟାଶିୟର୍‌ଙ୍କ ଅଭିପ୍ରାୟ ବୁଝିବା ବର୍ତ୍ତମାନ କଠିନ ନ ଥିଲା । ଉଚ୍ଚସ୍ୱରରେ କହିଲି, 'ମୁଁ ଜଣେ ପ୍ରଫେସର ଓ ଲେଖକ; ଆପଣଙ୍କ ବିଶ୍ୱବିଦ୍ୟାଳୟର ନିମନ୍ତ୍ରଣ କ୍ରମେ ତିନିମାସ ପାଇଁ ଏଠାକୁ ଆସିଛି । ଅସୁବିଧା ହେଲେ ଆସନ୍ତାକାଲି ମଧ୍ୟ ଫେରିଯାଇ ପାରେ । ମୋ ସମ୍ପର୍କରେ ଜାଣିବାକୁ ଚାହିଁଲେ ଆପଣ ଆପଣଙ୍କ ବିଶ୍ୱବିଦ୍ୟାଳୟକୁ ପଚାରିପାରନ୍ତି । ଆପଣ ଯେପରି ପ୍ରଶ୍ନମାନ ମୋତେ ପଚାରୁଛନ୍ତି, ସେପରି କରିବା ଆପତ୍ତିଜନକ । ତା'ଛଡ଼ା ଏଇ ବିଶ୍ୱବିଦ୍ୟାଳୟରେ ମୁଁ ପି.ଏଚ୍.ଡ଼ି. କରିଛି ଏବଂ ଏଇ ଦେଶରେ ପାଞ୍ଚବର୍ଷ ରହିଛି... ।'

'କ୍ଷମା କରନ୍ତୁ', ସେ କହିଲେ, 'ମାତ୍ର ଆପଣଙ୍କ ଟଙ୍କା ଆମ ପାଖରେ ଥିବାର ଜଣାପଡୁ ନାହିଁ । ମୁଁ ଆହୁରି ଭଲଭାବରେ ଅନୁସନ୍ଧାନ କରୁଛି । ଆପଣ ଦୟାକରି ଅପରାହ୍ନରେ ଆଉଥରେ ଆସନ୍ତୁ । ×××

ଏଥର ଇଂଲାଣ୍ଡରେ ପହଞ୍ଚିବାର ଗୋଟିଏ ସପ୍ତାହ ଅତିକ୍ରାନ୍ତ ହୋଇ ନ ଥାଏ । ସେଥିରେ ଏଇ ତିକ୍ତ ଅନୁଭୂତି । ତାହା ପୁଣି କ୍ୟାଣ୍ଟରବରୀରେ – ଯେଉଁ ସହର ସହିତ କୋଡ଼ିଏ ବର୍ଷ ବ୍ୟାପୀ ମୋର ସମ୍ପର୍କ । ଭାରତରେ କୌଣସି ଅଫିସ୍‌କୁ ଧାଁ ଧଉଡ଼ କରିବାରେ, ଦିନ ଦିନ ମାସ ମାସ ଧରି ସାମାନ୍ୟ କାମଟିଏ ପାଇଁ ନାନା ଭାବରେ ଛୋଟବଡ଼ ଲୋକଙ୍କର ଦ୍ୱାରସ୍ଥ ହେବାରେ ଆମେମାନେ ଅଭ୍ୟସ୍ତ ନିଶ୍ଚୟ । କିନ୍ତୁ ଇଂଲାଣ୍ଡରେ କୌଣସି ବ୍ୟାଙ୍କ୍‌ରେ ଏପରି ଅପେକ୍ଷା – ପୁଣି ଟଙ୍କା ଦାଖଲ କରି ମଧ୍ୟ ତାହାର ବିବରଣୀ ନ ମିଳିବା ଭୟଙ୍କର, ବିବ୍ରତ ଓ ବିଚଳିତ କଲା ମୋତେ ।

ବ୍ୟାଙ୍କ୍‌ରୁ ଆସିଲି ଡାର୍‌ଉଇନ୍ କଲେଜ୍‌ର କମନ୍‌ରୁମ୍‌କୁ । ସେହି କଲେଜ୍‌ରେ ଫ୍ଲାଟ୍‌ଟିଏରେ ମୋର ରହିବାର ବ୍ୟବସ୍ଥା କରାଯାଇଥିଲା ।

କମନ୍‌ରୁମ୍‌ରେ ଅଳ୍ପ କେତେଜଣ ଅଧ୍ୟାପକ ଖବରକାଗଜ ପଢୁଥିଲେ ଓ ଚା', କଫି ଇତ୍ୟାଦି ପିଉଥିଲେ । ସେଥିମଧ୍ୟରେ ଥିଲେ ଅବଦୁଲ୍ ରସିକ୍ ଗୁର୍‌ନାହା । ସମଗ୍ର କେଣ୍ଟ୍ ବିଶ୍ୱବିଦ୍ୟାଳୟରେ ଜଣେ ମାତ୍ର କଳା ଅଧ୍ୟାପକ । ଇଂରାଜୀ ସାହିତ୍ୟ ପଢ଼ାନ୍ତି । ଜଣେ ଲେଖକ ମଧ୍ୟ ।

ତାଙ୍କୁ କହିଲି ମୋ ଅନୁଭୂତି । 'ଏ ଦେଶରେ ସେପରି ହୁଏ ତୁମେ ଜାଣ ।' କୌଣସି ଆଶ୍ଚର୍ଯ୍ୟଭାବ ନ ଦେଖାଇ ସେ କହିଲେ, 'ନିଜାମୁଦ୍ଦିନ୍‌ର ତ ଠିକ୍ ସେହିପରି ହୋଇଥିଲା । ତେବେ ତୁମେ ସେ ବ୍ୟାଙ୍କ୍‌ରୁ ଟଙ୍କା ଉଠାଇ ଆଣ । ଅନ୍ୟ ବ୍ୟାଙ୍କ୍‌ରେ ରଖ ।'

ଦେଖାହେଲା ପ୍ରଫେସର ଲିନ୍ ଇନିସ୍‌ଙ୍କ ସହିତ । ମୋର ପୁରୁଣା ବନ୍ଧୁ ଏବଂ ଏଥରର ମୋର କାର୍ଯ୍ୟକ୍ରମର ଦାୟିତ୍ୱରେ ଥିଲେ ସେ । ସେ କହିଲେ, 'ତୁମେ ଅଳ୍ପଦିନ ପାଇଁ ଆସିଛ ବୋଲି ନ କହିଥିଲେ ଭଲ ହୋଇଥାନ୍ତା । ବ୍ୟାଙ୍କ୍‌ଗୁଡ଼ାକ ଅନେକଙ୍କୁ ସେମିତି ହଇରାଣ କରନ୍ତି । ତେବେ ଯଦି ଆଜି ଅପରାହ୍ନରେ ଟଙ୍କା ପାଇବାରେ ଅସୁବିଧା ହୁଏ ମୋତେ ଜଣାଇବ ।'

କମନ୍ ରୁମ୍‌ରୁ ମୋ ଫ୍ଲାଟ୍‌କୁ ଆସିଲି । ଫୋନ୍ କଲି ମୋର ମରିସସୀୟ ବନ୍ଧୁ ଭାଲ୍ ପାଖକୁ – 'ଅସୁବିଧାରେ ପଡ଼ିଛି । ତିନିଟାରେ ଆସ ।' ଯେକୌଣସି ଅସୁବିଧାରେ ସମ୍ପୂର୍ଣ୍ଣ ନିର୍ଭର କରିହୁଏ ଭାଲ୍ ଉପରେ ।

ଅପରାହ୍ନ ତିନିଟାରେ ଭାଲ୍ ଓ ମୁଁ ପହଞ୍ଚିଲୁ ୱେଷ୍ଟମିନ୍‌ଷ୍ଟର୍ ବ୍ୟାଙ୍କରେ । ଆମକୁ ଦେଖିବା ମାତ୍ରେ ମହିଳା କ୍ୟାଶିୟର୍ ଜଣକ ତୁରନ୍ତ ଠିଆହୋଇପଡ଼ି କହିଲେ, ''ସାର୍, କ୍ଷମା କରନ୍ତୁ । ଆମେ ଏକାନ୍ତ ଦୁଃଖିତ, ଭୁଲ୍ ଆମର । କେତେ ଟଙ୍କା ନେବେ ତ ?'

ମୁଁ ଆଶ୍ଚର୍ଯ୍ୟ ହେଲି ଅବଶ୍ୟ । ବ୍ୟାଙ୍କରୁ ଟଙ୍କା ଉଠାଇଲି । କ୍ୟାଶିୟର୍‌ଙ୍କୁ କହିଲି, 'ଏଥିରେ ଅବଶ୍ୟ ଭୁଲ୍ ନାହିଁ ଆପଣଙ୍କର । ହୁଏତ କିଛି ତ୍ରୁଟି ଥାଇପାରେ କମ୍ପ୍ୟୁଟର୍‌ର । ତେବେ ମୋର ଏତେ ରାଗିବା ଉଚିତ ନ ଥିଲା । ମୁଁ ରାଗିଲି କାହିଁକି ଜାଣନ୍ତି ? କାରଣ ଏଯାଏଁ ମୋର ବିଶ୍ୱାସ ଥିଲା – ଆପଣଙ୍କ ବ୍ୟାଙ୍କିଙ୍ଗ୍ ବ୍ୟବସ୍ଥା ଖୁବ୍ ଉନ୍ନତ ।'

ସେ ହସିଲେ ।

ଏହାପରେ ଯେତେଥର ମୁଁ ସେ ବ୍ୟାଙ୍କ୍‌କୁ ଯାଇଥିଲି ସେ ମୋ ସହିତ ଆବଶ୍ୟକତାଠାରୁ ଅଧିକ ଭଦ୍ର ବ୍ୟବହାର କରିଥିଲେ । ମୁଁ ଇଂଲାଣ୍ଡ ଛାଡ଼ିବା ପୂର୍ବଦିନ ତାଙ୍କୁ ଭେଟି ବିଦାୟ ମଧ୍ୟ ଗ୍ରହଣ କରିଥିଲି । ×××

'ହଁ ଆପଣ ଭାରତୀୟ ?'

'ହଁ ।'

'ମୁଁ ଦୁଃଖିତ । ଭିସା ପାଇଁ ଆପଣଙ୍କୁ ଅତି କମ୍‌ରେ ଅପେକ୍ଷା କରିବାକୁ ପଡ଼ିବ ଗୋଟିଏ ସପ୍ତାହ । କାରଣ ଆପଣଙ୍କ ପାସ୍‌ପୋର୍ଟ୍ ଆମେ ପଠାଇବୁ ମାଡ୍ରିଡ୍ ।'

'ମୁଁ କିନ୍ତୁ ଆପଣଙ୍କ ଦେଶର ନିମନ୍ତ୍ରଣ କ୍ରମେ ଆପଣଙ୍କ ଦେଶକୁ ଯାଉଛି ଗୋଟିଏ କନ୍‌ଫରେନ୍ସ୍‌ରେ ଯୋଗଦେବା ପାଇଁ । ମୋତେ ଭିସା ଦେବାତ ଆପଣମାନଙ୍କର କର୍ତ୍ତବ୍ୟ ।'

'ମୁଁ ବୁଝୁଛି ଠିକ୍ । କିନ୍ତୁ ଆମକୁ କୁହାଯାଇଛି ଭାରତୀୟମାନଙ୍କ ଭିସା ଲାଗି ମାଡ୍ରିଡ୍‌ର କ୍ଲିୟରାନ୍ସ୍ ଦରକାର ।'

ପାସ୍‌ପୋର୍ଟ ଓ ଦରଖାସ୍ତ ଫର୍ମଟା କାଉଣ୍ଟର୍‌ରେ ଦାଖଲ କରି ଫେରିଲି । ପୃଥୁଳକାୟା କ୍ଷୁଦ୍ରକେଶଧାରିଣୀ ସ୍ପାନୀଶ୍ ଉଚ୍ଚାରଣରେ ଇଂରାଜୀ କହୁଥିବା ମହିଳାଙ୍କ ମୁହଁରେ କୌଣସି ଭାବଭଙ୍ଗୀ ନ ଥିଲା । ତାଙ୍କ ମୁଖଭଳି ଯାହା ଦିଶୁଥିଲା, ତାହା ଯେପରି ଥିଲା ଗୋଟାଏ ସରକାରୀ ମୁଖା – ଯାହାକୁ ବଜାରରେ କିଣି ବ୍ୟବହାର କରାଯାଇ ପାରେ ସରକାରୀ ଅଫିସ୍‌ମାନଙ୍କରେ ।

ସ୍ପେନ୍‌ର ମାଟିରେ ପାଦ ଦେବା ପାଇଁ ମୋର ଥାଏ ପ୍ରଚଣ୍ଡ ଆଗ୍ରହ । ହିମ୍‌ନେଥି, ଲୋର୍କା, ପାବ୍ଲୋ ପିକାସୋଙ୍କ ଦେଶ ସ୍ପେନ୍ । ହେମିଂୱେ, ଅର୍‌ୱେଲ୍‌ଙ୍କ ପାଇଁ ପ୍ରଚଣ୍ଡ ଆକର୍ଷଣ – କଳା, ସାହିତ୍ୟ, ସଂସ୍କୃତି ପୁଣି ଅସୀମ ବୀରତ୍ୱର କାହାଣୀରେ ଉଜ୍ଜ୍ୱଳ,

ଭୂମଧ୍ୟସାଗର ସେବିତ ସ୍ପେନ୍ ! ସେହି ଆଗ୍ରହରେ ପ୍ରଥମ ଧକ୍କା ପୃଥୁଳକାୟା ମହିଳାଙ୍କ ପ୍ରଶ୍ନ – 'ଆପଣ ଭାରତୀୟ ?'

ଯେଉଁ ସ୍ପାନୀଶ୍ ଏମ୍ବାସୀରେ ମୁଁ ଭିସା ପାଇଁ ଦରଖାସ୍ତ ଦେଇଥିଲି, ସେଠାରେ ବେଶ୍ କିଛି ସଂଖ୍ୟକ ଇଂରେଜ ଓ ଅନ୍ୟାନ୍ୟ ଗୋରା ଲୋକ ମଧ୍ୟ ଭିସା ନେଉଥିଲେ ସ୍ପେନ୍ ଯିବାପାଇଁ । ସେମାନଙ୍କ ପାଇଁ ଭିସାପ୍ରାପ୍ତି ଥିଲା ଅଳ୍ପ କେତେ ମିନିଟ୍ ବା ଖୁବ୍ ହେଲେ ଗୋଟିଏ ଘଣ୍ଟାର ବ୍ୟାପାର । କିନ୍ତୁ ମୋ ପାଇଁ – 'ଆପଣଙ୍କୁ ଅତି କମ୍‌ରେ ଅପେକ୍ଷା କରିବାକୁ ହେବ ଗୋଟିଏ ସପ୍ତାହ ।'

ସ୍ପାନୀଶ୍ ଏମ୍ବାସୀରୁ ଫେରି ଅପେକ୍ଷା କଲି ଦିନେ–ଦୁଇଦିନ–ତିନିଦିନ । ସାତଦିନ ପରେ ପୁଣିଥରେ ବୁଝିବି – ଭିସା ପାଇଁ ମାଡ୍ରିଡ୍‌ରୁ ଅନୁମତି ପତ୍ର ମିଳିବ କି ନାହିଁ ।

ସେତେବେଳେ ମୁଁ ରହୁଥାଏ ଲଣ୍ଡନ୍‌ରେ ଶିଳ୍ପୀ-ଲେଖକ-ବନ୍ଧୁ ପ୍ରଫୁଲ୍ଲ ମହାନ୍ତି ଓ ବାରିଷ୍ଟର୍ ଡେରିକ୍ ମୋର୍‌ଙ୍କ ଫ୍ଲାଟ୍‌ରେ । ଦିନେ ସ୍ପାନୀଶ୍ ଏମ୍ବାସୀ ଅନୁଭୂତି ସମ୍ପର୍କରେ କହିଲି ।

ପ୍ରଫୁଲ୍ଲବାବୁ ଜଣେ ସ୍ପର୍ଶକାତର, ନିଜ ଅଧିକାର ସମ୍ପର୍କରେ ଖୁବ୍ ସଚେତନ ବ୍ୟକ୍ତି । ମୋ ଅନୁଭୂତି ଶୁଣି ସେ ରାଗିଗଲେ । କହିଲେ, 'ସେମାନେ ସେପରି କରିପାରିବେ ନାହିଁ । ତୁମକୁ ଭିସା ପାଇଁ ସପ୍ତାହେ ଅପେକ୍ଷା କରାଇବା ସେମାନଙ୍କର ଠିକ୍ ହୋଇ ନାହିଁ । ବର୍ଣ୍ଣ ବୈଷମ୍ୟର ଏହା ଅନ୍ୟତମ ଦୃଷ୍ଟାନ୍ତ । ତୁମେ ବର୍ତ୍ତମାନ ଟେଲିଫୋନ୍ କରି ପୁଣିଥରେ ପଚାର – କାହିଁକି ତୁମକୁ ସେମାନେ ସେହିଦିନ ଭିସା ଦେଲେ ନାହିଁ ।'

ସେହି ସ୍ଥୂଳକାୟା ମୁଖା ପିନ୍ଧିଥିବା ଭଳି ମନେ ହେଉଥିବା ଭଦ୍ରମହିଳାଙ୍କୁ ଟେଲିଫୋନ୍ କରିବାକୁ ମୋର ଆଦୌ ଇଚ୍ଛା ନ ଥିଲା । ତଥାପି ପ୍ରଫୁଲ୍ଲବାବୁଙ୍କ କଥା ଏଡ଼ାଇ ନ ପାରି ଟେଲିଫୋନ୍ କଲି ।

ଏଥର କିନ୍ତୁ ଶୁଣାଗଲା, ଗୋଟିଏ ଭଦ୍ର ସହାନୁଭୂତିଶୀଳ ସ୍ୱର : 'ଆପଣଙ୍କର ତ ଭିସା ପାଇଁ ଅପେକ୍ଷା କରିବାର ଆବଶ୍ୟକତା ନାହିଁ । ସେହିଦିନ ଆପଣଙ୍କୁ ଭିସା ଦେଇଦେବା ଉଚିତ ଥିଲା । ଆପଣ ଆଜି ଆସି ଭିସା ନେଇଯାଆନ୍ତୁ ।'

ଅଳ୍ପ କେତେଘଣ୍ଟା ପରେ ମୁଁ ସଂଗ୍ରହ କଲି ମୋର ଭିସା । × × ×

ଗୋରାମାନଙ୍କ ପୃଥିବୀରେ ସାବନା ମଣିଷମାନଙ୍କ ଭାଗ୍ୟ ଏହିପରି । ଯେଉଁମାନେ ଆପଣମାନଙ୍କୁ ଚିହ୍ନନ୍ତି – ଆପଣଙ୍କ ଶିକ୍ଷା ସଂସ୍କୃତି, ସାମାଜିକ ପ୍ରତିଷ୍ଠା ସମ୍ପର୍କରେ ଅବହିତ ସେମାନଙ୍କ କଥା ଭିନ୍ନ ହୋଇପାରେ; କିନ୍ତୁ ଆପଣଙ୍କୁ ଚିହ୍ନି ନ ଥିବା ସାଧାରଣ ଗୋରା ଲୋକଟି ପ୍ରଥମରୁ ହୁଏତ ଆପଣଙ୍କୁ ସନ୍ଦେହ କରେ – ଆପଣ ବ୍ୟାଙ୍କ୍‌ରୁ ଜାଲ୍ ଉପାୟରେ ଟଙ୍କା ଉଠାଇ ନେବେ ନାହିଁତ ? ଆପଣ ଭିସା ଖୋଜିବାର ଅର୍ଥ ନୁହେଁତ, ଅନ୍ୟ ଦେଶରେ

ସ୍ଥାୟୀ ଭାବରେ ବସବାସ କରିବା ? ଗୋରାମାନଙ୍କ ଦେଶରେ ସାବନା ମଣିଷମାନେ ବହୁ ସଂଖ୍ୟାରେ ଆସି ରହିଗଲେଣି ଓ ବ୍ୟବସାୟ ବାଣିଜ୍ୟ, ସରକାରୀ ବେସରକାରୀ ଚାକିରିର ଗୋଟିଏ ମୋଟା ଅଂଶ ଦଖଲ କରି ନେଲେଣି । ଅଥଚ ଏଇ ଗତକାଲି ସେମାନେ ଥିଲେ ଗୋରାମାନଙ୍କ ଉପନିବେଶର ପ୍ରଜାମାତ୍ର । ଆପଣ ଆସି ଯୋଗଦେବାକୁ ଚାହୁଁନାହାନ୍ତି ତ ଅନ୍ୟ ସାବନା ମଣିଷମାନଙ୍କ ସହିତ : ବ୍ୟବସାୟ ବାଣିଜ୍ୟରେ, ବ୍ୟାଙ୍କ ଚାଲିଆତିରେ, ଚାକିରି ବାକିରିରେ ?

କଳା ଲୋକଙ୍କ ପ୍ରତି ଗୋରାମାନଙ୍କ ମନୋଭାବ ସାବନାମାନଙ୍କ ପ୍ରତି ମନୋଭାବଠାରୁ ଭିନ୍ନ । କଳା ଲୋକମାନଙ୍କ ପ୍ରତି ଗୋରାଲୋକଙ୍କର ଅଧିକ ଭୟ : କାରଣ ସେମାନେ ଅପେକ୍ଷାକୃତ ହିଂସ୍ର ଓ ସଙ୍ଗଠିତ । କ୍ରୀଡ଼ା ଓ ପପ୍ ସଙ୍ଗୀତରେ ସେମାନେ ଗୋରାମାନଙ୍କଠାରୁ ଅନେକ ସମୟରେ ସେମାନଙ୍କ ଶ୍ରେଷ୍ଠତ୍ୱ ପ୍ରମାଣିତ କରିସାରିଛନ୍ତି । ସାବନାମାନେ ନିଜ ସଂସ୍କୃତି ସମ୍ପର୍କରେ ଅଧିକ ସଚେତନ । ସେମାନଙ୍କ ସଫଳତା ବ୍ୟବସାୟ ବାଣିଜ୍ୟରେ । ସେମାନେ ଧୂର୍ତ୍ତ ଓ ଛଳନାପ୍ରିୟ ବୋଲି ଗୋରାମାନଙ୍କ ଧାରଣା ।

ଇତିହାସ ସବୁ ସମୟରେ ବିଜେତାମାନଙ୍କ ସପକ୍ଷରେ । ଉପନିବେଶ ପରବର୍ତ୍ତୀ ଯୁଗରେ ମଧ୍ୟ ତଥାପି ଗୋରାମାନେ ସାବନାମାନଙ୍କଠାରୁ ନିଜକୁ ଶ୍ରେଷ୍ଠ ମନେକରନ୍ତି; ସାବନାମାନେ ନିଜକୁ ମନେକରନ୍ତି ନ୍ୟୂନ । ସଭ୍ୟତାର ସଂଜ୍ଞା ତଥାପି ନିରୂପିତ ପାଶ୍ଚାତ୍ୟ ସମାଜର ମାନଦଣ୍ଡରେ । ସାବନା ମଣିଷଟି ବହୁ କାରଣରୁ ଆକାଂକ୍ଷୀ ଗୋରାମାନଙ୍କ ପୃଷ୍ଠପୋଷକତାର ।

ଏହି ପରିପ୍ରେକ୍ଷୀରେ ଗୋରାମାନଙ୍କଠାରୁ କିଛି ଅପମାନ, କିଛି ଲାଞ୍ଛନା ଲାଭ କରିବା ସାବନା ମଣିଷର ଭାଗ୍ୟ – ମୋର ଅନ୍ତତଃ ଏହିପରି ମନେହୁଏ । (୧୯୯୩)



## ନିଃସଙ୍ଗ ପ୍ରଧାନମନ୍ତ୍ରୀ

ପ୍ରତିଥର ଇଂଲାଣ୍ଡ ଗଲେ ଆନ୍ନାଙ୍କ ସହିତ ସାକ୍ଷାତ୍ କରେ । ଏଥର ମଧ୍ୟ ଅକ୍ଟୋବର ୯ ୨ର ଗୋଟିଏ ସନ୍ଧ୍ୟାରେ ତାଙ୍କ ସହିତ ଚା' ପାନର କାର୍ଯ୍ୟକ୍ରମ ଥିଲା ।

ସମ୍ପ୍ରତି ଆନ୍ନାଙ୍କ ବୟସ ଛୟାଅଶୀ । ପ୍ରାୟ କୋଡ଼ିଏ ବର୍ଷ ତଳେ ସେ ଆସିଥିଲେ ଆମ ଘରକୁ – କ୍ୟାଣ୍ଟରବରୀର କେଣ୍ଟ୍ ବିଶ୍ୱବିଦ୍ୟାଳୟରେ ମୁଁ ଗବେଷଣା କରୁଥିବା ସମୟରେ । ଅତ୍ୟନ୍ତ ସ୍ନେହ ପରାୟଣା ମାର୍ଜିତ ରୁଚିସମ୍ପନ୍ନା ଭଦ୍ରମହିଳା । ପ୍ରତିଥର ସାକ୍ଷାତରେ ସେ ଖୁବ୍ ଆନନ୍ଦିତ ହୁଅନ୍ତି । ବିଭିନ୍ନ ବିଷୟରେ ତାଙ୍କର ଆଗ୍ରହ ।

ଆନ୍‌ନାଙ୍କ ସୁଯୋଗ୍ୟ ପୁତ୍ର ଜନ୍ ରିଡ୍ ଜର୍ମାନୀର କୌଣସି ବିଶ୍ୱବିଦ୍ୟାଳୟରେ ପ୍ରାଚ୍ୟବିଦ୍ୟାର ପ୍ରଫେସର । ଅବିବାହିତ । ମାତାଙ୍କ ଭଳି ଅମାୟିକ, ଅଭିଜାତ, ଜ୍ଞାନୋଦ୍ଦୀପ୍ତ । ମାତା ଓ ପୁତ୍ର ଏକତ୍ର ରହନ୍ତି । ଇଂରେଜ ସମାଜରେ ବୃଦ୍ଧା ମାତାଙ୍କୁ ନିକଟରେ ଶେଷଯାଏ ରଖିବା ସଚରାଚର ଦେଖାଯାଏ ନାହିଁ । ସେ ଦୃଷ୍ଟିରୁ ବ୍ୟତିକ୍ରମ ହୋଇପାରେ ଜନ୍ ଓ ଆନ୍‌ନାଙ୍କ ପରିବାର ।

ଲଣ୍ଡନ୍‌ର କେନ୍ଦ୍ରସ୍ଥଳରେ ଜନ୍‌ଙ୍କ ବାସଗୃହ । ଚଳଣିରେ ଆଭିଜାତ୍ୟ ଓ ପ୍ରାଚୁର୍ଯ୍ୟ ସୁସ୍ପଷ୍ଟ । ଦାମିକା ଜାଗୁଆର୍ କାର୍; ହ୍ୟାରଡ୍ ଭଳି ସୁପର୍ ମାର୍କେଟ୍‌ରେ ସପିଙ୍ଗ୍ କରନ୍ତି ସେ । ସାଧାରଣ ଇଂରେଜ ପରିବାରଠାରୁ ତାଙ୍କର ସ୍ୱାତନ୍ତ୍ର୍ୟ ଅକ୍ଲେଶରେ ବୁଝାପଡ଼େ ।

ଏଥର ଲକ୍ଷ୍ୟ କଲି, ଆନ୍‌ନା ଖୁବ୍ ଦୁର୍ବଳ ହୋଇପଡ଼ିଛନ୍ତି । ପ୍ରାୟ ବସିରହୁଛନ୍ତି ସୋଫାରେ । ସ୍ୱର କ୍ଷୀଣ ଓ ମନ୍ଥର ହୋଇପଡ଼ିଛି । ଜନ୍‌ଙ୍କ ଉପରେ ପ୍ରାୟ ନିର୍ଭର କରିବାକୁ ପଡୁଛି ତାଙ୍କୁ ।

ବିଭିନ୍ନ ଆଲୋଚନା ମଧ୍ୟରେ ଆନ୍‌ନାଙ୍କ ସ୍ୱାସ୍ଥ୍ୟ ବିଷୟ ପଡ଼ିଲା । 'ଆପଣ ଖାଉ ନାହାନ୍ତି ମୋଟେ । ସେଥିପାଇଁ ଦୁର୍ବଳ ହୋଇପଡୁଛନ୍ତି । ଆପଣଙ୍କର ଭଲ କରି ଖାଇବା ଉଚିତ ।' ମୋ କଥାରେ ହସିଲେ ଆନ୍‌ନା । 'ଆଉ କ'ଣ ଖାଇପାରିବି ?' – ସ୍ନେହମୟୀ ଜନନୀଙ୍କ ହସ ତାଙ୍କର ଛୟାଅଶୀ ବର୍ଷର ପୁରୁଣା ମୁଖମଣ୍ଡଳରେ ।

'ଜନ୍ ତ ଇୟା ଭିତରେ ଚାଲିଯିବ ଜର୍ମାନୀ ।' ସେ କହିଲେ ।

'ଆପଣ କ'ଣ ରହିବେ ଏକୁଟିଆ ?' ପଚାରିଲି ମୁଁ ।

'ହଁ ! ଆଉ କ'ଣ କରିବି ? ତେବେ ନିଜ କାମ ନିଜେ କରିପାରୁଛି ମୁଁ ।' ଧୀରେ ଧୀରେ କହିଲେ ଆନ୍‌ନା । – ତା'ଛଡ଼ା ଆମର ବନ୍ଧୁ ଡେଭିଡ୍ ମୁଁ ନ ଥିବା ସମୟରେ ମଝିରେ ମଝିରେ ଟେଲିଫୋନ୍ କରନ୍ତି । ସପିଙ୍ଗ୍ ମଧ୍ୟ କରିଦେଇ ଯାଆନ୍ତି କେବେ କେବେ ।' କହିଲେ ଜନ୍ ।

'ଅସୁବିଧା ହେଲେ ଡେଭିଡ୍‌କୁ ଟେଲିଫୋନ୍ କରିବି ।' ଆନ୍‌ନା ନିଜକୁ ନିଜେ ଆଶ୍ୱାସନା ଦେଲାଭଳି କହିଲେ ।

ଏତେବଡ଼ ଘରଟାରେ ଛୟାଅଶୀ ବର୍ଷର ବୁଢ଼ୀ ଜଣେ । ଏକାକିନୀ – ନିଜକାମ ନିଜେ କରିବେ ମାସ ମାସ । ପରିସ୍ଥିତିଟା ଗ୍ରହଣ କରିନେବା ଆଦୌ ସହଜ ନ ଥିଲା ମୋ ପକ୍ଷରେ ।

'ମୁଁ ମାସ ମାସ ଜର୍ମାନୀରେ ରହିଲେ ମାଆ ତ ଏକୁଟିଆ ରହନ୍ତି ଏମିତି ।' – କହିଲେ ଜନ୍ ।

ଚା' ପାନ ପରେ ଆନ୍ନାଙ୍କୁ ଆଲିଙ୍ଗନ କରି ବିଦାୟ ନେଲି । ଜନ୍ ଆସିଲେ ଦ୍ୱାର ଯାଏଁ ମୋତେ ବିଦାୟ ଦେବା ପାଇଁ । ଆନ୍ନା ସେମିତି ବସିଥା'ନ୍ତି ସୋଫାରେ – ଦ୍ୱାର ଯାଏଁ ଆସିବାକୁ ତାଙ୍କର ଶକ୍ତି ନ ଥାଏ ହୁଏତ ! × × ×

ଆନ୍ନାଙ୍କୁ ଭେଟିବାର ଅଳ୍ପଦିନ ପରେ ଇଂଲାଣ୍ଡର ଗୋଟିଏ ଦୈନିକ ବିଶିଷ୍ଟ ସମ୍ବାଦପତ୍ରରେ ମଜା ସମ୍ବାଦଟିଏ ପ୍ରକାଶିତ ହୋଇଥିଲା । ମୋଟାମୋଟି ତାହା ଥିଲା ଏହିପରି :

ନିଃସଙ୍ଗ ପ୍ରଧାନମନ୍ତ୍ରୀ

ପ୍ରଧାନମନ୍ତ୍ରୀ ଜନ୍ ମେଜର୍ ବର୍ତ୍ତମାନ ଅତ୍ୟନ୍ତ ନିଃସଙ୍ଗ ଜୀବନ କଟାଉଛନ୍ତି । ରାଜନୀତିରେ ଜଣେ ଦୁଇଜଣଙ୍କୁ ଛାଡ଼ିଦେଲେ ତାଙ୍କର ବିଶ୍ୱସ୍ତ ଆଉ କେହି ନାହାନ୍ତି । ତାଙ୍କର ସ୍ତ୍ରୀ ଓ ପିଲାମାନେ ରହୁଛନ୍ତି ଅନ୍ୟ ଏକ ସହରରେ । ତେଣୁ ସକାଳେ ଭଲ ଭାବରେ ବ୍ରେକ୍‌ଫାଷ୍ଟ କରି ଦେବାକୁ – ଏପରିକି ତାଙ୍କ ଲୁଗାପଟା ଇସ୍ତ୍ରୀ କରି ଦେବାକୁ ତାଙ୍କ ପାଖରେ କେହି ନାହାନ୍ତି । ଅନେକ ଦିନ ସେ ଲଞ୍ଚ୍ ଖାଇପାରୁ ନାହାନ୍ତି ଓ ସାରାଦିନ ଉପାସ ରହୁଛନ୍ତି । ଆପଣ ଯଦି ତାଙ୍କୁ ବ୍ୟକ୍ତିଗତ ଭାବେ ଜାଣନ୍ତି, ଥରେ ଖାଲି ଅନ୍ତତଃ ଟେଲିଫୋନ୍ କରି କହନ୍ତୁ ନା – ଜନ୍, କେମିତି ଅଛ ? ତା'ହେଲେ ସେ ହୁଏତ ଟିକିଏ ଖୁସି ହେବେ ।

ସମ୍ବାଦଟି ମୋ ପାଇଁ ଯେତିକି ଥିଲା ଆମୋଦଦାୟକ, ସେତିକି ବିସ୍ମୟକର । ଇଂଲାଣ୍ଡର ପ୍ରଧାନମନ୍ତ୍ରୀଙ୍କ ବ୍ରେକ୍‌ଫାଷ୍ଟ ପ୍ରସ୍ତୁତ କରିବା ପାଇଁ, ଲୁଗାପଟା ଇସ୍ତ୍ରୀ କରିଦେବା ପାଇଁ ଲୋକ ନାହାନ୍ତି ? ଭାରତ ପରି ଦେଶରେ ଯେଉଁଠାରେ ରାଜ୍ୟରେ ଉପମନ୍ତ୍ରୀଟିଏ ମଧ୍ୟ ରାଜକୀୟ କାଇଦାରେ ଚଳେ, ଚାକର, ନୌକର, ଗାଡ଼ି, ଘୋଡ଼ା, ବିଳାସବ୍ୟସନ – ତାହା ଦେଖି ଆସିଥିବା ମୋ ପରି ଜଣେ ବ୍ୟକ୍ତି ଇଂଲାଣ୍ଡର ପ୍ରଧାନମନ୍ତ୍ରୀଙ୍କ ସମ୍ପର୍କରେ ଏପରି ସମ୍ବାଦଟିଏ ବିଶ୍ୱାସ କରିବ କିପରି ?

ସମ୍ବାଦଟି ପ୍ରକାଶିତ ହେବା ପରେ ପରେ ପ୍ରଧାନମନ୍ତ୍ରୀଙ୍କ ଦପ୍ତରରୁ ଅବଶ୍ୟ ଘୋଷିତ ହେଲା, ଏହା ଅତିରଞ୍ଜିତ ଏବଂ ଠିକ୍ ନୁହେଁ ।

କିନ୍ତୁ ସମ୍ବାଦଟି କେତେଦୂର ଠିକ୍, ତାହା ଏଠାରେ ବଡ଼ କଥା ନୁହେଁ । ବଡ଼ କଥା ହେଉଛି, ଇଂଲାଣ୍ଡ ଭଳି ସମୃଦ୍ଧ ଶକ୍ତିଶାଳୀ ଦେଶର ଜଣେ ପ୍ରଧାନମନ୍ତ୍ରୀ ଯେ ଏପରି ନିଃସଙ୍ଗ ହୋଇ ପାରନ୍ତି, ଏପରି ସମ୍ଭାବନାକୁ ଅସ୍ୱୀକାର କରାଯାଇ ନ ପାରେ । ପ୍ରଧାନମନ୍ତ୍ରୀଙ୍କ ଦପ୍ତରର ଘୋଷଣା ସତ୍ତ୍ୱେ ଏପରି ବିଶ୍ୱାସ କରିବା ସ୍ୱାଭାବିକ ଯେ, ଏହି ସମ୍ବାଦରେ କିଛିଟା ସତ୍ୟତା ରହିଅଛି ।

ଇଂଲାଣ୍ଡରେ ମୋଟାମୋଟି ପାଞ୍ଚବର୍ଷର ରହଣିରେ ଯାହାକୁ ସବୁଠାରୁ ଅଧିକ ଜଟିଳ ସମସ୍ୟା ବୋଲି ମୁଁ ମନେକରେ – ତାହା ହେଉଛି ବ୍ୟକ୍ତିର ନିଃସଙ୍ଗତା । ଆନ୍ନାଙ୍କ ଭଳି ଛୟାଅଶୀ ବର୍ଷର ବୃଦ୍ଧ ହୁଅନ୍ତୁ କିମ୍ବା ଜନ୍ ମେଜର୍‌ଙ୍କ ଭଳି ଅତି ଶକ୍ତିଶାଳୀ ଜନନେତା ହୁଅନ୍ତୁ, ପ୍ରତ୍ୟେକଙ୍କ ଜୀବନ ନିଃସଙ୍ଗ ହେବାକୁ ବାଧ୍ୟ । ଏଠାରେ ଅବଶ୍ୟ ଯୁକ୍ତି କରାଯାଇପାରେ, ଯେକୌଣସି ମୂଲ୍ୟବୋଧ ବା ଅନୁଭୂତି ଭଳି ନିଃସଙ୍ଗତା । ମଧ୍ୟ ଆପେକ୍ଷିକ । ମୁଁ ଯେଉଁ ଜୀବନଧାରାକୁ ନିଃସଙ୍ଗ ମନେକରୁଛି, ପାଶ୍ଚାତ୍ୟ ଜଗତରେ ଅନେକେ ତାହାକୁ ସ୍ୱାଧୀନ ବୋଲି ମତ ଦେବେ । ଏ ବିଷୟରେ ମୁଁ ଅବହିତ ।

ଯେଉଁ ସମାଜ ଯେତିକି ପାରମ୍ପରିକ, ସେ ସମାଜରେ ଗୋଷ୍ଠୀ ଉପରେ ଗୁରୁତ୍ୱ ସେତିକି ଅଧିକ । ପାରମ୍ପାରିକ ସମାଜରେ ପରିବାର, ଜାତି, ଗ୍ରାମ ବା ଦେଶ ସହିତ ବ୍ୟକ୍ତିଟି ନିଜକୁ ସାମିଲ କରେ ଅଧିକ । ବ୍ୟକ୍ତିଗତ ଅଭିଳାଷ, ରୁଚି, ସ୍ୱାର୍ଥ ବା ମୂଲ୍ୟବୋଧ ଅପେକ୍ଷା ଗୋଷ୍ଠୀର ଅନୁରୂପ ଗୁଣଗୁଡ଼ିକ ଉପରେ ଗୁରୁତ୍ୱ ଦିଏ ଅଧିକ । କିନ୍ତୁ ଆଧୁନିକ ପାଶ୍ଚାତ୍ୟ ସମାଜରେ ବ୍ୟକ୍ତିଟି ପ୍ରାୟ ମୁକ୍ତ ଗୋଷ୍ଠୀର କବଳରୁ – ଗୋଟିଏ ଅର୍ଥରେ ଅବଶ୍ୟ ଓ ସ୍ୱାଧୀନ; କିନ୍ତୁ ଅନ୍ୟ ଅର୍ଥରେ ସେ ନିଃସଙ୍ଗ : ତା'ର ଜୀବନଯାପନ କେବଳ ତାଆ ପାଇଁ : ସେ ଆତ୍ମକୈନ୍ଦ୍ରିକ, ସ୍ୱାର୍ଥପର, ବିଚ୍ଛିନ୍ନ, ନିଃସହାୟ ଓ ବିମର୍ଷ ।

ପାଶ୍ଚାତ୍ୟ ଜଗତରେ ବ୍ୟକ୍ତିର ନିଃସଙ୍ଗତା ପାଇଁ ହୁଏତ ଦାୟୀ, ଜଳବାୟୁ, ସାମାଜିକ ମୂଲ୍ୟବୋଧ – ଏବଂ ସବୁଠାରୁ ବେଶି ଶିଳ୍ପ ବିପ୍ଳବ ଓ ଟେକ୍‌ନୋଲୋଜି । ଶୀତଳ ଜଳବାୟୁ, ଉନ୍ମୁକ୍ତ ସାମାଜିକ ପରିବେଶର ପରିପନ୍ଥୀ । ପ୍ରତ୍ୟେକ ଘରର କବାଟ ଝରକା ବନ୍ଦ । ବ୍ୟକ୍ତି କିମ୍ବା ପରିବାର ଅଧିକାଂଶ ସମୟ ବ୍ୟାପକ ସମାଜଠାରୁ ବିଚ୍ଛିନ୍ନ ରହିବାକୁ ବାଧ୍ୟ । ପୁଣି ପାଶ୍ଚାତ୍ୟ ଦର୍ଶନ ଓ ବିଚାରଧାରା ବ୍ୟକ୍ତିର ସ୍ୱାଧୀନତା ଉପରେ ଗୁରୁତ୍ୱ ପ୍ରଦାନ କରି ଆସିଛି ଶତାବ୍ଦୀ ଶତାବ୍ଦୀ ଧରି । ପରିଣାମରେ ବ୍ୟକ୍ତିଟି ଅଧିକରୁ ଅଧିକ ହୋଇଛି ଆତ୍ମନିର୍ଭରଶୀଳ, ସ୍ୱାଧୀନ ଓ ସ୍ୱାର୍ଥପର ଏବଂ ଗୋଷ୍ଠୀ ଜୀବନରୁ ବିଚ୍ଛିନ୍ନ ।

ଭାରତୀୟ ଭାବରେ ଏହି ନିଃସଙ୍ଗତା ମୋ ପାଇଁ ଯେତେ ପୀଡ଼ାଦାୟକ, ଜଣେ ଇଂରେଜ ପାଇଁ ହୁଏତ ସେପରି ହୋଇ ନ ପାରେ । କାରଣ ଏଭଳି ନିଃସଙ୍ଗତା ସହିତ ସେ ଅନେକାଂଶରେ ଅଭ୍ୟସ୍ତ । ତେବେ ନିଃସଙ୍ଗତାର ହାହାକାର ଓ ଶୂନ୍ୟତାରୁ ସମ୍ପୂର୍ଣ୍ଣ ମୁକ୍ତ ନୁହନ୍ତି କେହି – ସେ ଆନ୍ନାଙ୍କ ଭଳି ସାଧାରଣ ବ୍ୟକ୍ତି ହୁଅନ୍ତୁ କିମ୍ବା ହୁଅନ୍ତୁ ଜନ୍ ମେଜର୍‌ଙ୍କ ଭଳି ଦେଶର ପ୍ରଧାନମନ୍ତ୍ରୀ । (୧୯୯୩)



# ଦୂର ବନ୍ଧୁ

ସ୍କଟ୍‌ଲାଣ୍ଡର ଷ୍ଟର୍ଲିଂ ରେଲୱେ ଷ୍ଟେସନରେ ଓହ୍ଲାଇ ଦେଖିଲି, ପ୍ଲାଟ୍‌ଫର୍ମରେ ମୁଁ ହିଁ ଏକମାତ୍ର ଯାତ୍ରୀ । ସମୟ ରାତି ଚାରି । ଚାରିଆଡ଼େ ପ୍ରଚଣ୍ଡ ଥଣ୍ଡା, କୁହୁଡ଼ି ଓ ଅନ୍ଧାର ।

କ୍ୟାଣ୍ଟରବରୀରୁ ଛଅଘଣ୍ଟା ରେଳଯାତ୍ରା କରି ଆସିଥାଏ ଷ୍ଟର୍ଲିଂ । ଇଂଲାଣ୍ଡ ସେତେବେଳେ ମୋ ପାଇଁ ନୂଆ ।

ଅସମୟରେ ଅପରିଚିତ ସ୍ଥାନରେ ପହଞ୍ଚିବାର ଅସୁବିଧା ମୋତେ ଚିନ୍ତିତ କଲା ।

ପ୍ଲାଟ୍‌ଫର୍ମ୍‌ରେ ଦୂରରୁ କେହି ଜଣେ ଆସୁଥିବା ଦେଖି ତାଙ୍କ ପାଖକୁ ଗଲି । ଦେହରେ କଳା ଓଭର୍‌କୋଟ୍, ମୁଣ୍ଡରେ ଟୋପି, ମୁହଁରେ ଦାଢ଼ି, ରୁକ୍ଷ ଚେହେରା । ଭୟ ଲାଗିଲା । ତଥାପି ସାହସ ସଞ୍ଚୟ କରି କହିଲି, 'ମୁଁ ଷ୍ଟର୍ଲିଂ ୟୁନିଭର୍‌ସିଟି ଯିବି । କେମିତି ଯିବାକୁ ହେବ ?'

ସେ ମୋତେ ସନ୍ଦେହରେ ଚାହିଁଲେ । ଯାହା କହିଲେ ମୁଁ କିଛି ବୁଝି ପାରିଲି ନାହିଁ । ସେ ହୁଏତ ସ୍କଟ୍‌ଲାଣ୍ଡ ଭାଷା ବା ଗେଲିକ୍ କହୁଥିଲେ । ତଥାପି ତାଙ୍କୁ ଧନ୍ୟବାଦ ଦେଇ ପ୍ଲାଟ୍‌ଫର୍ମ୍ ବାହାରକୁ ଆସିଲି । ଏକୁଟିଆ ରାସ୍ତା । ଭୟ ଓ ଆଶଙ୍କା ।

କିଛି ଦୂରରେ ଛୋଟ ଚା' ଦୋକାନଟିଏ ଆଲୁଅଟିଏ । ଜଳୁଥିବା ଲକ୍ଷ୍ୟ କଲି । ଦୋକାନଟି ଅବଶ୍ୟ ବନ୍ଦ ଥିଲା । ସେଠାକୁ ଗଲି ଓ କବାଟ ଠକ୍ ଠକ୍ କଲି । ଦୋକାନ ଖୋଲିଲେ ଜଣେ ବୁଢ଼ୀ । ତାଙ୍କୁ କହିଲି ଯେ ମୁଁ ଜଣେ ଭାରତୀୟ, ଷ୍ଟର୍ଲିଂ ୟୁନିଭର୍‌ସିଟି ଯିବାକୁ ଚାହେଁ, ଇତ୍ୟାଦି ।

ସେ ମୋତେ ଭିତରକୁ ଡାକିଲେ ଓ ଗୋଟିଏ ଷ୍ଟୁଲ୍‌ରେ ବସାଇଲେ ।

କହିଲେ, ବର୍ତ୍ତମାନ ତ ଯିବାର କିଛି ଉପାୟ ନାହିଁ । ସକାଳ ସାତଟାରେ ମଣି ବସ୍ ଧରିବାକୁ ହେବ । ବସ୍‌ଷ୍ଟପ୍ ଖୁବ୍ ଦୂର ନୁହେଁ । ତେବେ ବସ୍ ଆସିବାକୁ ଡେରି ଅଛି । ମୁଁ ତାଙ୍କ ଦୋକାନରେ ଅପେକ୍ଷା କରିପାରେ ।

ସମ୍ପୂର୍ଣ୍ଣ ଅପରିଚିତ ସ୍ଥାନ ଓ ପରିବେଶରେ ଅପେକ୍ଷା କଲି ବେଶ୍ କିଛି ସମୟ । କିଛି ଗୋଟାଏ ପଢ଼ିବାକୁ ଚେଷ୍ଟା କଲି । ଯେତେଦୂର ମନେପଡୁଛି, ବୁଢ଼ୀ ମୋ ସହିତ ବିଶେଷ କଥାବାର୍ତ୍ତା ହୋଇ ନ ଥିଲେ । ସେ ଦୋକାନର ଜିନିଷସବୁ ସଜାଇ ରଖୁଥିଲେ – ହୁଏତ ଆସନ୍ତାକାଲିର କିଣାବିକା ପାଇଁ ପ୍ରସ୍ତୁତ କରୁଥିଲେ ନିଜକୁ । ତାଙ୍କ ପାଖରେ ଚୁପ୍‌ଚାପ୍ ବସିଥିଲା ଗୋଟାଏ ପ୍ରକାଣ୍ଡ ଭୁଆଁ ବିଲେଇ । ସେ ତା' ମାଲିକାଣୀଙ୍କ ମୁଡ୍ ଠିକ୍ ବୁଝିଥିଲା ନିଶ୍ଚୟ । ସେ ସବୁ ସମୟରେ ମୂର୍ତ୍ତିପରି ଚୁପ୍‌ଚାପ୍ ହିଁ ବସିଥିଲା । ବାହାର ଆଲୋକିତ

ଦେଖାଯିବା ପରେ ମୁଁ ବୁଢ଼ୀକୁ ଧନ୍ୟବାଦ ଜଣାଇ ରାସ୍ତା ଉପରକୁ ଆସିଲି । ମଣ୍ଡି ବସ୍‌ରେ ଷ୍ଟର୍ଲିଂ ୟୁନିଭର୍‌ସିଟି ଯିବାରେ ମୋର କୌଣସି ଅସୁବିଧା ହୋଇ ନ ଥିଲା ।

ଇଂଲାଣ୍ଡର କୋଭେଣ୍ଟ୍ରି ଶିଳ୍ପ ନଗର ଅଞ୍ଚଳରେ ଛୋଟ ଗାଉଁଲି ସହରଟିଏ ଲାମିଂଟନ୍ ସ୍ପା । ସେଇ ସହରରେ ପାଦରେ ଚାଲି ଚାଲି କଟାଇଲି ଗୋଟିଏ ଦିନ । ସହରର ଟାଉନ୍‌ହଲ୍, ମିଉଜିୟମ୍, ସି.ଟି. ସେଣ୍ଟର୍ ଇତ୍ୟାଦି ବୁଲି ବୁଲି ଦେଖିଲି ।

ଏମିତି ଛୋଟ ନିହାତି ଅଣଓସାରିଆ ଗଳିରେ ବୁଲୁ ବୁଲୁ ଦେଖିଲି ରେସ୍ତୋରାଁଟିଏ । କପେ ଚା' ପାଇଁ ରେସ୍ତୋରାଁରେ ପଶିଲି ।

ନିହାତି ପରିଷ୍କାର ରେସ୍ତୋରାଁଟି । କାନ୍ଥର ରଙ୍ଗ ଧଳା; ଲାଲ ରଙ୍ଗର ପ୍ଲାଷ୍ଟିକ୍ ଚେୟାର୍ ଓ ଟେବୁଲ୍ । ଦୋକାନୀ ଓ ତିନି ଚାରିଜଣ ଗ୍ରାହକ । ଚା' କପଟି ଆଣି ଗୋଟିଏ ଚେୟାରରେ ବସିଲି । ଲକ୍ଷ୍ୟ କଲି, ମୋ ସାମ୍‌ନାରେ ବସିଥିବା ଭଦ୍ର ମହିଳା ମୋତେ ଚାହିଁ ଅଳ୍ପ ଅଳ୍ପ ହସୁଛନ୍ତି ।

'ଗୁଡ୍‌ମର୍ଣ୍ଣିଂ,' ମୁଁ କହିଲି, 'ଆପଣ ବେଶ୍ ଖୁସି ଅଛନ୍ତି ମନେହେଉଛି ।'

'ହଁ, ଆପଣଙ୍କ ବ୍ୟାଗ୍‌ଟି ସତରେ ଚମତ୍କାର', ସେ ମୋତେ ବଧେଇ ଜଣାଇଲେ ।

ମୋ କାନ୍ଧରେ ପଡ଼ିଥିଲା ଗୋଟିଏ ପିପିଲି ଝୁଲା ବ୍ୟାଗ୍ । ଉଜ୍ଜ୍ୱଳ ଲାଲରଙ୍ଗର ବ୍ୟାଗ୍ ଉପରେ ହରିଣ ଓ ମୟୂରର କଳା ରଙ୍ଗର ଛବି ।

'ଆପଣ କ'ଣ ସତରେ ଏ ବ୍ୟାଗ୍‌ଟି ପସନ୍ଦ କରନ୍ତି ?' ପଚାରିଲି ଓ ସେ ବ୍ୟାଗ୍‌ଟି କେଉଁଠାରେ ପ୍ରସ୍ତୁତ ହୋଇଛି, ମୁଁ ଭାରତର କେଉଁ ଅଞ୍ଚଳରୁ ଆସିଛି ଇତ୍ୟାଦି କ୍ଷୁଦ୍ର ଭାଷଣଟିଏ ଦେଲି । ସେ ଭାରତ ସମ୍ପର୍କରେ ପ୍ରାୟ କିଛି ଜାଣି ନ ଥିବା ଭଳି ମନେହେଲା । ଭଦ୍ରମହିଳା ଥିଲେ ନିହାତି ନମ୍ର ଓ ମେଳାପି । ଆଉ ଥରେ ପଚାରିଲି, 'ଆପଣଙ୍କର କ'ଣ ସତରେ ବ୍ୟାଗ୍‌ଟି ପସନ୍ଦ ହୋଇଛି ? '

'ନିଶ୍ଚୟ', ସେ କହିଲେ ।

'ତା'ହେଲେ ଆପଣ ଦୟାକରି ଏ ବ୍ୟାଗ୍‌ଟି ମୋର ଉପହାର ରୂପେ ଗ୍ରହଣ କରନ୍ତୁ ।' ମୁଁ ପ୍ରସ୍ତାବ ଦେଲି ।

'କିନ୍ତୁ କାହିଁକି ? ମୋତେ କାହିଁକି ଆପଣ ଏତେ ସୁନ୍ଦର ବ୍ୟାଗ୍‌ଟି ଦେଇଦେବେ ?'

'କାରଣ, ମୁଁ ଥଟ୍ଟାରେ କହିଲି,' 'ଏ ବ୍ୟାଗ୍‌ଟି ଯିଏ ପସନ୍ଦ କରିବ, ତାକୁ ଦେଇଦେବି ବୋଲି ମୁଁ ପ୍ରତିଜ୍ଞା କରିଛି ।'

ସେ ହସିଲେ । ରେଷ୍ଟୋରାଁର ଅନ୍ୟମାନେ ବି । ଭଦ୍ରମହିଳା ବ୍ୟାଗ୍‌ଟି ଗ୍ରହଣ କଲେ ମୋଠାରୁ ।

ପ୍ରଥମ ଘଟଣାଟି ୧୯୭୪ରେ ଓ ଦ୍ୱିତୀୟଟି ୧୯୯୨ରେ ଘଟିଥିଲା । ମୋତେ ଯେଉଁ ବୁଢ଼ୀ ବହୁ ସମୟ ତାଙ୍କ ଦୋକାନରେ ଆଶ୍ରୟ ଦେଇଥିଲେ ବା ମୋ'ଠାରୁ ଯେ ପିପିଲି ବ୍ୟାଗ୍‌ଟି ଗ୍ରହଣ କରିଥିଲେ, ସେମାନଙ୍କ ସହିତ ମୋର ଆଉ ଥରେ ସାକ୍ଷାତ୍ ହେବାର ସମ୍ଭାବନା ନାହିଁ । ସେମାନଙ୍କ ନାମ ବା ଠିକଣା ମଧ୍ୟ ମୋତେ ଜଣା ନାହିଁ ।

ଖୁବ୍ ଦୂର ଅନ୍ଧାର ଭିତରେ କେଉଁଠି ମିଞ୍ଜିମିଞ୍ଜି ଦୁଇ ବୁନ୍ଦା ଆଲୁଅ ପରି ଏଇ ସ୍ମୃତି ବେଳେ ବେଳେ ମୋ ମନ ଭିତରେ ଜାଗି ଉଠେ । ସେ ଆଲୁଅ ଯେମିତି ମଣିଷ ମଣିଷ ଭିତରେ ଚିରନ୍ତନ ସ୍ନେହ ଓ ବନ୍ଧୁତାର !! (୨୦୦୦)





cover design saroj bal

ଗଣେଶ୍ୱର ମିଶ୍ରଙ୍କ ବହି

ଉପନ୍ୟାସ: ସାମୁଦ୍ରିକ, ଆରୋହୀ, ନେତା, ସକାଳର ମୁହଁ

ଗଳ୍ପ ସଂକଳନ: ଅନ୍ଧାର, ମଧୁ ମିଶ୍ରଙ୍କ ଶବ, ମୃତ୍ୟୁ ପରେ ଜୀବନ

ଭ୍ରମଣ: କ୍ୟାଂଟର୍‌ବରୀ କାହାଣୀ, ସମୁଦ୍ର ସେପାରେ, ନିଜ ଦେଶ ଅନ୍ୟ ଦେଶ, ନୂତନ ମାଟିର ସ୍ୱର୍ଶ

ଫିଚର୍ ସଂକଳନ: ଲାଲୁବାବୁଙ୍କ କୋଠି, ରୁଖି ପାହାଡ଼ରେ ବାଘ, ପ୍ରସଙ୍ଗକ୍ରମେ

ଶିଶୁ ସାହିତ୍ୟ: ବିଲାତରେ ବାବୁ ଓ ପାପୁ, କଳାପାଣି କଥା, ଗଛ ଗାଉଛି ଗୀତ, ଚଢ଼େଇ ଆମର ମିତ, ହଜି ଯାଉଥିବା ଗପ, ବୁଢ଼ା ପେଟରେ ଲିଟି ଚଢ଼େଇ, ମୋ ଜୀବନକାହାଣୀ (ହେଲେନ୍ କେଲର୍)

ଅନୁବାଦ: ଜାହାନାରା ଆତ୍ମକାହାଣୀ

ସଂପାଦନା: ବିଶ୍ୱସାହିତ୍ୟ ପରିଚୟ, ଫକୀରମୋହନ ବିଚିତ୍ରା, ଓଡ଼ିଆ ଉପନ୍ୟାସ ଓ ଗ୍ରନ୍ଥସୂଚୀ, ଓଡ଼ିଶାର ଖାଦ୍ୟ ସଂସ୍କୃତି, ହରିହର ମିଶ୍ରଙ୍କ କବିତା, ବିଧୁଭୂଷଣ ଦାସ ଶ୍ରଦ୍ଧାଞ୍ଜଳି ଗ୍ରନ୍ଥ, ତାରା ଖସିବାର ବେଳ

୨୦୦୨ରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଇଂରାଜୀ ସାହିତ୍ୟର ପ୍ରଫେସର୍ ଭାବରେ ଅବସର ଗ୍ରହଣ। ସଂପ୍ରତି ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି।